# ଆଳଙ୍କାରିକ ଉଦ୍ୟାନ ବିଜ୍ଞାନ



ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

ଆଳଙ୍କାରିକ

# ଉଦ୍ୟାନ ବିଜ୍ଞାନ

ଲେଖକ
**ଡକ୍ଟର ତ୍ରିନାଥ ମହାରଣା**
*ପ୍ରଫେସର, ଉଦ୍ୟାନ ବିଜ୍ଞାନ ବିଭାଗ*
*ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ*
*ଭୁବନେଶ୍ୱର*

୧୯୯୯
(ପରିବର୍ଦ୍ଧିତ ସଂସ୍କରଣ)




*ପ୍ରକାଶକ:*
ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ORNAMENTAL HORTICULTURE

(*Revised and Enlarged Edition-1999*)

**(For B.Sc. (Ag.) Students)**

Published under the centrally Sponsored Scheme of Production of books and literature in Regional Languages at the University level by the Government of India in the Ministry of Education and Social Welfare (Department of Education), New Delhi.

- *Written by* :

  **Dr. Trinath Maharana**

  *Professor in Horticulture*

  Orissa University of Agriculture & Technology, Bhubaneswar.

- *Reviewed by* :

  **Dr. Ramesh Chandra Das,** Ph D.

  Retd. Professor and Head of the Dept. of Horticulture.

  O.U.A.T., Bhubaneswar.

- *Language Scrutinised by* :

  **Smt. Radharani Pattanayak,** M.A.

  Principal, Dhenkanal Womens' Collage, Dhenkanal

- *Drawings & Sketches*:

  **Sri Dhaneswar Sahu**, Artist

- *Published by* :

  **THE ORISSA STATE BUREAU OF TEXT BOOK PREPARATION AND PRODUCTION,**
  Bhubaneswar, Orissa



*Publication No.* **359**

- *Printed at :* **J.K. Printers**
  Tulsipur, Cuttack

**Price : 37/-**
(Rupees Thirty seven only)

# ଦ୍ୱିତୀୟ ସଂସ୍କରଣର ଭୂମିକା

## (ନୂତନ ପରିବର୍ଦ୍ଧିତ ସଂସ୍କରଣ)

ବିଶେଷ ଆନନ୍ଦର କଥା ଯେ, ପ୍ରଫେସର ତ୍ରିନାଥ ମହାରଣାଙ୍କ ଦ୍ୱାରା ପ୍ରଣୀତ ଓ ଏହି ସଂସ୍ଥା ଦ୍ୱାରା ପ୍ରକାଶିତ **"ଆଳଙ୍କାରିକ ଉଦ୍ୟାନ ବିଜ୍ଞାନ"** ପୁସ୍ତକଟିର ଆଦର ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଏଣୁ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବାକୁ ଯାଉଛି । ଏହି ସଂସ୍କରଣର ବିଷୟବସ୍ତୁରେ ଆବଶ୍ୟକ ସଂଶୋଧନ ଓ ପରିବର୍ଦ୍ଧନ କରାଯାଇଛି ।

ପୁସ୍ତକଟି ଜ୍ଞାନଲିପ୍ସୁ ଛାତ୍ରଛାତ୍ରୀ, ସାଧାରଣ ପାଠକ ତଥା ବିଜ୍ଞ ଅଧ୍ୟାପକ ମଣ୍ଡଳୀଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା ।

ତା ୧.୫.୧୯୯୯

ପ୍ରଫେସର (ଡ) କୃଷ୍ଣଚନ୍ଦ୍ର ମିଶ୍ର

*ନିର୍ଦ୍ଦେଶକ*

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ

ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର

# ପ୍ରସ୍ତାବନା

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ତଥା କେନ୍ଦ୍ର ସରକାରଙ୍କ ଅନୁମୋଦନ କ୍ରମେ ଭାରତର ବିଭିନ୍ନ ପ୍ରାନ୍ତରରେ ବିଶ୍ୱବିଦ୍ୟାଳୟ ସ୍ତରରେ ଆଞ୍ଚଳିକ ଭାଷାରେ ଶିକ୍ଷାଦାନ ବ୍ୟବସ୍ଥା ନୀତିଗତଭାବେ ଗୃହୀତ ହୋଇଅଛି । ତଦନୁଯାୟୀ ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ପାଇଁ ''ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା''ଟି ଗଠନ କରାଯାଇଅଛି ।

ଏ ସଂସ୍ଥାର ଆନୁକୂଲ୍ୟରେ ବିଭିନ୍ନ ବିଷୟରେ ଅଦ୍ୟାବଧି ତିନିଶହରୁ ଉର୍ଦ୍ଧ୍ୱ ପାଠ୍ୟପୁସ୍ତକ, ସାଧାରଣ ପୁସ୍ତକ ତଥା ଓଡ଼ିଆ ଅନୁବାଦ ପୁସ୍ତକମାନ ପ୍ରକାଶିତ ହେଲାଣି । ଆମ ପ୍ରକାଶିତ *''ଆଳଙ୍କାରିକ ଉଦ୍ୟାନ ବିଜ୍ଞାନ''* ପୁସ୍ତକଟି ସ୍ନାତକ ଶ୍ରେଣୀ (କୃଷି) ଛାତ୍ରଙ୍କ ଲାଗି ଉଦ୍ଦିଷ୍ଟ । ଏହାକୁ ରଚନା କରିଛନ୍ତି ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଉଦ୍ୟାନ ବିଜ୍ଞାନ ବିଭାଗର ପ୍ରାଧ୍ୟାପକ ଶ୍ରୀ ତ୍ରିନାଥ ମହାରଣା । ଏହି ପୁସ୍ତକଟିର ସମୀକ୍ଷା କରିଛନ୍ତି ଉକ୍ତ ବିଶ୍ୱବିଦ୍ୟାଳୟ ଉଦ୍ୟାନ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ରମେଶ ଚନ୍ଦ୍ର ଦାସ ଓ ଭାଷା ସଂଶୋଧନ କରିଛନ୍ତି ଢେଙ୍କାନାଳ ମହିଳା ମହାବିଦ୍ୟାଳୟର ଅଧକ୍ଷା ଶ୍ରୀମତୀ ରାଧାରାଣୀ ପଟ୍ଟନାୟକ । ଏଣୁ ଏ ପରିପ୍ରେକ୍ଷୀରେ ଲେଖକ, ସମୀକ୍ଷକ ତଥା ଭାଷା ସଂଶୋଧିକାଙ୍କୁ ଆମେ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛୁ ।

''ଆଳଙ୍କାରିକ ଉଦ୍ୟାନ ବିଜ୍ଞାନ'' ପୁସ୍ତକଟି ଛାତ୍ର, ଅଧ୍ୟାପକ ତଥା ସାଧାରଣ ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆମର ଆଶା ।

ଭୁବନେଶ୍ୱର
ତା ୪.୧୦.୮୩

**ବଟକୃଷ୍ଣ ମହାନ୍ତି**
ନିର୍ଦ୍ଦେଶକ

# ଭୂମିକା

ଉଦ୍ଭିଦ ମାନବର ପରମ ବନ୍ଧୁ। ମନୁଷ୍ୟ ତାର ଅଧିକାଂଶ ଆବଶ୍ୟକୀୟ ବସ୍ତୁ ଉଦ୍ଭିଦମାନଙ୍କ ଠାରୁ ସଂଗ୍ରହ କରିଥାଏ। ଖାଦ୍ୟ, ପାନୀୟ, ପରିଧାନ ଓ ବାସଗୃହ ଉପକରଣ ଯୋଗାଇବା ସାଙ୍ଗକୁ ଉଦ୍ଭିଦମାନେ ମାନବର ପରିବେଶକୁ ସୌନ୍ଦର୍ଯ୍ୟମୟ କରିଥାନ୍ତି। ପ୍ରକାର ଭେଦରେ ଉଦ୍ଭିଦର ଫଳ, ପୁଷ୍ପ, ପତ୍ର, ଶାଖା ପ୍ରଶାଖା ସୌନ୍ଦର୍ଯ୍ୟଯୁକ୍ତ। ଏତଦ୍ ବ୍ୟତୀତ ଅଧିକାଂଶ ଉଦ୍ଭିଦମାନଙ୍କର ପୁଷ୍ପ ସୁବାସଯୁକ୍ତ। ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦମାନଙ୍କର ସଂଗ୍ରହ, ପାଳନ, ବଂଶବିସ୍ତାର ଓ ରୋଗପୋକ ନିରାକରଣ ତଥା ଶିଳ୍ପ କ୍ଷେତ୍ରରେ ସେମାନଙ୍କର ବିନିଯୋଗ ସମ୍ବନ୍ଧୀୟ ଜ୍ଞାନ ଆଳଙ୍କାରିକ ଉଦ୍ୟାନ ବିଜ୍ଞାନର ପରିସରଭୁକ୍ତ। ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଆନୁକୂଲ୍ୟରେ ପ୍ରକାଶିତ ହେବାକୁ ଯାଉଥିବା ଆଳଙ୍କାରିକ ଉଦ୍ୟାନ ବିଜ୍ଞାନ ପୁସ୍ତକରେ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦମାନଙ୍କ ସମ୍ବନ୍ଧରେ ବିଶଦ ଆଲୋଚନା କରାଯାଇଅଛି। ଅଧିକାଂଶ ସୌନ୍ଦର୍ଯ୍ୟ ବର୍ଦ୍ଧକ ଉଦ୍ଭିଦ ବିଦେଶୀ; ତେଣୁ ସେମାନଙ୍କର ବୈଦେଶିକ ନାମକୁ ବ୍ୟବହାର କରାଯାଇଛି। ଉଦ୍ଭିଦମାନଙ୍କୁ ଆନ୍ତର୍ଜାତୀୟ କ୍ଷେତ୍ରରେ ଚିହ୍ନାଇବା ପାଇଁ ପ୍ରତ୍ୟେକର ଗୋଟିଏ ଜେନେରା (Genus) ଓ ଗୋଟିଏ ସ୍ପେସିସ୍ (Species) ବ୍ୟବହାର କରାଯାଏ ଏବଂ ଏହା କେଉଁ ପରିବାର (Family)ର ତାହା ଉଲ୍ଲେଖ କରାଯାଏ। ଏଠାରେ ପ୍ରତ୍ୟେକ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦ ବର୍ଣ୍ଣନା କଲାବେଳେ ତାର genus, species ଓ family ଉଲ୍ଲେଖ କରାଯାଇଅଛି।

ଏହି ପୁସ୍ତକ ପ୍ରକାଶନ ଅବସରରେ ମୁଁ ମୋର ସାହାଯ୍ୟକାରୀ ବନ୍ଧୁ ଓ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର କର୍ମକର୍ତ୍ତାଙ୍କୁ ଧନ୍ୟବାଦ ଜଣାଉଛି ଓ ପାଠକମାନଙ୍କୁ ବିନମ୍ର ନିବେଦନ କରୁଛି ଯେ ସେମାନେ ଇଂରାଜୀ ଶବ୍ଦଗୁଡ଼ିକରେ ଥିବା ମୁଦ୍ରଣଗତ ତ୍ରୁଟିଗୁଡ଼ିକୁ ସୁଧାରିବା ପାଇଁ ଅନ୍ୟ ପୁସ୍ତକର ସାହାଯ୍ୟ ନେବେ ।

- **ଲେଖକ**

# ସୂଚୀପତ୍ର

॥ ପ୍ରଥମ ପରିଚ୍ଛେଦ ॥

# ଉପକ୍ରମଣିକା

ପୁଷ୍ପ ପ୍ରାକୃତିକ ସୌନ୍ଦର୍ଯ୍ୟର ଏକ ମହାନ ପ୍ରତୀକ । ଏହାର କୋମଳତା, ମନୋମୁଗ୍ଧକର ରଙ୍ଗବିଭବ, ସର୍ବୋପରି ଚିତ୍ତହରା ସୁରଭି କେଉଁ ଆବହମାନ କାଳରୁ ମାନବର ପ୍ରାଣକୁ ମୁଗ୍ଧ କରି ଆସୁଅଛି । ମାନବ ଜୀବନର ସମସ୍ତ ଉତ୍ସବ ଏହା ଏକ ପ୍ରଧାନ ବସ୍ତୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ଦୃଷ୍ଟିରୁ ମନୁଷ୍ୟର ଚିନ୍ତା, ଭାବନା, ଅନୁଭବ ତଥା ପ୍ରକାଶ କରିବାର ସମସ୍ତ ଭଙ୍ଗୀ ବିଭିନ୍ନ ଉଦ୍ଭିଦ ତଥା ପୁଷ୍ପରାଜିର ଏକ ଅନ୍ତର୍ନିହିତ ଭାବର ପ୍ରଚ୍ଛନ୍ନ ପରିପ୍ରକାଶ । ସମ୍ଭବତଃ ଏହି ଦୃଷ୍ଟିରୁ ବେଦ ତଥା ପୁରାଣ ଶାସ୍ତ୍ରରେ ପୁଷ୍ପକୁ 'ସୁମନ' ଆଖ୍ୟା ଦିଆଯିବାର ଯୌକ୍ତିକତା ଅତି ସହଜରେ ହୃଦୟଙ୍ଗମ କରିହୁଏ । ବୃକ୍ଷଲତା ତଥା ପୁଷ୍ପ ମାନବ ଜୀବନ ସହିତ କିପରି ଓତଃପ୍ରୋତଃ ଭାବରେ ଜଡ଼ିତ ତାହର ପ୍ରମାଣ ମନୁଷ୍ୟ ସଭ୍ୟତାର ବାର୍ତ୍ତାବହ ସାହିତ୍ୟ, ଇତିହାସ ତଥା ଚିତ୍ର ଭାସ୍କର୍ଯ୍ୟରୁ ମିଳିଥାଏ । ପୁଷ୍ପର ସୃଷ୍ଟି ମନୁଷ୍ୟର ସୃଷ୍ଟିଠାରୁ ପୁରାତନ । ବୈଦିକ ଯୁଗର ମୁନିଋଷିମାନଙ୍କର ଉଦ୍ୟାନର ପୁଷ୍ପମାନଙ୍କଠାରୁ ଆରମ୍ଭ କରି ବାବିଲୋନର ଦୋଳାୟମାନ ଉଦ୍ୟାନର ପୁଷ୍ପଚାଷ ପର୍ଯ୍ୟନ୍ତ ତଥା ଆଧୁନିକ ଯୁଗରେ ପୁଷ୍ପଚାଷର ପ୍ରସାର ମାନବ ସଭ୍ୟତାରେ ଏହାର ପ୍ରାଧାନ୍ୟ ସମ୍ବନ୍ଧରେ ପରିଚୟ ଦିଏ । ବୈଦିକ ଯୁଗରେ ପୁଷ୍ପକୁ ଭଗବାନଙ୍କର ମହାନ ସୃଷ୍ଟି ମଧ୍ୟରେ ଗଣାଯାଉଥିଲା । ସେଥିପାଇଁ ଆଧୁନିକ ଯୁଗରେ ମଧ୍ୟ ଦେବତାଙ୍କ ଅର୍ଚ୍ଚନା ପାଇଁ ପୁଷ୍ପକୁ ହିଁ ଏକମାତ୍ର ଦେବପ୍ରିତ ବସ୍ତୁରୂପେ ଅର୍ପଣ କରାଯାଇ ସୃଷ୍ଟିକର୍ତ୍ତାଙ୍କ ନିକଟରେ ନିଜର କୃତଜ୍ଞତା, ଅଭିନନ୍ଦନ, ଅଭିଳାଷ ତଥା କାମନା ପ୍ରକାଶ କରାଯାଏ । ଆମର ପୁରାଣ ଶାସ୍ତ୍ରମାନଙ୍କରେ ବିଭିନ୍ନ ପୁଷ୍ପକୁ ବିଭିନ୍ନ ଦେବତାଙ୍କ ସହିତ ସଂଶ୍ଳିଷ୍ଟ କରାଯାଇଛି । ଯଥା- କୃଷ୍ଣଙ୍କ ସହିତ କଦମ୍ବ; ନାଗେଶ୍ୱର, ଗୟସ, ଅଶୋକ ପ୍ରଭୃତି ମହାଦେବଙ୍କ ସହିତ, ଇନ୍ଦ୍ରଙ୍କ ସହିତ ପାରିଜାତ ଏବଂ ଦେବୀମାନଙ୍କ ପାଇଁ ମନ୍ଦାର ପ୍ରଭୃତି ପୁଷ୍ପକୁ ଗ୍ରହଣ କରାଯାଇଛି । ତ୍ରେତୟା ଯୁଗରେ ପଞ୍ଚବଟୀ ଓ ଅଶୋକ ବନର ପୁଷ୍ପରାଜି ତଥା ଦ୍ୱାପର ଯୁଗର ବୃନ୍ଦାବନର ମଧୁମାଳତୀ,

ମାଧବୀ, ମାଳତୀ ପୁଷ୍ପଭରା କୁଞ୍ଜକାନନମାନ ଅଧୁନା ଏହାର ସୌନ୍ଦର୍ଯ୍ୟ ପାଇଁ କାବ୍ୟିକ ଖ୍ୟାତି ଲାଭକରି ଆସିଅଛି । ବିବାହ, ବ୍ରତ, ଓଷା, ପର୍ବପର୍ବାଣୀ ଗୁଡ଼ିକରେ ନିର୍ଦ୍ଦିଷ୍ଟ ଫଳପୁଷ୍ପର ପୂଜାବିଧାନ କରାଯାଇଅଛି ।

ଆଧୁନିକ ଯୁଗରେ ପୁଷ୍ପ କେବଳ ମନୁଷ୍ୟର ମାନସରାଜ୍ୟରେ ସୀମାବଦ୍ଧ ହୋଇ ରହିନାହିଁ । ଏହା ମାନବର ଅର୍ଥନୈତିକ ପରିବେଶକୁ ମଧ୍ୟ ପ୍ରଭାବିତ କଲାଣି । ଭାରତର କୃଷି ଗବେଷଣା ପରିଷଦ ଆନୁକୂଲ୍ୟରେ ପ୍ରସ୍ତୁତ ଏକ ପରିସଂଖ୍ୟାନ ହିସାବରୁ ପ୍ରମାଣ ମିଳେ ଯେ ଅଧୁନା ଭାରତରେ ୧୦, ୫୦୦ ଟନରୁ ଅଧିକ କଟାଫୁଲ ବିକ୍ରି କରାଯାଇ ୧୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କାର ଜାତୀୟ ଆୟ ବମ୍ବେ, କଲିକତା, ଦିଲ୍ଲୀ, ମାଦ୍ରାଜ ଏବଂ ବାଙ୍ଗାଲୋର ସହରରୁ ମିଳିପାରୁଛି । ୩୦୦୦ରୁ ଅଧିକ ହେକ୍ଟର ଜମିରେ ବ୍ୟବସାୟ ପାଇଁ ଫୁଲଚାଷ କରାଯାଉଛି । ବ୍ୟବସାୟ ପାଇଁ ଚାଷ କରାଯାଉଥିବା ଫୁଲମାନଙ୍କ ମଧ୍ୟରେ ଗେଣ୍ଡୁ, ମଲ୍ଲୀ, ଗୋଲାପ, ସେବତୀ, ରଜନୀଗନ୍ଧା ଏବଂ କ୍ରୋସାଣ୍ଡାକୁ ବ୍ୟବହାର କରାଯାଉ ଅଛି । ବଡ଼ ସହର ଗୁଡ଼ିକୁ ଛାଡ଼ିଦେଲେ ଦକ୍ଷିଣ ଭାରତର ପ୍ରତ୍ୟେକ ଅଞ୍ଚଳରେ ପୁଷ୍ପ ବ୍ୟବସାୟକୁ ଏକ ସାଧାରଣ ବ୍ୟବସାୟ ରୂପେ ଗ୍ରହଣ କରାଯାଇଅଛି । ସେହିପରି ପୁଷ୍ପରୁ ଅତର ପସ୍ତୁତ କରି ଦେଶର ଏବଂ ବିଦେଶର ଚାହିଦା ପୂରଣ କରାଯାଉ ଅଛି । ମୋଗଲ ରାଜତ୍ୱ ଅମଳରୁ ଦିନକୁ ଦିନ ଏହି ବ୍ୟବସାୟ ବଢ଼ି ଚାଲିଛି । ଅନ୍ୟ ଦିଗରେ ନିର୍ଦ୍ଦିଷ୍ଟ ଅଞ୍ଚଳରେ ପୁଷ୍ପଚାଷ କରାଯାଇ ତାହାର ମଞ୍ଜି ଦେଶର ଅନ୍ୟ ପ୍ରାନ୍ତରେ ବିକ୍ରୟ କରାଯାଉଅଛି । ସହରମାନଙ୍କରେ ପ୍ରତ୍ୟେକ ବାସିନ୍ଦା ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦମାନ ଲଗାଇବାରେ ଆଗ୍ରହ ପ୍ରକାଶ କରୁଥିବାରୁ ନର୍ସରୀମାନ ପ୍ରତିଷ୍ଠା କରାଯାଇ ଏହି ବ୍ୟବସାୟକୁ ପ୍ରସାରିତ କରାଯାଉଅଛି । ଏହା ବ୍ୟତୀତ ଆମ ଦେଶରେ ଥିବା ପୁଷ୍ପ ଓ ଉଦ୍ଭିଦଗୁଡ଼ିକୁ ବିଦେଶକୁ ପଠାଯାଇ ମୂଲ୍ୟବାନ ବୈଦେଶିକ ମୁଦ୍ରା ରୋଜଗାର କରାଗଲାଣି । ପଶ୍ଚିମ ବଙ୍ଗଳାର ଏକ ଛୋଟିଆ ସହର କାଳିଂପଙ୍ଗରୁ ବର୍ଷକୁ ଏକ କୋଟିରୁ ଉର୍ଦ୍ଧ୍ୱ ଟଙ୍କାର ହିମାଳୟ ଜାତ ଉଦ୍ଭିଦ ତଥା ପୁଷ୍ପ ବିଦେଶକୁ ପଠାଯାଇ ଅର୍ଥ ଉପାର୍ଜନର ପନ୍ଥା କରାଯାଇ ପାରିଅଛି ।

ପୁଷ୍ପଚାଷ ମାନବ ସଭ୍ୟତା ସଙ୍ଗେ ଯେପରି ଓତଃପ୍ରୋତଃ ଭାବେ ଜଡ଼ିତ ବଗିଚା ସଂସ୍ଥାନ ମଧ୍ୟ ସେହିପରି ଭାବେ ସଂଶ୍ଳିଷ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବହୁ ପୂର୍ବରୁ ବଗିଚା ସଂସ୍ଥାନର ଏକ ଉନ୍ନତ ପରମ୍ପରା ଭାରତରେ ଥିବାର ପ୍ରମାଣ ବିଭିନ୍ନ କାବ୍ୟ, ନାଟକ ତଥା ଅନ୍ୟାନ୍ୟ ସାହିତ୍ୟରୁ ଏବଂ ଚିତ୍ରଭାସ୍କର୍ଯ୍ୟରୁ ମିଳିଥାଏ । ମହାନାଟ୍ୟକାର ଭାସଙ୍କର ଦୃଶ୍ୟକାବ୍ୟଗୁଡ଼ିକରେ ଚରିତ୍ରମାନଙ୍କର ସଂଳାପଗୁଡ଼ିକରୁ ଏହାର ପ୍ରମାଣ ମିଳେ । ସେହିପରି ବାତ୍ସ୍ୟାୟନଙ୍କର ଉଦ୍ୟାନବର୍ଣ୍ଣନା ଏଠାରେ ପ୍ରଣିଧାନଯୋଗ୍ୟ । ମହାକବି କାଳିଦାସଙ୍କର କାବ୍ୟସାହିତ୍ୟ ପୁଷ୍ପ ଓ ଉଦ୍ୟାନ ବର୍ଣ୍ଣନାର ଏକ ଅଫୁରନ୍ତ ଭଣ୍ଡାର । କୁମାର-ସମ୍ଭବରେ ହିମାଳୟର ପୁଷ୍ପରାଜିର ବର୍ଣ୍ଣନା, ରଘୁବଂଶରେ ଅଯୋଧ୍ୟା ତଥା ଲଙ୍କାପୁରୀର ଉଦ୍ୟାନମାନଙ୍କର ବର୍ଣ୍ଣନା ସର୍ବୋପରି ମେଘଦୂତରେ ଅଳକାପୁରୀର ଉପବନମାନଙ୍କର ବର୍ଣ୍ଣନା ପ୍ରଭୃତି ଉଦାହରଣ ଦିଆଯାଇ ପାରେ । 'ଅଭିଜ୍ଞାନ ଶକୁନ୍ତଳା'ରେ କଣ୍ୱ ମୁନିଙ୍କର ଆଶ୍ରମ ବର୍ଣ୍ଣନା ତତ୍କାଳୀନ ସଭ୍ୟତାରେ ଉଦ୍ୟାନ ସଂସ୍ଥାନର ଏକ ଉଚ୍ଚାଙ୍ଗ କଳାନୈପୁଣ୍ୟର ପ୍ରମାଣ ଦିଏ । 'ଋତୁସଂହାର' କାବ୍ୟ ବିଭିନ୍ନ ଋତୁଜୀବୀ ପୁଷ୍ପମାନଙ୍କର ବର୍ଣ୍ଣନା ଏବଂ ମାନବ ସହିତ ସେମାନଙ୍କର ସମ୍ପର୍କ ସମ୍ବନ୍ଧରେ ଅନେକ ତଥ୍ୟ ଯୋଗାଇଥାଏ । ସେହିପରି ସ୍ଥାପତ୍ୟ ସଭ୍ୟତାରେ ପୁଷ୍ପ ଏକ ପ୍ରଧାନ ବସ୍ତୁ ରୂପେ ସ୍ଥାନ ଗ୍ରହଣ କରି ଆସିଛି । ମନ୍ଦିର ଗାତ୍ରମାନଙ୍କରେ ପୁଷ୍ପ ଏବଂ ବୃକ୍ଷର ମନୋମୁଗ୍ଧକାରୀ ଆଲେଖ୍ୟର ଅପୂର୍ବ ସମାବେଶ ତତ୍କାଳୀନ ପୁଷ୍ପଜ ସୌନ୍ଦର୍ଯ୍ୟର ତଥା ଶିଳ୍ପଚାତୁରୀର ମୂକସାକ୍ଷୀ ରୂପେ ଅଦ୍ୟାବଧି ପ୍ରମାଣ ଦେଇ ଆସୁଅଛି । ଭୁବନେଶ୍ୱରର ପାର୍ବତୀ ମନ୍ଦିର, ଖଣ୍ଡଗିରିର ଜୀର୍ଣ୍ଣ ଗୁମ୍ଫାସମୂହ ତଥା ପଲ୍ଲୀ ଅଞ୍ଚଳରେ ଭଗ୍ନମନ୍ଦିରର ଅବଶେଷାଂଶ ଓ କ୍ରମଜୀର୍ଣ୍ଣ ବିଗ୍ରହମାନଙ୍କ ଶରୀରରେ ଖୋଦିତ ପୁଷ୍ପରାଜି ଏହାର ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଅପୂର୍ବ ପ୍ରମାଣ ଦିଏ ।

ସେହିପରି ସଂପ୍ରତି କଳକାରଖାନା ତଥା ଆଧୁନିକ ସଭ୍ୟତାରେ ବ୍ୟବହୃତ ବିଭିନ୍ନ କଳକବ୍ଜା ତଥା ଯାନ୍ତ୍ରିକ ବସ୍ତୁରୁ ନିଃସୃତ ଅଦରକାରୀ ତଥା ବିଷାକ୍ତ ବାଷ୍ପସମୂହ ପୃଥିବୀର ବାୟୁମଣ୍ଡଳକୁ ଦୂଷିତ କରୁଅଛି । ଏହି ଦୂଷିତ ବାଷ୍ପସମୂହକୁ ଗ୍ରହଣ କରିବାର ଶକ୍ତି ଉଦ୍ଭିଦମାନଙ୍କର ଅଛି । ସେହି ଦୃଷ୍ଟିରୁ

ଜାତିସଙ୍ଘ ଆନୁକୂଲ୍ୟରେ ପୃଥିବୀ ସାରା ବୃକ୍ଷରୋପଣ କରାଯାଇ ବିଷାକ୍ତ ବାୟୁମଣ୍ଡଳରୁ ମାନବସଭ୍ୟତାକୁ ରକ୍ଷା କରିବା ପାଇଁ ଆହ୍ୱାନ ଦିଆଯାଉଅଛି । ଏହି ପରିପ୍ରେକ୍ଷୀରେ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦରୋପଣ ତଥା ପୁଷ୍ପଚାଷ କରାଯିବା ଏକାନ୍ତ ଆବଶ୍ୟକ । ସେହିପରି ଜନବହୁଳ ଅଞ୍ଚଳରେ ସୁନ୍ଦର ସୁନ୍ଦର ଉପବନ ଗୁଡ଼ିକ ସୃଷ୍ଟି କରାଯାଇ ଉନ୍ନତ ପରିବେଶ ସୃଷ୍ଟି ହେବା ଏକାନ୍ତ ପ୍ରୟୋଜନ ।



॥ ଦ୍ୱିତୀୟ ପରିଚ୍ଛେଦ ॥

# ପୁଷ୍ପର ରଙ୍ଗ

ପୁଷ୍ପର ମାନ ସାଧାରଣତଃ ତାହାର ଆକୃତି, ସୁରଭି ଏବଂ ରଙ୍ଗକୁ ନେଇ ନିର୍ଦ୍ଧାରଣ କରାଯାଇଥାଏ । କିନ୍ତୁ ଆଧୁନିକ ଯୁଗରେ ପୁଷ୍ପର ଆକୃତି ଏବଂ ରଙ୍ଗ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଅଛି । କିନ୍ତୁ ସୁରଭିଯୁକ୍ତ ପୁଷ୍ପଗୁଡ଼ିକର ବେଶି ଆଦର ଥିବା ମନେହୁଏ । ପୁଷ୍ପର ରଙ୍ଗ ବିଭବ ତଥା ଅନ୍ୟାନ୍ୟ ଉନ୍ନତି ପାଇଁ ଆଜିକାଲି ଅନେକ ଗବେଷଣା କରାଯାଉଛି । ପରପରାଗସଂଗମ ତଥା ଅନ୍ୟାନ୍ୟ ରାସାୟନିକ ପଦାର୍ଥର ବ୍ୟବହାର କରି ବିଭିନ୍ନ ପ୍ରକାର ରଙ୍ଗ ସୃଷ୍ଟି କରିବା ପାଇଁ ଧ୍ୟାନ ଦିଆଗଲାଣି ।

ପୁଷ୍ପର ରଙ୍ଗ ବିଭିନ୍ନ ଉପାଦାନରେ ଗଢ଼ା ହୋଇଥାଏ । ଏହି ଉପାଦାନ ଗୁଡ଼ିକ ପୁଷ୍ପର ପାଖୁଡ଼ା, ବୃନ୍ତ, ପୁଂ କେଶର ଓ ସ୍ତ୍ରୀ କେଶର ଚକ୍ର ତଥା ସାମୟିକ ଭାବେ ପତ୍ରରେ ମଧ୍ୟ ପ୍ରକାଶିତ ହୋଇଥାଏ । ଏତଦ୍ ବ୍ୟତୀତ ସାମୟିକ ଉପବୃତ୍ତି (Bract) ତଥା ଫଳଗୁଚ୍ଛରେ ବିଭିନ୍ନ ରଙ୍ଗ ଦେଖାଯାଇଥାଏ । ବିଭିନ୍ନ ଶୋଭାଯୁକ୍ତ ଉଦ୍ଭିଦଗୁଡ଼ିକର ବିଭିନ୍ନ ଅଂଶରେ ଭିନ୍ନଭିନ୍ନ ପ୍ରକାରର ରଙ୍ଗ ସାଧାରଣତଃ ପ୍ରକାଶ ହୋଇଥାଏ । ତେବେ ପୁଷ୍ପର ଦଳାବରଣହିଁ ରଙ୍ଗବିଭବ ପରିପ୍ରକାଶର ପ୍ରଧାନ ମାଧ୍ୟମ । କିନ୍ତୁ ବଗନଭିଲାର ଉପବୃତ୍ତି, ମୁସେଣ୍ଡାର ଏକକ ବୃତ୍ତି, ପିଟୁିଆର ବୃତ୍ତିସମୂହ, କ୍ରୋଟନ ଗଛର ପତ୍ରସମୂହ ମଧ୍ୟ ମନୋମୁଗ୍ଧକର ରଙ୍ଗ ପ୍ରକାଶ କରିଥାନ୍ତି ।

ସୂର୍ଯ୍ୟକିରଣ ହେଉଛି ସମସ୍ତ ରଙ୍ଗର ଉତ୍ସ । ବୈଜ୍ଞାନିକମାନଙ୍କ ମତରେ ସୂର୍ଯ୍ୟରଶ୍ମୀର ବର୍ଣ୍ଣାଳୀ ଆଠଟି ରଙ୍ଗର ଉପାଦାନରେ ଗଢ଼ା । ଏହି ଆଠଟି ରଙ୍ଗରୁ ପ୍ରଥମଟି ଓ ଶେଷଟିକୁ ଖାଲିଆଖିରେ ଦେଖିହୁଏ ନାହିଁ । ସେ ଦୁଇଟି ହେଲା– ଇନ୍‌ଫ୍ରାରେଡ୍ ଓ ଅଲଟ୍ରାଭାଓଲେଟ୍ । ହିନ୍ଦୁ ଶାସ୍ତ୍ରରେ ସୂର୍ଯ୍ୟରଶ୍ମୀରେ ସାତୋଟି ରଙ୍ଗ ଥିବାର ବହୁ ପୂର୍ବରୁ ଦର୍ଶାଯାଇଅଛି । ସୂର୍ଯ୍ୟଙ୍କ ରଥରେ ଯୋଡ଼ା ହୋଇଥିବା ସାତୋଟି ଘୋଡ଼ା ଏହି ସାତୋଟି ରଙ୍ଗର ପ୍ରତୀକ ବୋଲି ମତ ପ୍ରକାଶ

କରାଯାଇଛି । ସୂର୍ଯ୍ୟକିରଣର ଆହରଣ ତଥା ପ୍ରତ୍ୟାଖ୍ୟାନ ଭିତିରେ ଉଦ୍ଭିଦର ବିଭିନ୍ନ ଅଂଶରେ ବିଭିନ୍ନ ରଙ୍ଗ ସୃଷ୍ଟି ହୋଇଥାଏ । ଯେଉଁ ରଙ୍ଗଟି ପ୍ରତ୍ୟାଖ୍ୟାନ ହୁଏ ଆମ୍ଭେ ସେହି ରଙ୍ଗଟି ଅବଲୋକନ କରୁ; କିନ୍ତୁ ଯେତେବେଳେ ସମସ୍ତ ରଙ୍ଗ ପ୍ରତ୍ୟାଖ୍ୟାନ ହୁଏ ସେତେବେଳେ ଧଳାରଙ୍ଗ ଏବଂ ଯେତେବେଳେ ସମସ୍ତ ରଙ୍ଗ ଆହରଣ ହୁଏ ସେତେବେଳେ କଳାରଙ୍ଗ ବାହାରକୁ ଦେଖାଯାଏ ।

ପୁଷ୍ପର ରଙ୍ଗବିଭବ ପ୍ରକୃତିର ସୃଷ୍ଟିଚାତୁରୀର ଏକ ଏକ ମହାନ ପ୍ରତୀକ । ପୁଷ୍ପର ରଙ୍ଗ ଯୋଗୁ କୀଟପତଙ୍ଗମାନେ ଆକୃଷ୍ଟ ହେବା ଫଳରେ ପରାଗସଂଗମ ହୋଇଥାଏ । ଅନ୍ଧକାର ରାତ୍ରିରେ ଶୁଭ୍ରଧବଳ ଓ ହଳଦିଆ ପୁଷ୍ପଗୁଡ଼ିକ କୀଟପତଙ୍ଗମାନଙ୍କୁ ପୁଷ୍ପ ନିକଟକୁ ଆକର୍ଷଣ କରିବାରେ ସାହାଯ୍ୟ କରିଥାଏ । ସବୁଜ ପତ୍ରକୁ ପୃଷ୍ଠଭୂମି କରି ପୁଷ୍ପଗୁଡ଼ିକ ବିଭିନ୍ନ ଉଦ୍ଭିଦର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି । ଉଦ୍ଭିଦର ରଙ୍ଗଜଗତରେ ପ୍ରାୟ ସମସ୍ତ ରଙ୍ଗର ପୁଷ୍ପ ଦେଖାଯାଉଥିଲେ ହେଁ ସବୁଜରଙ୍ଗର ପୁଷ୍ପ ଖୁବ୍ କମ୍ ଦେଖାଯାଏ । ମନସମ୍ପାର (Artabotrys odoratissimus) ଦଳାବରଣଗୁଡ଼ିକ ସବୁଜରଙ୍ଗର ହେଲେବି ପତ୍ର ଭିତରେ ଲୁଚିରହି ସୁରଭି ବିତରଣ କରିଥାନ୍ତି । ତେଣୁ ପୁଷ୍ପର ରଙ୍ଗ କେବଳ ଯେ ମନୁଷ୍ୟର ଆମୋଦ ପ୍ରମୋଦ ପାଇଁ ଉଦ୍ଦିଷ୍ଟ ତା ନୁହେଁ ବରଂ ଏହା ପରୋକ୍ଷରେ ଉଦ୍ଭିଦର ବଂଶବିସ୍ତାରରେ ସାହାଯ୍ୟ କରିଥାଏ । ପୁଷ୍ପର ରଙ୍ଗ ବିଭିନ୍ନ ପ୍ରକାର ରଙ୍ଗଦାନାରେ ପ୍ରସ୍ତୁତ ହୋଇଥାଏ । ଏହି ରଙ୍ଗଦାନା ସଂଶ୍ଳେଷଣ କରିବା ବୃକ୍ଷର ଏକ ଅନ୍ତର୍ନିହିତ ଶକ୍ତି । ତେବେ ଜଳବାୟୁ ଏହାର ପରିପ୍ରକାଶରେ ସାହାଯ୍ୟ କରିଥାଏ । ଉଦାହରଣ ସ୍ୱରୂପ ଖରାଦିନେ ଗୋଲାପର ରଙ୍ଗ ଫିକା ହେବା ଏହାର ପ୍ରମାଣ । ସେହିପରି ପୁଷ୍ପରଙ୍ଗର ପରିପ୍ରକାଶ ଉତ୍ତାପ ଓ ସୂର୍ଯ୍ୟାଲୋକ ଦ୍ୱାରା କେତେକାଂଶରେ ନିୟନ୍ତ୍ରିତ ହୋଇଥାଏ । ନିମ୍ନରେ ବିଭିନ୍ନ ପ୍ରକାର ଦାନା ସମ୍ବନ୍ଧରେ ସମ୍ୟକ୍ ଆଲୋଚନା କରାଗଲା ।

୧. **କ୍ଲୋରୋଫିଲ (Chlorophyll)** ଉଦ୍ଭିଦର ସବୁଜିମା କୋରୋଫିଲ ରଙ୍ଗର ଦାନାଦ୍ୱାରା ପ୍ରକାଶିତ ହୋଇଥାଏ । ସବୁଜକାଣ୍ଡ, ପତ୍ର ଏବଂ ସାମୟିକ ଭାବେ ଦଳାବରଣରେ ସବୁଜ ରଙ୍ଗ ଦେଖାଯାଇଥାଏ । ପୁଷ୍ପର

ରଙ୍ଗବିଭବ ପତ୍ରର ସବୁଜିମା ଦ୍ୱାରା ବୃଦ୍ଧି ପାଇଥାଏ । ସେହି ଦୃଷ୍ଟିରୁ ଉଦ୍ୟାନରେ ବିଭିନ୍ନ ରଙ୍ଗର ପରିପ୍ରକାଶ ପାଇଁ ପ୍ରଶସ୍ତ ତୃଣଗାଲିଚାମାନ ପ୍ରସ୍ତୁତ କରାଯାଇଥାଏ । କେତେକ ନିର୍ଦ୍ଦିଷ୍ଟ ପରିବେଶରେ ସବୁଜ ରଙ୍ଗକୁ ଅନ୍ୟ ରଙ୍ଗ ଅପେକ୍ଷା ପ୍ରାଧାନ୍ୟ ଦିଆଯାଏ । ରୋଗୀମାନଙ୍କର ମାନସିକ ସୁସ୍ଥତା ଏବଂ ବୃଦ୍ଧମାନଙ୍କର ମନୋରଞ୍ଜନ ପାଇଁ ସାନାଟୋରିଅମ୍, ହସ୍‌ପିଟାଲ ତଥା ସ୍ୱାସ୍ଥ୍ୟନିବାସ ମାନଙ୍କରେ ରଙ୍ଗବେରଙ୍ଗ ଉଦ୍ଭିଦ ଅପେକ୍ଷା ସବୁଜ ତୃଣର ଗାଲିଚା ଓ ସବୁଜରଙ୍ଗର ବୃକ୍ଷମାନଙ୍କୁ ରୋପଣ କରାଯାଏ । କ୍ଲୋରୋଫିଲ୍ ସବୁଜରଙ୍ଗ ପ୍ରକାଶ କରିବା ସଙ୍ଗେ ସଙ୍ଗେ ବୃକ୍ଷର ଖାଦ୍ୟ ପ୍ରସ୍ତୁତ କରିବାରେ ସାହାଯ୍ୟ କରିଥାନ୍ତି । ଏହା ''କ୍ଲୋରୋଫିଲ A'' ଏବଂ ''କ୍ଲୋରୋଫିଲ B'' ର ମିଶ୍ରଣରେ ବାହାରକୁ ପ୍ରକାଶ ହୋଇଥାଏ । କ୍ଲୋରୋଫିଲ ରଙ୍ଗର ଦାନା ଜଳରେ ଦ୍ରବୀଭୂତ ହୋଇପାରେ ନାହିଁ । ଈଷତ୍ ଆଲୋକରେ ବଢୁଥିବା କେତେକ ଗଛରେ ସବୁଜ ରଙ୍ଗ ଭଲଭାବରେ ପ୍ରକାଶିତ ହୋଇପାରେ ନାହିଁ ।

୨. **କ୍ୟାରୋଟିନ୍ (Carotene)** ବୃକ୍ଷଲତା ଏବଂ ପତ୍ର ପୁଷ୍ପର ହଳଦିଆ କମଳା ରଙ୍ଗ କାରୋଟିନ୍ ରଙ୍ଗଦ୍ୱାରା ସୃଷ୍ଟି ହୋଇଥାଏ । ହଳଦିଆ ଗୋଲାପ, କନିଅର, ଟିକୋମା, ଚମ୍ପା ପ୍ରଭୃତି ପୁଷ୍ପରେ ଏହି ରଙ୍ଗ ପ୍ରଚୁର ପରିମାଣରେ ଦେଖିବାକୁ ମିଳେ । ମକାର ଜିଆଯାନ୍ଥିନ୍, ସାପ୍ରନର କ୍ରୁସେଟିନ, ଟମାଟୋର ଲାଇକୋପିନ୍, ଗାଜରର ବିଟାକ୍ୟାରୋଟିନ୍ ପ୍ରଭୃତି କ୍ୟାରୋଟିନ୍ ଅଟେ । ଏହି ରଙ୍ଗ ଜଳରେ ଦ୍ରବୀଭୂତ ହୋଇପାରେ ନାହିଁ । କିନ୍ତୁ ତୈଳଜାତ ପଦାର୍ଥରେ ସହଜରେ ଦ୍ରବୀଭୂତ ହୋଇପାରେ । ପୁଷ୍ପର ବିଭିନ୍ନ ମନଲୋଭା ରଙ୍ଗରେ ଏହି ରଙ୍ଗର ଦାନାଗୁଡ଼ିକ ଥାଏ । ଏହାଛଡ଼ା ନୂତନ କୋମଳ ପତ୍ରଗୁଡ଼ିକ ମଧ୍ୟ କ୍ୟାରୋଟିନ୍ ରଙ୍ଗ ଧାରଣ କରିଥାନ୍ତି । କିନ୍ତୁ ପରେ କ୍ଲୋରୋଫିଲ ରଙ୍ଗର ଘନତ୍ୱ ଯୋଗୁ ଏହା ଭଲ ଭାବରେ ପ୍ରକାଶିତ ହୋଇପାରେ ନାହିଁ ।

୩. **ଆନ୍ଥୋସିଆନିନ୍ (Anthocyanin)** - ପୁଷ୍ପ ଓ ପତ୍ରର ଲାଲ୍, ଲୋହିତ, ବାଇଗଣୀ, ନୀଳ, ଘନନୀଳ ପ୍ରଭୃତି ରଙ୍ଗ ଆନ୍ଥୋସିଆନିନ୍ ରଙ୍ଗର ଦାନାଯୋଗୁ ପ୍ରକାଶିତ ହୋଇଥାଏ । ବସନ୍ତ କାଳର ଆଗମନରେ ନବକିଶଳୟ ଗୁଡ଼ିକରେ ଏହି ରଙ୍ଗ କିଛି ପରିମାଣରେ ଥାଏ । ଡାହାଲିଆ, କସମସ୍, ବିଭିନ୍ନ ପ୍ରକାର ଲାଲ୍‌ଗୋଲାପ, ଫ୍ଲକସ୍, ଡାଇଆନ୍ଥସ୍, କର୍ଣ୍ଣେସନ ପ୍ରଭୃତି ଅନେକ

ଫୁଲରେ ଏହା ଦେଖିବାକୁ ମିଳେ । ସାମୟିକ ଭାବରେ କୋଲିଅସ୍, କ୍ରୋଟନ, କାଲାଡ଼ିୟମ୍ ପ୍ରଭୃତି ଉଦ୍ଭିଦର ପତ୍ରରେ ଆନ୍ଥୋସିଆନିନ୍ ଥାଏ । ଏହି ରଙ୍ଗ ଜଳରେ ଦ୍ରବୀଭୂତ ହୋଇପାରେ । ଅମ୍ଳତାର ବିଭିନ୍ନତାକୁ ନେଇ ଏହା ବିଭିନ୍ନ ରଙ୍ଗ ପ୍ରକାଶ କରିଥାଏ ।

ରଙ୍ଗ ବିଭବଭରା ଉଦ୍ଭିଦଜଗତକୁ ଠିକ୍‌ଭାବେ ସଂସ୍ଥାପନ କରି ତାର ପରବର୍ତ୍ତୀ ଦାୟିତ୍ୱ ଉପଯୁକ୍ତ ଭାବେ ସଂଗଠିତ କରାଇପାରିଲେ ପ୍ରକୃତିର ଶୋଭାକୁ ଭଲଭାବେ ଉପଭୋଗ କରିହୁଏ । ବଗିଚାର ଉଦ୍ଭିଦଗୁଡ଼ିକୁ ବିନା ବିଚାରରେ ଲଗାଇଲେ ତାହା ରଙ୍ଗର ପ୍ରାଧାନ୍ୟ ପ୍ରକାଶିତ କରିବାରେ ଅସମର୍ଥ ହୁଏ । ସୁତରାଂ ରଙ୍ଗସଜ୍ଜା ପଦ୍ଧତି ଅନୁସାରେ ଗଛ ଲଗାଯିବା ଉଚିତ । ଅନେକାଂଶରେ ଫୁଲଗଛ ଲଗାଇବା ଯଦିଚ ବ୍ୟକ୍ତିଗତ ରୁଚି ଉପରେ ନିର୍ଭର କରେ ତଥାପି କେତେକ ପୂର୍ବପରିକଳ୍ପିତ ଯୋଜନା ଅନୁସାରେ ବୃକ୍ଷ ରୋପଣ କଲେ ଉଦ୍ଭିଦର ସୌନ୍ଦର୍ଯ୍ୟକୁ ଭଲଭାବରେ ଉପଭୋଗ କରିହୁଏ ।




(ଚିତ୍ର ୧)

ସାଧାରଣତଃ ରଙ୍ଗଚକ୍ରରେ (Colour Wheel) ଆମକୁ ୬ଟି ମୌଳିକ ରଙ୍ଗ ଦେଖିବାକୁ ମିଳେ । ଏହି ୬ଟି ରଙ୍ଗ ମଧ୍ୟରୁ ଲାଲ, ହଳଦିଆ ଏବଂ ନୀଳ ହେଲା ପ୍ରାଥମିକ ରଙ୍ଗ । ଅନ୍ୟ ତିନୋଟି ରଙ୍ଗ କମଳା, ସବୁଜ ଏବଂ ବାଇଗଣୀ ମାଧ୍ୟମିକ ରଙ୍ଗର ଅନ୍ତର୍ଭୁକ୍ତ । ରଙ୍ଗଚକ୍ରରେ ଗୋଟିଏ ରଙ୍ଗ ଏକ ନିର୍ଦ୍ଦିଷ୍ଟ କୋନ୍ ମଧ୍ୟରେ ସୀମାବଦ୍ଧ ଥାଏ । ପ୍ରତ୍ୟେକ କୋନ୍‌ର ଭିନ୍ନ ସ୍ଥାନରେ ରଙ୍ଗାତ୍ମକ ମୂଲ୍ୟ ଭିନ୍ନ ଅଟେ । ଯଥା ଲାଲ ରଙ୍ଗ ପାଇଁ ପ୍ରତିନିଧିତ୍ୱ କରୁଥିବା କୋନ୍‌ର କେନ୍ଦ୍ରଭାଗରେ ପ୍ରକୃତ ଲାଲ ରଙ୍ଗ ଦେଖିବାକୁ ମିଳେ କିନ୍ତୁ କେନ୍ଦ୍ରର ବାହାର ଅଂଶକୁ କ୍ରମେ ଏହି ରଙ୍ଗର ଗାଢ଼ତା ପ୍ରକାଶିତ ହୁଏ ଓ କେନ୍ଦ୍ରଆଡ଼କୁ ଏହାର ଲଘୁ ରଙ୍ଗଗୁଡ଼ିକ ଦେଖିବାକୁ ମିଳେ । ଉଦ୍ୟାନଶାସ୍ତ୍ର ନିୟମାନୁସାରେ ୨୫,୦୦୦ ରୁ ଅଧିକ ରଙ୍ଗ ଦେଖିବାକୁ ମିଳେ । ଏଗୁଡ଼ିକ ଚିହ୍ନିବା ଲାଗି ସ୍ଥିରୀକୃତ ରଙ୍ଗପଞ୍ଜିକା (Colour Chart) ବ୍ୟବହାର କରିବାକୁ ପଡ଼େ ।

ପ୍ରତ୍ୟେକ ରଙ୍ଗୀନ ବସ୍ତୁ ମନୁଷ୍ୟର ମାନସପଟରେ କେତେକ ନିର୍ଦ୍ଦିଷ୍ଟ ପ୍ରଭାବ ପକାଇଥାନ୍ତି । ସେହି ଦୃଷ୍ଟିରୁ ରଙ୍ଗକୁ ସାଧାରଣ ଭାବେ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଯଥା– ଉଷ୍ମ ରଙ୍ଗ (Warm colours) ଶୀତଳ ରଙ୍ଗ (Cool colours) ଏବଂ ନିରପଦିକ ରଙ୍ଗ (Neutral colours), ଲାଲ୍, କମଳା ଏବଂ ହଳଦିଆ ଉଷ୍ମ ରଙ୍ଗର ଅନ୍ତର୍ଭୁକ୍ତ । ଏଗୁଡ଼ିକର ସମାବେଶ ସ୍ନାୟୁ ସଂଚାଳନା ବଢ଼ାଇବା ସଂଗେ ସଂଗେ ମସ୍ତିଷ୍କରେ କ୍ଷୀପ୍ରତା ବା ସତେଜତା ପ୍ରକାଶ କରିଥାଏ । କିନ୍ତୁ ଶୀତଳ ରଙ୍ଗଗୁଡ଼ିକ ଯଥା– ନୀଳ, ସବୁଜ, ବାଇଗଣୀ ମାନସିକ ସ୍ଥିରତା ଆଣିବାରେ ପ୍ରଭାବ ବିସ୍ତାର କରିଥାନ୍ତି । ନିରପଦିକ ରଙ୍ଗ ଯଥା କଳା, ଧଳା, ଏବଂ ଧୂସର ରଙ୍ଗ ଗୁଡ଼ିକ ମାନସପଟରେ ବିଶେଷ ଉତ୍ତେଜନା ସୃଷ୍ଟି କରି ନଥାନ୍ତି । ବଗିଚାରେ ରଙ୍ଗବିନ୍ୟାସ ସୃଷ୍ଟି କରିବା ପୂର୍ବରୁ ପ୍ରତ୍ୟେକ ଉଦ୍ଭିଦର ପୁଷ୍ପମୁକୁଳ-ସମୟ, ଉଚ୍ଚତା, ଗଠନ ପ୍ରଣାଳୀ ଏବଂ ଅନ୍ୟାନ୍ୟ ଗୁଣଗୁଡ଼ିକ ସମ୍ପର୍କରେ ଜାଣିବା ଉଚିତ । ଗୁଳ୍ମ (Shurb) ତଥା ଋତୁଜ ପୁଷ୍ପ (Seasonal flowers) ଲଗାଇବା ବେଳେ ସେମାନଙ୍କର ରଙ୍ଗ ସମ୍ବନ୍ଧରେ ବିଶେଷ ଧ୍ୟାନ ଦେବାକୁ ହୋଇଥାଏ । ରଙ୍ଗସଜ୍ଜାର ପଦ୍ଧତିକୁ ତିନୋଟି ଭାଗରେ ବିଭକ୍ତ କରାଯାଏ । ଯଥା–ବିପରୀତଧର୍ମୀ, ପ୍ରତିବେଶୀଧର୍ମୀ ଓ ଅଧସ୍ତନଧର୍ମୀ ।

**(୧) ବିପରୀତ ଧର୍ମୀ** ରଙ୍ଗଚକ୍ରର ପରସ୍ପର ବିପରୀତ ଅଂଶରେ ଥିବା ରଙ୍ଗଗୁଡ଼ିକୁ ନେଇ ବିପରୀତଧର୍ମୀ ରଙ୍ଗସଜ୍ଜା କରାଯାଏ । ଏହାର ବ୍ୟବହାର ସାଧାରଣତଃ ପାର୍କ, ଜନସମାଗମ ଅଞ୍ଚଳରେ ହେବା ଉଚିତ । ଉଦାହରଣ ସ୍ୱରୂପ ତୃଣ ଗାଲିଚା ଉପରେ ଯଦି ଲାଲ ରଙ୍ଗର ଉଦ୍ଭିଦ ଲଗାଯାଏ ତାହାହେଲେ ଏହା ବିପରୀତଧର୍ମୀ ରଙ୍ଗ ସୃଷ୍ଟି କରେ । ସେହିପରି ହଳଦିଆ ଏବଂ ବାଇଗଣୀ, କମଳା ଓ ନୀଳ ରଙ୍ଗ ବିପରୀତଧର୍ମୀ ଅଟନ୍ତି ।

**(୨) ପ୍ରତିବେଶୀଧର୍ମୀ** - ରଙ୍ଗଚକ୍ରର ଯେ କୌଣସି ଗୋଟିଏ ଦିଗରୁ କ୍ରମାନୁସାରେ ରଙ୍ଗମାନ ନେଇ ସଜାଡ଼ିଲେ ତାହାକୁ ପ୍ରତିବେଶୀଧର୍ମୀ ରଙ୍ଗସଜ୍ଜା କୁହାଯାଏ । ଏହି ରଙ୍ଗସଜ୍ଜା ମନରେ ବିଶେଷ ଉଦ୍ଦୀପନା ସୃଷ୍ଟି କରେ ନାହିଁ । ସୁତରାଂ ଡାକ୍ତରଖାନା, ଶିକ୍ଷାନୁଷ୍ଠାନମାନଙ୍କରେ ଏହି ରଙ୍ଗସଜ୍ଜା ହେବା ଉଚିତ ।

**(୩) ଅଧସ୍ତନଧର୍ମୀ** - ବଗିଚାରେ ଯେତେ ରଙ୍ଗ ସଜ୍ଜା କଲେ ବି ସବୁଜ ରଙ୍ଗ ଚତୁର୍ଦ୍ଦିଗରେ ବିସ୍ତାରିତ ହୋଇ ରହିଥାଏ । ସେହିପରି ବସନ୍ତ ଋତୁର ପ୍ରାକ୍‌କାଳରେ ବୃକ୍ଷମାନଙ୍କର ନବପଲ୍ଲବିତ ପତ୍ରରାଜି ଉଦ୍ୟାନସାରା ତାମ୍ରରଙ୍ଗ ସୃଷ୍ଟି କରେ । ଏହି ବିସ୍ତାରିତ ରଙ୍ଗସଜ୍ଜାକୁ ଅଧସ୍ତନ ରଙ୍ଗସଜ୍ଜା କୁହାଯାଏ । ସବୁଜରଙ୍ଗ ପରି ଅନ୍ୟାନ୍ୟ ରଙ୍ଗକୁ ନେଇ ଅଧସ୍ତନ ରଙ୍ଗସଜ୍ଜା ମଧ କରାଯାଇପାରେ, କିନ୍ତୁ ଏଥିପାଇଁ ଉଦ୍ଭିଦମାନଙ୍କ ସମ୍ବନ୍ଧରେ ପର୍ଯ୍ୟାପ୍ତ ଜ୍ଞାନ ରହିବା ଉଚିତ ।

ଉପରୋକ୍ତ ରଙ୍ଗସଜ୍ଜା ବ୍ୟତୀତ ଆଉ କେତେକ ରଙ୍ଗସଜ୍ଜାକୁ ବଗିଚାରେ ଅନୁସରଣ କରାଯାଇଥାଏ । ସେଗୁଡ଼ିକ ମଧ୍ୟରୁ ଗୋଟିଏ ହେଲା ଏକରଙ୍ଗୀସଜ୍ଜା (Monochromatic scheme) । ଏହି ପ୍ରଣାଳୀରେ ଗୋଟିଏ ରଙ୍ଗର ବିଭିନ୍ନ ଘନତାକୁ ନେଇ ରଙ୍ଗସଜ୍ଜା କରାଯାଇଥାଏ । ଯଥା ନାରଙ୍ଗୀ ରଙ୍ଗର କାଲେଣ୍ଡୁଲା, ଡାଇମୋରପଥିକା, ନାଷ୍ଟୁସିୟମ୍, ଗେଣ୍ଡୁଫୁଲ ଏକାଠି ରୋପଣ କରି ଏହି ରଙ୍ଗସଜ୍ଜା ସୃଷ୍ଟି କରାଯାଇଥାଏ । ହଳଦିଆ ରଙ୍ଗର ଆଣ୍ଟିରାଇନମ୍, କାଲେଣ୍ଡୁଲା, ପାନ୍‌ସିରେ ଏକରଙ୍ଗୀ ହଳଦିଆ ରଙ୍ଗସଜ୍ଜା କରାଯାଇପାରେ । ଏହିସବୁ ଦୃଷ୍ଟିରୁ ପ୍ରତ୍ୟେକ ଉଦ୍ଭିଦବିତ୍‌ମାନଙ୍କର ଉଦ୍ଭିଦର ରଙ୍ଗ ସମ୍ବନ୍ଧରେ ସମ୍ୟକ୍‌ଜ୍ଞାନ ରହିବା ଉଚିତ ।

॥ ତୃତୀୟ ପରିଚ୍ଛେଦ ॥

# ଜଳବାୟୁ

ବିଭିନ୍ନ ପ୍ରକାର ଉଦ୍ଭିଦର ଉପଯୁକ୍ତ ବୃଦ୍ଧି ଓ ବିକାଶ ବିଭିନ୍ନ ପ୍ରକାର ଜଳବାୟୁରେ ସମାହିତ ହୋଇଥାଏ । ତେଣୁ ପୃଥିବୀର ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ପ୍ରକାର ଉଦ୍ଭିଦର ବିକାଶ ଓ ବୃଦ୍ଧିହେବା ଦେଖାଯାଏ । ସାଗରର ଅତଳ ଗହ୍ବରର ଶୈବାଳଠାରୁ ଆରମ୍ଭ କରି ବରଫାବୃତ୍ତ ଉତ୍ତୁଙ୍ଗ ପର୍ବତମାଳାର ଶୀର୍ଷଦେଶ ପର୍ଯ୍ୟନ୍ତ ଦେଖାଯାଉଥିବା ବିଭିନ୍ନ ଉଦ୍ଭିଦଶ୍ରେଣୀ ଜଳବାୟୁର ଭିନ୍ନତା ଯୋଗୁ ବିଭିନ୍ନ ରୂପ ଗ୍ରହଣ କରିଥାନ୍ତି । ସେହିପରି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଋତୁଚକ୍ର ମଧ୍ୟ ବିଭିନ୍ନ ଋତୁରେ ବିଭିନ୍ନ ଉଦ୍ଭିଦ ଚାଷପାଇଁ ସାହାଯ୍ୟ କରିଥାଏ । ସୌନ୍ଦର୍ଯ୍ୟ ବର୍ଦ୍ଧକ ଉଦ୍ଭିଦ ଲଗାଇଲାବେଳେ ଋତୁଚକ୍ର ସମ୍ବନ୍ଧୀୟ ଜ୍ଞାନର (Phenology) ବ୍ୟବହାର କରିବା ଉଚିତ ।

ଆମେ ଦେଖୁଥିବା ବଗିଚାର ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦମାନେ ସମ୍ପୂର୍ଣ୍ଣଭାବେ ଗୋଟିଏ ଦେଶର ନୁହଁନ୍ତି । ଗମନାଗମନର ସୁଗମତା ଯୋଗୁ ଗୋଟିଏ ଦେଶର ଉଦ୍ଭିଦ ଅନ୍ୟ ଦେଶରେ ଚାଷ କରିବା ସମ୍ଭବ ହୋଇପାରିଛି । ଉଦାହରଣ ସ୍ୱରୂପ ଆମ ଦେଶରେ ଶୋଭା ପାଉଥିବା ଅଧିକାଂଶ ଋତୁଜ ପୁଷ୍ପ (Seasonal flowers) ବିଦେଶରୁ ଆନୀତ । ଏହା ଉଦ୍ଭିଦବିତ୍, ଉଦ୍ୟାନବିତ୍, ପରିବ୍ରାଜକ, ପୁଷ୍ପ ଓ ବୃକ୍ଷ ବିକ୍ରେତା ତଥା ସାଧାରଣ ନାଗରିକମାନଙ୍କଦ୍ୱାରା ସମ୍ଭବପର ହୋଇପାରିଛି । ନିମ୍ନରେ କୋତୋଟି ପ୍ରଧାନ ପୁଷ୍ପର ଜନ୍ମଭୂମିମାନଙ୍କର ନାମ ଦିଆଗଲା ।

| -ଫୁଲର ନାମ- | -ଜନ୍ମସ୍ଥାନର ନାମ- |
|---|---|
| ଜିନିଆ | ମେକସିକୋ |
| ଗେଣ୍ଡୁ | ମେକ୍ସିକୋ ଓ ଭାରତ |

| | |
|---|---|
| ସାଲଭିଆ | ବ୍ରାଜିଲ୍ |
| ଟେବୁଲ ଗୋଲାପ | ବ୍ରାଜିଲ୍ |
| ଫ୍ଲକସ୍ | ଟେକ୍ସାସ୍ |
| ପେଟୁନିଆ | ଦକ୍ଷିଣ ଆମେରିକା |
| ଜେରବେରା | ଜର୍ମାନୀ |
| ସୁଇଟି ଉଇଲିୟମ୍ | ଋଷିଆ |
| କ୍ରୋଷାଣ୍ଡ୍ରା | ମୋଜାମ୍ବିକ |
| କେତକୀ | ମାଳୟ |

ଆମ ଦେଶର ଜଳବାୟୁ ସବୁସ୍ଥାନରେ ସମାନ ନୁହେଁ । ଅକ୍ଷାଂଶ ଓ ଦ୍ରାଘିମାର ଅବସ୍ଥିତି ଏବଂ ସମୁଦ୍ର ପତ୍ତନଠାରୁ ଉଚ୍ଚତାର ଅବସ୍ଥିତି ନେଇ ବିଭିନ୍ନ ସ୍ଥାନରେ ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ବିଭିନ୍ନ ପ୍ରକାର ପୁଷ୍ପ ଫୁଟିଥାଏ । ସେହିପରି ବୃଷ୍ଟିର ଅନୁପାତ, ସର୍ବନିମ୍ନ ଓ ସର୍ବୋଚ୍ଚ ଉତ୍ତାପ ପ୍ରଭୃତି ବିଭିନ୍ନ ପ୍ରକାର ଉଦ୍ଭିଦର ବିକାଶରେ ପ୍ରଭାବ ପକାଇଥାନ୍ତି । ବିଶେଷଭାବରେ ଆମ ଓଡ଼ିଶାର ସମୁଦ୍ର ପତ୍ତନଠାରୁ ଆରମ୍ଭକରି ୩,୦୦୦ ଫୁଟରୁ ଅଧିକ ଉଚ୍ଚରେ ଥିବା ସ୍ଥାନଗୁଡ଼ିକ ବର୍ଷର ଗୋଟିଏ ସମୟରେ ପରିଦର୍ଶନ କଲେ ଏହା ସହଜରେ ଉପଲବ୍ଧି କରିହେବ । ସେହିପରି ଭାରତ ଭଳି ବିରାଟ ଉପମହାଦେଶରେ ଜଳବାୟୁର ବିଭିନ୍ନତା ବର୍ଷର ଯେ କୌଣସି ଗୋଟିଏ ସମୟରେ ଦେଖାଯାଇଥାଏ । ଆମ୍ଭେମାନେ ଦକ୍ଷିଣରୁ ଉତ୍ତରକୁ, ପଶ୍ଚିମରୁ ପୂର୍ବକୁ, ଉଚ୍ଚ ପର୍ବତମାଳାରୁ ସମୁଦ୍ର ଆଡ଼କୁ ଗଲେ ପ୍ରକୃତିର ବୈଚିତ୍ର୍ୟ ଓ ଭିନ୍ନତା ସମ୍ବନ୍ଧରେ ସହଜରେ ଜ୍ଞାନ ଲାଭ କରିପାରିବା । ଏପ୍ରିଲ୍ ମାସଠାରୁ ଜୁଲାଇମାସ ପର୍ଯ୍ୟନ୍ତ ମଧ୍ୟଭାରତ ତଥା ଉତ୍ତର ଭାରତର କେତେକ ଅଂଶରେ ପ୍ରଚଣ୍ଡ ଗ୍ରୀଷ୍ମକାଳ ହେଉଥିବାରୁ ଓ ଜୁନ୍‌ମାସ ସୁଦ୍ଧା ଏହି ଅଞ୍ଚଳଗୁଡ଼ିକରେ ମୌସୁମୀବାୟୁ ପ୍ରଭାବିତ ହେଉ ନଥିବାରୁ ବର୍ଷର ଏହି ସମୟରେ ଅଧିକାଂଶ ଋତୁଜ ପୁଷ୍ପ ଲଗାଯାଇପାରେ ନାହିଁ । ସେପ୍ଟେମ୍ବର ମାସ ପରେ ବିଭିନ୍ନ ପ୍ରକାର ଋତୁଜ ପୁଷ୍ପ ଏହି ଅଞ୍ଚଳରେ

ଲଗାଯିବା ସମ୍ଭବପର ହୁଏ । କିନ୍ତୁ ଉତ୍ତରଭାରତର ଉଚ୍ଚ ପାର୍ବତ୍ୟ ଅଞ୍ଚଳ, ଦାର୍ଜିଲିଂ, ସିମଳା, ମସୋରି ପ୍ରଭୃତି ସ୍ଥାନମାନଙ୍କରେ ମାର୍ଚ୍ଚ ମାସଠାରୁ ଆରମ୍ଭ କରି ନଭେମ୍ବର ମାସ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ପୁଷ୍ପ ଲଗାଯାଏ । ନଭେମ୍ବର ମାସ ପରେ ଓ ମାର୍ଚ୍ଚମାସ ପୂର୍ବରୁ ଏହି ଅଞ୍ଚଳରେ ତାପମାତ୍ରା ଖୁବ୍ ତଳକୁ ଖସି ଆସୁଥିବାରୁ ଓ କେତେକ ସ୍ଥାନରେ ବରଫପାତ ହେଉଥିବାରୁ ଉଦ୍ୟାନର ଶୋଭା ବିକଶିତ ହୋଇପାରେ ନାହିଁ । ଏହି ଅଞ୍ଚଳଗୁଡ଼ିକର ଜଳବାୟୁ ବିଭିନ୍ନ ପ୍ରକାର ଫୁଲର ମଞ୍ଜି ଉତ୍ପାଦନରେ (Seed production) ସାହଯ୍ୟ କରିଥାଏ । ସେହିପରି ଭାରତର ମଧ୍ୟଭାଗରେ ଅବସ୍ଥିତ ନୀଳଗିରି ପାହାଡ଼ମାଳାର ଉଟ୍‌କାମଣ୍ଡ ପ୍ରଭୃତି ସ୍ଥାନମାନଙ୍କରେ ଗ୍ରୀଷ୍ମକାଳ ତଥା ଶୀତକାଳର ଶୋଭା ଉପଭୋଗ କରିହୁଏ । ଏହି ଅଞ୍ଚଳଗୁଡ଼ିକର ଜଳବାୟୁ ନାତିଶୀତୋଷ୍ଣ ହୋଇଥିବାରୁ ଏଠାରେ ବିଭିନ୍ନ ପ୍ରକାରର ଉଦ୍ଭିଦ ଭଲଭାବରେ ବଢ଼ିପାରନ୍ତି ।

ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ବର୍ଷାଦିନିଆ ଫୁଲ ଜୁନମାସରେ ଏବଂ ଶୀତକାଳୀନ ଫୁଲଗୁଡ଼ିକୁ ସେପ୍‌ଟେମ୍ବର ମାସରେ ଲଗାଯାଇଥାଏ । ଦାକ୍ଷିଣାତ୍ୟର ମଧ୍ୟଭାଗରେ ଥିବା ନାତ୍ୟୁଚ୍ଚ ଅଞ୍ଚଳରେ ବର୍ଷସାରା ବିଭିନ୍ନ ପ୍ରକାରର ପୁଷ୍ପଚାଷ କରାଯାଇପାରେ । ଦାକ୍ଷିଣାତ୍ୟର ଯେଉଁ ଅଞ୍ଚଳରେ ପ୍ରଚୁର ବର୍ଷା ହୁଏ ସେହି ସ୍ଥାନ ଗୁଡ଼ିକରେ ଫେବୃୟାରୀ ମାସ ପରେ ବିଭିନ୍ନ ପ୍ରକାର ଋତୁଜ ପୁଷ୍ପ ଲଗାଯାଏ ।

ଶୀତ ଜଳବାୟୁରୁ ଆନୀତ ଉଦ୍ଭିଦଗୁଡ଼ିକ ଆମଦେଶର ସମୁଦ୍ର ପତ୍ତନଠାରୁ ଉଚ୍ଚରେ ଥିବା ସ୍ଥାନଗୁଡ଼ିକରେ ଭଲ ବଢ଼ିପାରନ୍ତି । ତେବେ ଯେଉଁଗୁଡ଼ିକ ଆମଦେଶର ଜଳବାୟୁରେ ଭଲ ବଢ଼ିପାରନ୍ତି ନାହିଁ ସେଗୁଡ଼ିକ କାଚଘର (Glass house) କୁମ୍ଭ ଘର (Pot house), ସୁଶୀତଳ ଗୃହ (Conservatory) ପ୍ରଭୃତିରେ ଲଗାଯାଇଥାଏ । ତେବେ ଏପରି ଅନେକ ପ୍ରକାରର ଉଦ୍ଭିଦ ଅଛନ୍ତି ଯେଉଁଗୁଡ଼ିକ ଯଥାସମ୍ଭବ ଅନ୍ୟ ଗୋଟିଏ ସ୍ଥାନର ଜଳବାୟୁରେ କିଛିଦିନ ବଢ଼ିବା ପରେ ସେହି ସ୍ଥାନରେ ବଢ଼ିବାପାଇଁ ଅଭ୍ୟସ୍ତ ହୋଇଯାନ୍ତି ।

ପ୍ରଥମରୁ କୁହାଯାଇଛି ଯେ ବିଭିନ୍ନ ପ୍ରକାର ପୁଷ୍ପ ସାଧାରଣତଃ ଜଳବାୟୁର ଭିନ୍ନତା ନେଇ ଭଲ ବଢ଼ିପାରନ୍ତି । ଏହି ଦୃଷ୍ଟିରୁ ପୁଷ୍ପକୁ ତିନୋଟି ଭାଗରେ ବିଭକ୍ତ କରାଯାଇଛି । ଯଥା ବର୍ଷାକାଳୀନ ଋତୁଜ ପୁଷ୍ପ, ଶୀତକାଳୀନ ଋତୁଜ ପୁଷ୍ପ ଏବଂ ଗ୍ରୀଷ୍ମକାଳୀନ ଋତୁଜ ପୁଷ୍ପ । ବର୍ଷାକାଳର ପୁଷ୍ପଗୁଡ଼ିକ ମଧ୍ୟରେ ହରଗଉରା (Balsom) ଜିନିଆ (Zinnia), ହଳଦିଆ କସମସ୍ (Yellow cosmos), ଗେଣ୍ଡୁ (Marigold) ଗିଲାଡ଼ିଆ (Gaillardia), ଗମ୍ଫିରନା (Gomphrena), କୋରିଅପ୍‌ସିସ୍ (Coreopsis) ପ୍ରଭୃତି ପ୍ରଧାନ । ଶୀତ ଋତୁରେ ସବୁଠାରୁ ବେଶୀ ସଂଖ୍ୟକ ଋତୁଜ ପୁଷ୍ପ ଲଗାଯାଏ । ଯଥା– ଆଣ୍ଟିରାଇନମ୍ ଆଜିରେଟମ୍, କାଲେଣ୍ଡୁଲା, କର୍ଣ୍ଣଫ୍ଲାଓ୍ୟାର, ସେବତୀ, ଫ୍ଲକ୍‌ସ, ଡାଇମୋରପୋଥିକା, ଡାଇଆନ୍ଥସ୍, ଲାର୍କସ୍ପର, ପେନସି, ସାଲଭିଆ ପ୍ରଭୃତି । ଖରାଦିନ ଏବଂ ବର୍ଷସାରା ହୋଇପାରୁଥିବା ଫୁଲଗୁଡ଼ିକର ନାମ ହେଲା ଗିଲାରଡ଼ିଆ, ଜିନିଆ, ସୂର୍ଯ୍ୟମୁଖୀ, କୋରିଅପ୍‌ସିସ୍ ଏବଂ ଟିଥୋନିଆ ।



## ।। ଚତୁର୍ଥ ପରିଚ୍ଛେଦ ।।

# ମୃତ୍ତିକା

ପୃଥିବୀର ଉପରିଭାଗର କ୍ଷୟିଭୂତ ସ୍ତରକୁ ମୃତ୍ତିକା କୁହାଯାଏ । ଉଦ୍ଭିଦମାନେ ମୃତ୍ତିକାରୁ ଖାଦ୍ୟ ପ୍ରସ୍ତୁତ ପାଇଁ ଅନେକ ଆବଶ୍ୟକୀୟ ବସ୍ତୁ ସଂଗ୍ରହ କରିଥାନ୍ତି । ଏହା ବ୍ୟତିତ ମୃତ୍ତିକା ଗଛର ଚେରଗୁଡ଼ିକୁ ଧରି ତାକୁ ସିଧା ଭାବରେ ବଢ଼ିବାରେ ସାଯାଯ୍ୟ କରିଥାଏ । ପୁଷ୍ପ ଚାଷ ପାଇଁ ସାଧାରଣତଃ ଉର୍ବର ମାଟି ଦରକାର । ବିଭିନ୍ନ ପ୍ରକାରର ଉଦ୍ଭିଦ ବିଭିନ୍ନ ପ୍ରକାର ମୃତ୍ତିକାରେ ବଢ଼ିଥାନ୍ତି । ସ୍ଥାନ ବିଶେଷରେ ମୃତ୍ତିକାର ପ୍ରକାର ବିଭିନ୍ନ ଧରଣର ହୋଇଥାଏ । ଜଳବାୟୁ ଓ ପ୍ରାକୃତିକ ପରିବେଶର ପ୍ରକୋପରେ ପ୍ରସ୍ତରଗୁଡ଼ିକର କ୍ଷୟ ସାଧନ ଘଟି ମୃତ୍ତିକା ଗଠନ ସମ୍ଭବପର ହୋଇଥାଏ । ତେଣୁ ମୃତ୍ତିକାର ବିଭିନ୍ନତା ପ୍ରସ୍ତରଗୁଡ଼ିକର ଉପାଦାନଜନିତ ବିଭିନ୍ନତା ଉପରେ ନିର୍ଭର କରିଥାଏ । ମୃତ୍ତିକା ଦୁଇ ପ୍ରକାର ମୌଳିକ ପଦାର୍ଥ ଦ୍ୱାରା ସାଧାରଣତଃ ଗଠିତ ହୋଇଥାଏ । ପ୍ରସ୍ତରର କ୍ଷୟପ୍ରାପ୍ତ କ୍ଷୁଦ୍ର କ୍ଷୁଦ୍ର ଅଂଶ ଏବଂ ଅନ୍ୟଟି ହେଲା ସଢ଼ା ବୃକ୍ଷ ଓ ପ୍ରାଣୀମାନଙ୍କର ଜୈବିକ ଅବଶେଷ । ସାଧାରଣତଃ ମାଟିରେ ଆମେ ଛଅ ପ୍ରକାର ବସ୍ତୁ ଦେଖିଥାଉ । ଯଥା– ବାଲିଗରଡ଼ା, ଭୁଷାବାଲି, ସରୁବାଲି, ପଟୁ (Silt), କାଦୁଅ ଏବଂ ଜୈବିକ ପଦାର୍ଥ । ଏହିଗୁଡ଼ିକ ମଧ୍ୟରୁ ବାଲିଗରଡ଼ା ଓ ଭୁଷାବାଲିଗୁଡ଼ିକ ଗଛ ବଢ଼ିବାରେ ସାହାଯ୍ୟ ନ କରୁଥିଲେ ବି ଏଗୁଡ଼ିକ ମଧ୍ୟରେ ରହୁଥିବା ଫାଙ୍କରେ ବାୟୁ ସଞ୍ଚାଳନ ହୁଏ ଏବଂ ଉଦ୍ଭିଦର ନିଃଶ୍ୱାସ ପ୍ରଶ୍ୱାସ ତଥା ଜଳ ଯୋଗାଣରେ ସାହାଯ୍ୟ କରିଥାଏ । କାକଟସ ପ୍ରଭୃତି କେତେକ ଜାତିର ଉଦ୍ଭିଦ ଏଗୁଡ଼ିକରେ ସହଜରେ ବଢ଼ିଥାନ୍ତି । ନିମ୍ନରେ କେତେକ ମାଟି ସମ୍ବନ୍ଧରେ ଆଲୋଚନା କରାଗଲା ।

**କାଦୁଆ ମାଟି** (Clay soil) କାଦୁଅ ମାଟିରେ ଭଲ ପୁଷ୍ପ ଚାଷ ହୋଇପାରେ ନାହିଁ । କ୍ଷୁଦ୍ର କ୍ଷୁଦ୍ର କର୍ଦ୍ଦମ କଣିକାଗୁଡ଼ିକ ସଂଯୋଗରେ ଗଠିତ ଏହି ପ୍ରକାର ମାଟିର ଜଳ ଧାରଣ କ୍ଷମତା ଏତେ ବେଶୀ ଯେ ମାଟି ସନ୍ତସନ୍ତିଆ ରୁହେ

ଓ ଶୁଖିଲେ ଫାଟି ଟାଣ ହୋଇଯାଏ । ତେଣୁ ଉଦ୍ଭିଦଗୁଡ଼ିକ ଏଥିରୁ ଜଳ ଗ୍ରହଣ କରିବା ସମ୍ଭବପର ହୋଇପାରେ ନାହିଁ । ତେଣୁ ଉଦ୍ଭିଦଗୁଡ଼ିକ ଭଲ ଭାବରେ ବଢ଼ି ପାରନ୍ତି ନାହିଁ । ଏହି ପ୍ରକାର ମାଟିକୁ ପୁଷ୍ଟ ଚାଷୋପଯୋଗୀ କରିବାକୁ ହେଲେ ସମପରିମାଣରେ ବାଲି ଓ ଖତ ମିଶାଇ ମାଟିର ଦୈହିକ ଗଠନରେ ପରିବର୍ତ୍ତନ ଘଟାଇବା ଦରକାର ହୋଇଥାଏ ।

**ବାଲିଆ ମାଟି** (Sandy Soil) ବାଲିଆ ମାଟିର ଗୁଣ କାଦୁଆମାଟିର ଗୁଣର ଠିକ୍ ବିପରୀତ । ଏହାର ସଂଯୋଗକଣିକାଗୁଡ଼ିକ ଆକାରରେ ବଡ଼ ହୋଇଥିବାରୁ ଏହାର ଜଳ ଧାରଣ ଶକ୍ତି ଖୁବ୍ କମ୍ । ଅଳ୍ପ ପାଣିରେ ଆର୍ଦ୍ର ହୋଇଗଲେ ବି ଖୁବ୍ କମ ସମୟରେ ଶୁଷ୍କ ହୋଇଥାଏ । ତେଣୁ ଏଥିରେ ବାରମ୍ବାର ଜଳସେଚନ କରିବାକୁ ପଡ଼େ । ଏଥିରେ ଜୈବିକ ଅଂଶ ଖୁବ କମ ପରିମାଣରେ ଥାଏ । ତେଣୁ ଗଛ ଭଲଭାବରେ ବଢ଼ିବା ପାଇଁ ଉପଯୁକ୍ତ ଖାଦ୍ୟ ପାଇପାରେ ନାହିଁ । ବାଲିଆମାଟିକୁ ପୁଷ୍ଟଚାଷ ଉପଯୋଗୀ କରିବା ପାଇଁ ଉପଯୁକ୍ତ ପରିମାଣର ଭଲମାଟି, ଖତ ପ୍ରଭୃତି ମିଶାଯିବା ଆବଶ୍ୟକ । କିଛି ଚୂନ ମିଶାଇଲେ ଏହି ମାଟିରୁ ଭଲ ଫଳ ମିଳିଥାଏ ।

**ପଟୁ ମାଟି** (Silty soil) - ପଟୁମାଟି ପୁଷ୍ଟଚାଷ ପାଇଁ ଖୁବ୍ ଉପଯୁକ୍ତ ଅଟେ । ବାଲି ଓ କର୍ଦ୍ଦମ ଅଂଶ ଏଥିରେ ସମଅନୁପାତରେ ସାଧାରଣତଃ ଥାଏ । ତେଣୁ କାଦୁଆ ଓ ବାଲିମାଟି ଗୁଡ଼ିକର ଭଲ ଗୁଣଗୁଡ଼ିକ ଏଥିରେ ସଂରକ୍ଷିତ । ଏହାର ଜଳଧାରଣ ଶକ୍ତି ଯେପରି ଭଲ, ଜଳ ନିଷ୍କାସନ ଗୁଣ ମଧ୍ୟ ଅନୁରୂପ ଭାବେ ଉତ୍ତମ । ଏଥିରେ ଜୈବିକ ଅଂଶ ଥିବାରୁ ଏହା ଉଦ୍ଭିଦ ବୃଦ୍ଧି ପାଇଁ ସାହାଯ୍ୟ କରିଥାଏ । ତେଣୁ ପଟୁମାଟି ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ଯଥା– ବାଲିଆ ପଟୁ ଏବଂ କାଦୁଆ ପଟୁ । ଏହି ଦୁଇପ୍ରକାର ମୃତ୍ତିକାରେ ସମପରିମାଣରେ ଜୈବିକ ଖତ ମିଶାଇ ତାହାକୁ ପୁଷ୍ଟଚାଷପାଇଁ ଉପଯୁକ୍ତ କରାଯାଇଥାଏ ।

**ଗୋଡ଼ିଆ ମାଟି** (Gravelly soil) - ଏହା ନିକୃଷ୍ଟ ଧରଣର ମୃତ୍ତିକା । ଏହାର ଜଳ ଧାରଣ ଶକ୍ତି ସବୁଠାରୁ କମ୍ । ସର୍ବୋପରି ଏଥିରେ କମ ପରିମାଣ

ଜୈବିକ ଅଂଶ ଥାଏ । ଏଥିରେ ଫୁଲଚାଷ କରିବାକୁ ହେଲେ ସମପରିମାଣରେ ଖତ ଓ ପଟୁମାଟି ମିଶାଇବା ଆବଶ୍ୟକ । ଏହି ମାଟିରେ ଗତୁଙ୍କ ପୁଷ୍ପ ତଥା ଲନ୍‌ଘାସ ପ୍ରଭୃତି ଭଲଭାବରେ ବଢ଼ିପାରନ୍ତି ନାହିଁ ।

**ଦୋରସା ମାଟି** (Loamy soil) ନଦୀର ତ୍ରିକୋଣ ଭୂମି ତଥା ଉପକୂଳ ଅଞ୍ଚଳରେ ଦୋରସାମାଟି ଦେଖା ଯାଇଥାଏ । ଏହାର ଉତ୍ତମ ଜଳ ଧାରଣ ଓ ନିଷ୍କାସନ ଗୁଣ ଥିବାରୁ ଓ ଏଥିରେ ଉପଯୁକ୍ତ ପରିମାଣର ଜୈବିକ ଅଂଶ ଥିବାରୁ ଏହା ଉପଯୁକ୍ତ ବଗିଚା ମୃତ୍ତିକାରୂପେ ପରିଗଣିତ ହୋଇଥାଏ ।

**ପିଟ୍‌ମାଟି** (Peaty soil) ବିଭିନ୍ନ ପ୍ରକାର ଉଦ୍ଭିଦର କ୍ଷୟପ୍ରାପ୍ତ ଅଂଶରେ ଏହି ମୃତ୍ତିକା ତିଆରି ହୋଇଥାଏ । ପିଟ୍‌ମାଟି ସବୁବେଳେ ସୁବିଧାରେ ମିଳିପାରେ ନାହିଁ । ଜଙ୍ଗଲ ଅଞ୍ଚଳରୁ ତଥା ପୋଖରୀ କୂଳରୁ ଏହାକୁ ସଂଗ୍ରହ କରାଯାଇଥାଏ କିମ୍ବା ସାମୟିକ ଭାବେ ବଗିଚାରେ ପ୍ରସ୍ତୁତ କରାଯାଇଥାଏ । ଇଷତ୍ ଆଲୋକରେ ବଢ଼ିପାରୁଥିବା ଆନ୍ଥୁରିୟମ୍, ଚିତ୍ରସାରୁ, ଡାଇଫେନବାଚିଆ ଏବଂ ଫର୍ଣ୍ଣ ପ୍ରଭୃତି ଉଦ୍ଭିଦ ଏହି ମାଟିରେ ଭଲ ବଢ଼ିପାରନ୍ତି । କୁଣ୍ଡରେ ଗଛ ଲଗାଇଲାବେଳେ ଏହି ମାଟି ବ୍ୟବହାର କଲେ ଭଲ ଫଳ ମିଳେ ।

**ହ୍ୟୁମସ୍** (Humus) ମୃତ୍ତିକାରେ ଥିବା ଜୈବିକ ଅଂଶକୁ ହ୍ୟୁମସ୍ କୁହାଯାଏ । ଏହା ଉଦ୍ଭିଦକୁ ଖାଦ୍ୟ, ବାୟୁ ତଥା ଉତ୍ତାପ ଯୋଗାଇବାରେ ସାହାଯ୍ୟ କରେ । ଏହି ଅଂଶ ମାଟିରେ ବେଶୀ ଥିଲେ ମୃତ୍ତିକାର ବାୟୁ ସଞ୍ଚାଳନ ଭଲଭାବରେ ହୋଇପାରେ । ହ୍ୟୁମସ୍ ମୃତ୍ତିକାର ଉତ୍ତାପ ଧାରଣ ଶକ୍ତି ବଢ଼ାଇ ଥାଏ । ତେଣୁ ଶୀତ ଦିନର ନିମ୍ନ ଉତ୍ତାପରେ ମଧ ଗଛଗୁଡ଼ିକର କ୍ଷତି ହୁଏ ନାହିଁ । ମାଟିରେ ଥିବା ଉପକାରୀ କ୍ଷୁଦ୍ର କ୍ଷୁଦ୍ର ବ୍ୟାକ୍ଟେରିଆଗୁଡ଼ିକ ଏହା ଯୋଗୁ ବୃଦ୍ଧି ପାଆନ୍ତି ଓ ବୃକ୍ଷର ଉତ୍ତରୋତ୍ତର ବୃଦ୍ଧିରେ ସାହାଯ୍ୟ କରିଥାନ୍ତି ।

ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକର ବିକାଶ ପାଇଁ ଉପଯୁକ୍ତ ମୃତ୍ତିକା ଦରକାର ହୋଇଥାଏ । ସେହି ଦୃଷ୍ଟିରୁ ଭଲ ମାଟି ନ ଥିବା ସ୍ଥାନରେ ବାହାରୁ ଉର୍ବର ମାଟି ଆଣି ବଗିଚା ତିଆରି କରାଯିବା ଉଚିତ । କ୍ଷତିକାରକ ଅମ୍ଳଯୁକ୍ତ

ମୃତ୍ତିକାରେ ଚୂନ (Lime) ଏବଂ କ୍ଷାରଯୁକ୍ତ ମୃତ୍ତିକାରେ ଜିପସମ (Gypsum) ମିଶାଇ ମାଟିକୁ ସଂଶୋଧନ କରାଯିବା ପ୍ରୟୋଜନ । ସେହିପରି ମାଟିକୁ ଉପଯୁକ୍ତ କରିବା ପାଇଁ ବିଭିନ୍ନ ପ୍ରକାର ମୃତ୍ତିକାରେ ଉପଯୁକ୍ତ ଅନୁପାତରେ ଖତ, ବାଲି କିମ୍ବା ଭଲମାଟି ମିଶାଇବା ଦରକାର । ମାଟିକୁ ଆବଶ୍ୟକତା ଅନୁଯାୟୀ ଖୋସା କୋଡ଼ା କରିବା ପ୍ରୟୋଜନ । ଏହାଦ୍ୱାରା ମାଟି ହାଲୁକା ହୁଏ ଓ ମାଟି ଭିତରେ ବାୟୁ ସଞ୍ଚାଳିତ ହୋଇଥାଏ । ଫଳରେ ଚେରଗୁଡ଼ିକ ମାଟିରେ ଖୁବ୍ କମ୍‌ସମୟ ମଧ୍ୟରେ ବଢ଼ିପାରନ୍ତି । ଅନ୍ୟ ଦିଗରୁ ବିଚାର କଲେ ମଧ୍ୟ ହାଲୁକା ମାଟିରେ ଉପଯୁକ୍ତ ଜଳ ନିଷ୍କାସନ ହୁଏ ଏବଂ ଉଦ୍ଭିଦ ଉପକାରୀ ଅଣୁଜୀବ (Micro-organism) ଗୁଡ଼ିକ ଭଲଭାବରେ ବଢ଼ିପାରନ୍ତି । ଗଛମୂଳ ମାଟି ଖୁସାଇଦେଲେ ଅନାବନା ଗଛ ସବୁ ମରିଯାନ୍ତି । ଫଳରେ ଅନାବନା ଗଛଗୁଡ଼ିକ ଗ୍ରହଣ କରୁଥିବା ସାରଗୁଡ଼ିକ ଶୋଭାବର୍ଦ୍ଧକ ଉଦ୍ଭିଦଗୁଡ଼ିକର ଉପଯୁକ୍ତ ବିକାଶରେ ଲାଗିଥାଏ ।

**ଜଳସେଚନ ଓ ଜଳ ନିଷ୍କାସନ** - ଜଳ ଉଦ୍ଭିଦମାନଙ୍କର ଜୀବନ ହେଲେ ବି ଏହାର ଉପଯୁକ୍ତ ବ୍ୟବହାର କେବଳ ବୃକ୍ଷମାନଙ୍କ ପକ୍ଷରେ ହିତକର । ଅଧିକ ଜଳଦାନ ତଥା ଜଳ ବିହୀନ ଅବସ୍ଥା ଉଦ୍ଭିଦର ବୃଦ୍ଧିରେ ବସ୍ତୁତଃ କ୍ଷତିକାରକ । ଜଳ ଉଦ୍ଭିଦ ଶରୀରର ଏକମାତ୍ର ପ୍ରଧାନ ବସ୍ତୁ । ଉଦ୍ଭିଦଗୁଡ଼ିକର ଜଳଗ୍ରହଣ ଶକ୍ତି ମଧ୍ୟ ପୃଥକ୍ ପୃଥକ୍ ଅଟେ । ବଡ଼ ବଡ଼ ଗଛଗୁଡ଼ିକ ସେମାନଙ୍କ ଚେରଦ୍ୱାରା ମାଟିର ଗଭୀର ସ୍ତରରୁ ଜଳ ସଂଗ୍ରହ କରି ବ୍ୟବହାର କରିପାରନ୍ତି । କିନ୍ତୁ ଋତୁଜ ପୁଷ୍ପ ଭଳି ଛୋଟ ଛୋଟ ଉଦ୍ଭିଦଗୁଡ଼ିକ ମାଟିର ଉପରି ଅଂଶରେ ବଢୁଥିବାରୁ ସାମୟିକ ଜଳଦାନର ଅବ୍ୟବସ୍ଥା ହେଲେ ମଉଳି ଯାଆନ୍ତି । ଏହା ବ୍ୟତୀତ ଉଦ୍ଭିଦମାନେ ଜଳ ମାଧ୍ୟମରେ ମାଟିରୁ ଦ୍ରବୀଭୂତ ସାରମାନଙ୍କୁ ଗ୍ରହଣ କରିଥାନ୍ତି । ମାଟିର ଜଳ ବହୁଳ ପରିସ୍ଥିତିରେ ଉଦ୍ଭିଦମାନେ ମାଟିରୁ କମ୍ ସାର ଗ୍ରହଣ କରିଥାନ୍ତି । ସ୍ୱଳ୍ପ ଜଳ ଥିବା ମାଟିରେ ସାର ବସ୍ତୁର ସାନ୍ଦ୍ରତା ବଢ଼ିଯିବାରୁ ଏହା ଉଦ୍ଭିଦରୁ ଅଃନ୍ତଚାପ (Osmotic pressure) ଦ୍ୱାରା ଜଳ ଟାଣିନେଇଯିବାରୁ ଗଛ ଝାଉଁଳି ଯାଏ । ଗଛ ମାଟିରୁ ଯେପରି ଭାବରେ ଜଳ ଗ୍ରହଣ କରିନିଏ, ସେହିପରି ଭାବରେ ଏହାର ପତ୍ର ଏବଂ ଅନ୍ୟାନ୍ୟ ଅଂଶରେ ଥିବା ଗବାକ୍ଷ ଛିଦ୍ର (Stomata) ଦେଇ ପ୍ରସ୍ୱେଦନ ପ୍ରକ୍ରିୟା ଯୋଗୁଁ ଜଳ ବୃକ୍ଷର ବାହାରକୁ ଚାଲିଯାଏ । ତେଣୁ ଉପଯୁକ୍ତ ଜଳଦାନ ବୃକ୍ଷକୁ ଠିକ୍ ଭାବରେ

ବଢ଼ିବାରେ ସାହାଯ୍ୟ କରେ । ପ୍ରତ୍ୟେକ ଉଦ୍ଭିଦର ବିକାଶ ମାଟିର ଜଳ ଧାରଣ ଶକ୍ତି ତଥା ଜଳ ଗ୍ରହଣ ଶକ୍ତି ଉପରେ ନିର୍ଭର କରେ । ଜଳ ମୃତ୍ତିକାର କଣିକାଗୁଡ଼ିକୁ ଘେରି ରହିଥାନ୍ତି । ଏହା ବ୍ୟତୀତ କଣିକାଗୁଡ଼ିକର ମଧ୍ୟବର୍ତ୍ତୀ ସ୍ଥାନ (Interspace) ଗୁଡ଼ିକରେ ଜଳ ସଞ୍ଚିତ ହୋଇ ରହିଥାଏ । ବିଭିନ୍ନ ପ୍ରକାର ମୃତ୍ତିକାରେ ଜଳଧାରଣ ଶକ୍ତି ବିଭିନ୍ନ ପ୍ରକାର ହୋଇଥାଏ । ମୃତ୍ତିକାର ଜଳକୁ ତିନିଭାଗରେ ବିଭକ୍ତ କରାଯାଇଥାଏ । ଯଥା– ଆକର୍ଷିତ ଜଳ (Hygroscopic water), କୈଶିକ ଜଳ (Cappilary water) ଏବଂ ଅଭିକର୍ଷଣୀୟ ଜଳ (Gravitational water) । ଏହି ତିନି ପ୍ରକାର ଜଳ ମଧ୍ୟରୁ କୈଶିକ ଜଳ ଉଦ୍ଭିଦର ବିକାଶ ପାଇଁ ବିଶେଷ ସାହାଯ୍ୟ କରିଥାଏ । ସଳିତା ଦୀପରୁ ତେଲ ଟାଣିଲା ପରି ଚେର ମାଟିରୁ ଏହି ଜଳ ଗ୍ରହଣ କରିଥାଏ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଯୋଗୁ ମୃତ୍ତିକାରେ ଥିବା ଜଳର କିଛି ଅଂଶ ଅଭିକର୍ଷଣୀୟ ଜଳରୂପେ ମାଟିତଳକୁ ଚାଲିଯାଏ । ଗଛ ମାଟିରୁ କୈଶିକ ଜଳ ଗ୍ରହଣ କରି ସାରିଲାପରେ ଯେଉଁ ଜଳାଂଶ ମାଟି ଭିତରେ ଲାଗିରହେ ତାହାକୁ ଆକର୍ଷିତ ଜଳ (Hygroscopic water) କୁହାଯାଏ । ବୃକ୍ଷର ଶୋଷଣ ଚାପ ଏହି ଜଳକୁ ବ୍ୟବହାର କରିବାକୁ ସମର୍ଥ ହୁଏ ନାହିଁ । ସେହି ଦୃଷ୍ଟିରୁ ଅନେକ ସମୟରେ ଉଦ୍ଭିଦ ବଢୁଥିବା ମାଟିରେ କିଛି ଜଳୀୟଅଂଶ ଥିଲେ ବି ଉଦ୍ଭିଦଗୁଡ଼ିକ ଝାଉଁଳିପଡ଼ିବାର ଲକ୍ଷ୍ୟ କରାଯାଏ ।

ବିଭିନ୍ନ ଜାତିର ଉଦ୍ଭିଦ ବିକାଶ ପାଇଁ ଭିନ୍ନ ପରିମାଣର ଜଳ ଦରକାର ହୋଇଥାଏ । ଫର୍ଣ୍ଣ, ସୁନସୁନିଆ, କାଲାଡ଼ିଅମ୍ ପ୍ରଭୃତି ଅଧିକ ଜଳ ଦରକାର କରୁଥିଲେ ବି କାକ୍ଟସ ଓ ସିଝୁ ଜାତୀୟ କେତେକ ଉଦ୍ଭିଦ କମ୍ ଜଳ ଦରକାର କରିଥାନ୍ତି । ସେହିପରି ଋତୁଜ ପୁଷ୍ପ ଏବଂ ବିଭିନ୍ନ ପ୍ରକାରର ବୃକ୍ଷଗୁଡ଼ିକର ଜଳର ଆବଶ୍ୟକତା ଭିନ୍ନ ଭିନ୍ନ ହୋଇଥାଏ । ଶୀଘ୍ର ବଢୁଥିବା ଗଛଗୁଡ଼ିକ ଧୀରେ ଧୀରେ ବଢୁଥିବା ଗଛଗୁଡ଼ିକଠାରୁ ଅଧିକ ଜଳ ଦରକାର କରିଥାନ୍ତି । ଛାଇରେ ଥିବା ଗଛଗୁଡ଼ିକ କମ୍ ଜଳ ଦରକାର କରନ୍ତି । ସେହିପରି ସୁପ୍ତ ଅବସ୍ଥାରେ କିମ୍ବା ଛେଦିତ (Prunned) ଅବସ୍ଥାରେ ଗଛଗୁଡ଼ିକ କମ୍ ପରିମାଣରେ ଜଳ ଗ୍ରହଣ କରିଥାନ୍ତି ।

॥ ପଞ୍ଚମ ପରିଚ୍ଛେଦ ॥

# ଖତସାର

ମୃତ୍ତିକାରେ ଗଚ୍ଛିତ ଖାଦ୍ୟସାର ସବୁ ସମୟରେ ଉଦ୍ଭିଦର ବିକାଶ ପାଇଁ ଯଥେଷ୍ଟ ନୁହେଁ । ସେହି ଦୃଷ୍ଟିରୁ ମୃତ୍ତିକାର ଉର୍ବରତା ବଢ଼ାଇବା ପାଇଁ ଆମକୁ ବିଭିନ୍ନ ପ୍ରକାରର ରାସାୟନିକ ଓ ଜୈବିକ ସାର ଓ ଖତ ପ୍ରୟୋଗ କରିବାକୁ ପଡ଼ିଥାଏ । ଏହା ବ୍ୟତୀତ ସବୁ ପ୍ରକାର ମୃତ୍ତିକାର ଉର୍ବରତା ସମାନ ନୁହେଁ । ଉଦାହରଣସ୍ୱରୂପ ମଟାଳ, ପଟୁ ଓ ଦୋରସାମାଟି ବାଲିଆମାଟିଠାରୁ ଅଧିକ ଉର୍ବର, ସେହିପରି ଉଦ୍ଭିଦମାନଙ୍କ ଦ୍ୱାରା ମାଟିରୁ ବାରମ୍ବାର ଖାଦ୍ୟସାର ବ୍ୟବହୃତ ହୋଇଯାଉଥିବା ଦୃଷ୍ଟିରୁ ମାଟିର ଉର୍ବରତା କ୍ରମଶଃ କମିଯାଏ । ତେଣୁ ମାଟିରେ ଖତ ଓ ସାରଦେବା ଆବଶ୍ୟକ ହୋଇଥାଏ । ଉଦ୍ଭିଦର ବିକାଶ ପାଇଁ ସାଧାରଣତଃ ୧୭ ପ୍ରକାର ରାସାୟନିକ ମୌଳିକ ପଦାର୍ଥ ଦରକାର ହୋଇଥାଏ । ଏହାଭିତରୁ ୯ଟି ହେଲା ଅତ୍ୟାବଶ୍ୟକୀୟ ପଦାର୍ଥ ଓ ଆଠଟି ହେଲା ଅଣୁ ପଦାର୍ଥ । ଯବକ୍ଷାରଜାନ, ଉଦ୍‌ଜାନ, ଅମ୍ଳଜାନ, ଫସ୍‌ଫରସ, ପଟାସ, କାଲସିୟମ, ମ୍ୟାଗ୍ନେସିୟମ, ଗନ୍ଧକ, ଅଙ୍ଗାରକାମ୍ଳଜାନ ପ୍ରଭୃତି ଅତ୍ୟାବଶ୍ୟକୀୟ ସାର । ଏହି ସାରଗୁଡ଼ିକ ଉଦ୍ଭିଦର ବିକାଶ ପାଇଁ ଅଣୁସାର ମାନଙ୍କଠାରୁ ଅଧିକ ପରିମାଣରେ ଦରକାର ହୋଇଥାଏ । ଅଣୁସାରଗୁଡ଼ିକ ଉଦ୍ଭିଦର ବିକାଶରେ କେତେକ ପ୍ରଧାନ ପ୍ରକ୍ରିୟା ନିୟନ୍ତ୍ରଣ କରୁଥିଲେ ହେଁ ଏହାର ଅଭାବ ଅନେକ ସମୟରେ ଅନୁଭବ କରିହୁଏ ନାହିଁ । କାରଣ ମାଟି ତଥା ଅନ୍ୟାନ୍ୟ ସାରଗୁଡ଼ିକରେ ଏହା ମିଶିକରି ରହିଥାଏ । ସ୍ଥଳବିଶେଷରେ ଏହାର ଅଭାବ ଦେଖାଯାଉଥିବା ଉଦ୍ଭିଦ ତଥା ମୃତ୍ତିକାର ଭିନ୍ନତାକୁ ନେଇ ସେଗୁଡ଼ିକୁ ପ୍ରୟୋଗ କରାଯାଇଥାଏ । ଅଣୁସାରଗୁଡ଼ିକ ହେଲା ଲୌହ, ତମ୍ବା, ମାଙ୍ଗାନିଜ, ବୋରନ, ମଲବିଡ଼ନମ, ଦସ୍ତା, କୋବାଲଟ୍ ଏବଂ କ୍ଲୋରିନ ।

ଉଦ୍ଭିଦର ଖାଦ୍ୟକୁ ସାଦାରଣତଃ ବ୍ୟାବହାରିକ ଦୃଷ୍ଟିରୁ ଦୁଇଭାଗରେ ବିଭକ୍ତ କରାଯାଇଥାଏ, ଯଥା– ଜୈବିକ ଖତ ଓ ରାସାୟନିକ ସାର । ଜୈବିକ

ଖତ ପ୍ରାଣୀ ଓ ଉଦ୍ଭିଦମାନଙ୍କର ପଚାସଢ଼ା ଅଂଶରୁ ମିଳିଥାଏ । ଉଦ୍ଭିଦଜାତ ଖତଗୁଡ଼ିକ ମଧ୍ୟରେ କମ୍ପୋଷ୍ଟ, ପିଡ଼ିଆ ପତ୍ରସାର ପ୍ରଭୃତି ପ୍ରଧାନ । ହାଡ଼ଗୁଣ୍ଡ **(Bone meal)** ଶୁଖୁଆ ସାର **(Fish meal)** ରକ୍ତସାର **(Blood meal)** ତଥା ଚର୍ମ ଓ ଅନ୍ୟାନ୍ୟ ଆବର୍ଜନା ଜିନିଷରୁ ତିଆରି ଖତ, ଗୋବରଖତ, ଛେଳି ଖତ, କୁକୁଡ଼ା, ଘୁଷୁରି, ଘୋଡ଼ା ଏବଂ ମେଣ୍ଢା ପ୍ରଭୃତିର ଖତ ପ୍ରାଣୀଜ ଖତ ଅଟେ ।

ଉଦ୍ଭିଦଗୁଡ଼ିକର ବିକାଶରେ ସାହାଯ୍ୟ କରୁଥିବା ସାରଗୁଡ଼ିକର ନିର୍ଦ୍ଦିଷ୍ଟ ପ୍ରଭାବ ଥାଏ । ଯଥା- ଯବକ୍ଷାରଯାନ ଗଛକୁ ଭଲଭାବରେ ବଢ଼ାଏ । ପତ୍ରରେ ସବୁଜ ରଙ୍ଗ ଗାଢ଼ କରେ । ଶାଖା ପ୍ରଶାଖା ମେଲି ଫୁଲ ଫୁଟିଲା ବେଳକୁ ଗଛ ହୃଷ୍ଟପୁଷ୍ଟ ହୋଇଯାଏ । ଏହାର ଅନୁପସ୍ଥିତିରେ ଗଛ ଭଲ ବଢ଼େ ନାହିଁ । ପୁରୁଣା ପତ୍ରଗୁଡ଼ିକ ହଳଦିଆ ପଡ଼ିଯାଏ । କିନ୍ତୁ ଆଧିକ୍ୟରେ ଗଛଗୁଡ଼ିକ ହୃଷ୍ଟପୁଷ୍ଟ ହୋଇ ବଢ଼ିଲେ ବି ଫୁଲ ଫୁଟିବାରେ ଡ଼େରି କରାଏ । ସେହିପରି ଫସଫରସ ସାର ଅଭାବରେ ଗଛ ଖର୍ବ ହୋଇଯାଏ । ପତ୍ର ଓ ଡେମ୍ଫ ଫିକା ନାଲି ପଡ଼ିଯାଏ । ପଟାସିୟମ ଯଦିଓ ମାଟିରେ ବେଶି ପରିମାଣରେ ଥାଏ ତେବେ ଏହାର ଅଭାବରେ କାଣ୍ଡ ଦୁର୍ବଳ ହୋଇଯାଏ । ଗଛର ରୋଗ ପ୍ରତିରୋଧକ ଶକ୍ତି କମିଯାଏ । ଗଛର ଅଗ ଫିକା ହଳଦିଆ ଦିଶେ । ସମୟେ ସମୟେ ପତ୍ରର ଧାର ବାଦାମୀରଙ୍ଗ ହୋଇ ପୋଡ଼ିଗଲା ପରି ଦିଶେ । କାଲିସିୟମ ଅଭାବରେ ପତ୍ର ଗାଢ଼ ବାଦାମୀରଙ୍ଗର ହୋଇ ମୋଟା ମୋଟା ହୋଇଯାଏ । ଲୌହ, ମଲବିଡ଼ନମ୍, ବୋରନ ପ୍ରଭୃତି ଅଭାବ ହେଲେ ଫୁଲର ରଙ୍ଗ ଫିକା ହୋଇଯାଏ ଏବଂ ଗଛଗୁଡ଼ିକ ଖର୍ବାକୃତି ହୋଇଯାଆନ୍ତି । ଜୈବିକ ଖତସାର ପ୍ରୟୋଗରେ ଉଦ୍ୟାନର ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକ ଭଲ ଭାବରେ ବଢ଼ିପାରନ୍ତି । ଖତ ସାହିତ ସାର ପ୍ରୟୋଗ କଲେ ଉଦ୍ଭିଦଗୁଡ଼ିକ ଶୀଘ୍ର ଶୀଘ୍ର ବଢ଼ିଫୁଲ ଓ ଫଳ ଧାରଣ କରନ୍ତି । ତେଣୁ ଖତରେ ସାର ପ୍ରୟୋଗ କଲେ ଭଲ ଫଳ ମିଳିବ । ଜୈବିକ ସାର ବାରମ୍ବାର ପ୍ରୟୋଗ କଲେ ଉଦ୍ୟାନ ମୃତ୍ତିକାର ଉନ୍ନତି ଘଟିଥାଏ ଏବଂ ସୌନ୍ଦର୍ଯ୍ୟ ବର୍ଦ୍ଧକ ଉଦ୍ଭିଦର ଶୋଭା ବଢ଼ିଯାଏ । ସେହିପରି ଖତରୁ ଧୀରେ ଧୀରେ ଖାଦ୍ୟସାର ମିଳୁଥିବାରୁ ଏହା ବହୁଦିନଯାଏ ଗଛକୁ ଖାଦ୍ୟ ଯୋଗାଇବାରେ ସାହାଯ୍ୟ କରିଥାଏ । ରାସାୟନିକ ସାର ଉଦ୍ଭିଦର ବିକାଶ

ଉପରେ ଶୀଘ୍ର ପ୍ରଭାବ ପକାଉଥିଲେହେଁ ଏହାର ବାରମ୍ବାର ବ୍ୟବହାର ବଗିଚାର ମାଟିକୁ ନଷ୍ଟ କରିଦିଏ । ସେହି ଦୃଷ୍ଟିରୁ ବିଗିଚାରେ ସାଧାରଣତଃ ବେଶି ପାରିମାଣର ଖତ ବ୍ୟବହାର କରିବା ସଙ୍ଗେ ସଙ୍ଗେ କମ୍ ମାତ୍ରାର ରାସାୟନିକ ସାର ପ୍ରୟୋଗ କରିବା ଉଚିତ । ଆଜିକାଲି କମ୍ ପରିମାଣର ଯବକ୍ଷାରଜାନ୍, ଫସଫରସ, ପଟାସ ଥିବା ଜୈବିକ ସାର ଯଥା- ଷ୍ଟେରାମିଲ, ରାଲିମିଲ, ସାର ବଗିଚାରେ ବ୍ୟବହାର କରାଯାଇପାରେ । ବିଭିନ୍ନ ପ୍ରକାର ଖତସାର ବ୍ୟବହାରର ପରିମାଣ ସମ୍ବନ୍ଧୀୟ ତଥ୍ୟ ଟେବୁଲରେ ଦିଆଗଲା ।

## ବିଭିନ୍ନ ପ୍ରକାର ଖତ ସାରରେ ଥିବା ଯବକ୍ଷାରଜାନ, ଫସ୍‌ଫୋରିକ୍ ଏସିଡ୍, ପଟାସର ପରିମାଣ ଓ ବ୍ୟବହାର ପ୍ରଣାଳୀ ସମ୍ବନ୍ଧୀୟ ତଥ୍ୟ

| କ୍ର.ନଂ | ନାମ | ଯବକ୍ଷାରଜାନ | ଫସ୍‌ଫୋରିକ୍ ଏସିଡ୍ | ପଟାସ୍ | ବର୍ଗମିଟର ପିଛା ଉପଯୋଗ ପରିମାଣ | ବ୍ୟବହାର କରିବା ପାଇଁ ଉଦ୍ଭିଦ | ବିଶେଷ ତଥ୍ୟ |
|---|---|---|---|---|---|---|---|
| **ଖତ ସାର (Organic Manure)** | | | | | | | |
| ୧ | ଖତ | ୦.୫-୧.୫ | ୦.୪-୦.୮ | ୦.୫-୧.୯ | ୨-୫ କେଜି | ସବୁ ପ୍ରକାର ଉଦ୍ଭିଦ | ସବୁସମୟରେ ଦିଆଯିବ । କଞ୍ଚା ଗୋବର କେବା ଗଛରେ ଦିଆଯିବ । |
| ୨ | କମ୍ପୋଷ୍ଟ (ସହରୀ) | ୧.୦-୨.୦ | ୧-୦ | ୧-୫ | ୧-୨ କେଜି | ସବୁ ପ୍ରକାର ଉଦ୍ଭିଦ | ଗଛ ଲଗାଇବା ପୂର୍ବରୁ ମାଟିରେ ମିଶାଯିବା ଉଚିତ । |
| ୩. | କମ୍ପୋଷ୍ଟ (ଗାଉଁଲି) | ୦.୪-୦.୮ | ୦.୩-୦.୬ | ୦.୭-୧.୦ | ୨-୫ କେଜି | ସବୁ ପ୍ରକାର ଉଦ୍ଭିଦ | ସବୁସମୟରେ ଲଗାଯାଇ ପାରିବ । |
| ୪ | ସବୁଜ ଖତ | ୦.୫-୦.୭ | ୦.୧-୦.୨ | ୦.୮-୧.୬ | ୩-୬ କେଜି | ସବୁ ପ୍ରକାର ଉଦ୍ଭିଦ | ଲଗାଯିବା ପୂର୍ବରୁ ମାଟିରେ ମିଶାଯିବା ଉଚିତ । |
| ୫. | ହାଡ଼ ଗୁଣ୍ଡ | ୧.୦-୨.୦ | ୨୫.୦-୩୦.୦ | | ୧୨୦ ଗ୍ରାମ୍ | ବଲବସ ମୂଳ ଜାତୀୟ ଉଦ୍ଭିଦ । | ଗଛ ଲଗାଯିବା ସମୟରେ ଦିଆଯିବ । |
| ୬. | ମାଛ ଖତ | ୪.୦-୧୦.୦ | ୩.୦-୯.୦ | ୦.୩-୧.୫ | ୯୦ ଗ୍ରାମ | ଋତୁଜ ପୁଷ୍ପ | ଗଛ ଲଗାଯିବା ସମୟରେ ଓ ମଝିରେ ମଝିରେ ମିଶାଯିବା ଉଚିତ । |

| କ୍ର.ନଂ | ନାମ | ଯବକ୍ଷାରଜାନ | ଫସ୍‌ଫୋରିକ୍ ଏସିଡ୍ | ପଟାସ | ବର୍ଗମିଟର ପିଛା ଉପଯୋଗ ପରିମାଣ | ବ୍ୟବହାର କରିବା ପାଇଁ ଉଦ୍ଭିଦ | ବିଶେଷ ତଥ୍ୟ |
|---|---|---|---|---|---|---|---|
| ୭ | ଘୋଡ଼ାଖତ | ୦.୪୭ | ୦.୩୦ | ୦.୩୦ | ୨-୫ କେଜି | କେନା, ସେବତୀ,ଡାଲିଆ | ଗଛ ଲଗାଯିବା ପୂର୍ବରୁ ମାଟିରେ ମିଶାଯାଏ । |
| ୮ | ଛେଳି ମେଣ୍ଢା ଖତ | ୦.୭୦ | ୦.୫୧ | ୦.୨୯ | ୨-୪ କେଜି | ଋତୁ ଜୀବୀ ପୁଷ୍ପ | ଗଛ ଲଗାଯିବା ପୂର୍ବରୁ ଦିଆଯିବା ଉଚିତ । |
| ୯ | କୁକୁଡ଼ା ଖତ | ୧.୪୬ | ୧.୧୭ | ୦.୬୨ | ୧୨୦ ଗ୍ରାମ | ବଲବସ ଉଦ୍ଭିଦ, ଗୁଳ୍ମ | ଗଛ ଲଗାଯିବା ବହୁ ପୂର୍ବରୁ ମାଟିରେ ମିଶାଇ ଦିଆଯିବା ଉଚିତ । |
| ୧୦. | ଜଡ଼ା ପିଡ଼ିଆ | ୪.୩୭ | ୧.୮୫ | ୧.୩୯ | ୬୦-୭୦ ଗ୍ରାମ୍ | ମାଟି କୁଣ୍ଡରେ ଲଗାଯାଇଥିବା ଫୁଲ ଗଛ । ଋତୁଜୀବୀ ପୁଷ୍ପ ଗୋଲାପ, ଡାଲିଆ ତାଳ ଜାତୀୟ ଉଦ୍ଭିଦ । | ପିଡ଼ିଆକୁ ଖତ ସହିତ ମିଶାଯାଇ ବ୍ୟବହାର କରାଯାଏ । ଗଛ ଲଗାଯିବା ପୂର୍ବରୁ ପିଡ଼ିଆ ବ୍ୟବହାର କରାଯାଏ । ଗଛ ଫୁଲ ଫୁଟିବା ଅବସ୍ଥାରେ ଥିଲେ ଏହାକୁ ବ୍ୟବହାର କରିବା ଅନୁଚିତ । |
| ୧୧ | କପା ପିଡ଼ିଆ | ୩.୯୯ | ୧.୮୯ | ୧.୬୨ | ୬୦-୭୦ ଗ୍ରାମ | | |
| ୧୨. | ନଡ଼ିଆ ପିଡ଼ିଆ | ୩.୦୨ | ୧.୯୦ | ୧.୭୭ | ୬୦-୭୦ ଗ୍ରାମ | | |
| ୧୩. | କରଞ୍ଜ | ୩.୯୭ | ୦.୯୪ | ୧.୨୭ | ୬୦-୭୦ ଗ୍ରାମ | | |
| ୧୪. | ନିମ | ୫.୨୨ | ୧.୦୮ | ୧.୪୮ | ୬୦-୭୦ ଗ୍ରାମ | | |
| ୧୫. | ଅଳସି (Niger) | ୪.୭୩ | ୧.୦୩ | ୧.୩୧ | ୬୦-୭୦ ଗ୍ରାମ | | |
| ୧୬. | ରାଶି | ୬.୨୨ | ୨.୦୯ | ୧.୨୬ | ୬୦-୭୦ ଗ୍ରାମ | | |
| ୧୭. | ମହୁଲ | ୨.୫୧ | ୦.୮୦ | ୧.୮୫ | ୬୦-୭୦ ଗ୍ରାମ | | |
| ୧୮ | ବିନାବାଦାମ | ୭.୨୯ | ୧.୫୩ | ୧.୩୩ | ୬୦-୭୦ ଗ୍ରାମ | | |

| କ୍ର.ନଂ | ନାମ | ଯବକ୍ଷାରଜାନ | ଫସ୍‌ଫୋରିକ୍ ଏସିଡ୍ | ପଟାସ | ବର୍ଗମିଟର ପିଛା ଉପଯୋଗ ପରିମାଣ | ବ୍ୟବହାର କରିବା ପାଇଁ ଉଭିଦ | ବିଶେଷ ତଥ୍ୟ |
|---|---|---|---|---|---|---|---|
| **ରାସାୟନିକ ସାର** | | | | | | | |
| ୧୯ | ଆମୋନିୟମ୍ ସଲ୍‌ଫେଟ୍ | ୨୦.୬ | | | ୩୦ ଗ୍ରାମ | ଋତୁକ ପୁଷ୍ପ, ଗୁଳ୍ମ ସବୁ ପ୍ରକାର ଉଭିଦ | ଯବକ୍ଷାରଯାନ ଥିବା ସମସ୍ତ ସାରକୁ ଗଛ ଲଗା ଯିବାର ୩ାରୁ ୪ ସପ୍ତାହ କିମ୍ବା ଫୁଲ ଫୁଟିବା ପୂର୍ବରୁ ଏହାକୁ ଦିଆଯିବା ଦରକାର । ଅଧିକ ଦେଲେ ଗଛ ଖୁବ୍ ବଢ଼େ ଓ ଫୁଲ ଆସିବାର ବିଳମ୍ବ ହୁଏ । |
| ୨୦. | ଆମୋନିୟମ କାଲସିୟମ ନାଇଟ୍ରେଟ | ୨୫.୦ | | | ୨୦ ଗ୍ରାମ | ଗୁଛ, ଲତା ସବୁ ପ୍ରକାର ଉଭିଦ | |
| ୨୧ | ୟୁରିଆ | ୪୬.୦ | | | ୧୦ ଗ୍ରାମ | ବୃକ୍ଷ ସେବତୀ ଓ ସବୁ ପ୍ରକାର ଉଭିଦ | |
| ୨୨ | ଆମୋନିୟମ୍ କ୍ଲୋରାଇଡ୍ | ୨୫.୦ | | | ୨୦ ଗ୍ରାମ | ଡାଲିଆ ପ୍ରଭୃତି ସବୁ ପ୍ରକାର ଉଭିଦ | |
| ୨୩. | ସୁପର ଫସ୍‌ଫେଟ୍ | | ୧୬.୫ | | ୯୦-୧୨୦ ଗ୍ରାମ | ମୂଳ ଜାତୀୟ ଉଭିଦ ଓ ଅନ୍ୟାନ୍ୟ ସବୁ ଉଭିଦ | ଗଛ ଲଗାଯିବା ଆଗରୁ ମାଟିରେ ମିଶାଯିବା ଆବଶ୍ୟକ । |
| ୨୪. | ରକ୍ ଫସ୍‌ଫେଟ୍ | | ୨୭-୩୫% | | ୫୦-୬୦ ଗ୍ରାମ | ଅନ୍ୟାନ୍ୟ ସବୁ ଉଭିଦ | |
| ୨୫. | ପଟାସିୟମ୍ କ୍ଲୋରାଇଡ୍ | | | ୫୮% | ୩୦ ଗ୍ରାମ | ମୂଳଜାତୀୟ ଉଭିଦ, | ଗଛ ଲଗାଯିବା ପୂର୍ବରୁ ପ୍ରୟୋଗ କରାଯିବା ଆବଶ୍ୟକ । ମଝିରେ ମଝିରେ ପ୍ରୟୋଗ କରାଯାଇପାରେ । |
| ୨୬ | ପଟାସିୟମ୍ ସଲ୍‌ଫେଟ୍ | | | ୪୮% | ୪୦ ଗ୍ରାମ | ଋତୁଜ ପୁଷ୍ପ, ବୃକ୍ଷ, ଲତା ପ୍ରଭୃତି | |

|| ଷଷ୍ଠ ପରିଚ୍ଛେଦ ||

# ଉଦ୍ୟାନରେ ବ୍ୟବହୃତ ଉପଯୋଗୀ ଉପକରଣ ଓ ଯନ୍ତ୍ରପାତି

ଶୋଭାବର୍ଦ୍ଧକ ଉଦ୍ୟାନଗୁଡ଼ିକରେ କେତେକ ସାଧାରଣ କୃଷିଯନ୍ତ୍ରପାତି ଓ ଉପକରଣ ବ୍ୟବହାର କରାଯାଏ । ଏହି ଉପକରଣଗୁଡ଼ିକ ସାଧାରଣତଃ କ୍ଷୁଦ୍ର ଏବଂ ସହଜରେ ବ୍ୟବହାର କରିହୁଏ । ପ୍ରତ୍ୟେକ ଉପକରଣ ଏକ ନିର୍ଦ୍ଦିଷ୍ଟ କାମପାଇଁ ବ୍ୟବହାର କରାଯାଏ । ଉଦ୍ୟାନର ଉପକରଣ ଏବଂ ଯନ୍ତ୍ରପାତି ଲୁହା ଏବଂ କାଠରେ ତିଆରି ଏବଂ ଏଗୁଡ଼ିକ ଘରର ଛୋଟ ଛୋଟ ପିଲାମାନଙ୍କଠାରୁ ଆରମ୍ଭ କରି ବୟସ୍କ ଲୋକମାନେ ମଧ୍ୟ ସହଜରେ ବ୍ୟବହାର କରିପାରନ୍ତି । ନିମ୍ନରେ କେତେକ ଉପକରଣର ବର୍ଣ୍ଣନା ଦିଆଗଲା ।



(ଚିତ୍ର -୨)

**ଟ୍ରେଞ୍ଚ ହୋ** (Trench hoe) ଏହା ଦେଖିବାକୁ ଏକ ଛୋଟ ଫାଉଡା ପରି । କିନ୍ତୁ ଏହାର ପଛରେ ଗୋଟିଏ ତୀକ୍ଷ୍ଣାଂଶ ଥାଏ । ଏଥିରେ ଗୋଟିଏ ଲମ୍ବା ବେଣ୍ଟ ଲାଗିଥାଏ । ମାଟିକୁ ହାଣି ତଳ ଉପର କରିବା, ପଟାଳି କରିବା ଏବଂ ଛୋଟ ଛୋଟ ଗାତ ଖୋଳିବାରେ ଏହାକୁ ବ୍ୟବହାର କରାଯାଏ । ପଛପଟେ ଥିବା ଏହାର ଗୋଜିଆ ଅଂଶରେ ବଗିଚାର ଅନାବନା ଘାସକୁ ହାଣି ବାହାର କରାଯାଏ । (ଚିତ୍ର-୨)

**ଗଇନ୍ତି** (Pickaxe)- ଏହା ଅଳ୍ପ ଓସାରର ମୋଟା ଲୁହାରେ ତିଆରି ହୋଇଥାଏ । ଗଇନ୍ତିର ଗୋଟିଏ ପାଖ ପଟାଳିଆ ଏବଂ ଅନ୍ୟ ପାଖଟି ଗୋଜିଆ । ଏଥିରେ ଗୋଟିଏ ମୋଟା ବେଣ୍ଟ ଲାଗିଥାଏ । ଶୁଖିଲା ଟାଣ ମାଟିକୁ ହାଣିବା ଏବଂ ମାଟି ଭିତରେ ବଡ଼ ବଡ଼ ପଥରକୁ ବାହାର କରିବାରେ ଏହା ସାହାଯ୍ୟ କରିଥାଏ । ଏହା ଦ୍ୱାରା ବଡ଼ ବଡ଼ ଟାଣ ମାଟି ଖଣ୍ଡକୁ ଭାଙ୍ଗି ଖଣ୍ଡ ଖଣ୍ଡ କରାଯାଏ । (ଚିତ୍ର-୩)

**କୋଡ଼ି** ଏହା ଏକ ପ୍ରଶସ୍ତ ଆକାରର ଲୁହା ଚଦରରେ ପ୍ରସ୍ତୁତ । ଏଥିରେ କାଠ ବେଣ୍ଟ ଲାଗିଥାଏ । କୋଡ଼ିର ବେଣ୍ଟ ସାଧାରଣତଃ ୧ ଫୁଟରୁ ୨ ଫୁଟ ଲମ୍ବା । ଏଥିରେ ଗୁଣ୍ଡ ମାଟିକୁ ଉଠାଇ ପଟାଳିର ହିଡ଼ ପ୍ରସ୍ତୁତି କରିବା ସୁବିଧାଜନକ ହୋଇଥାଏ । ଏହା ଦ୍ୱାରା ଅଳ୍ପ ଆର୍ଦ୍ର ଥିବା ମାଟି ତଥା ଗୋଡ଼ି ଏବଂ ବାଲିକୁ ଦୂରକୁ ସ୍ଥାନାନ୍ତରିତ କରାଯାଇପାରେ । (ଚିତ୍ର ୪)

**ହାତକୋଡ଼ି** ଏହା ଗୋଟିଏ କ୍ଷୁଦ୍ର ଉପକରଣ । ବଗିଚାରୁ ଛୋଟ ଛୋଟ ଘାସ ବାଛିବା ଏବଂ ମାଟିକୁ ହାଣି ହାଲୁକା କରିବାରେ ଏହା ବ୍ୟବହୃତ ହୋଇଥାଏ । (ଚିତ୍ର-୫)

**ବେଲଚା** (Shovel) - ଏହା ଏକ ଲମ୍ବା ବେଣ୍ଟ ଥିବା ପଟାଳିଆ ଲୁହାରେ ତିଆରି ଯନ୍ତ୍ର । ଗୋଟିଏ ସ୍ଥାନରେ ଠିଆହୋଇ ଏହା ଦ୍ୱାରା ମାଟିକୁ ଦୂରକୁ ସ୍ଥାନାନ୍ତରିତ କରିହୁଏ । ସେହିପରି ଟ୍ରଲିରେ ମାଟି ଭର୍ତ୍ତି କରିବା ତଥା ଗଛକୁ ପିଣ୍ଡ ସହ ଉଠାଇବାରେ ଏହା ସାହାଯ୍ୟ କରିଥାଏ । (ଚିତ୍ର-୬)

**ଦାନ୍ତିଆ** (Garden rake) ବଗିଚାରେ ସାଧାରଣତଃ ବିଭିନ୍ନ ଆକୃତିର ଦାନ୍ତିଆ ବ୍ୟବହାର କରାଯାଇଥାଏ । ଏଥିରେ ଦାନ୍ତ ଭଳି ତୀକ୍ଷ୍ଣ ଲୌହଖଣ୍ଡମାନ ଲାଗିଥାଏ । ଏହାର ବେଣ୍ଟ ସାଧାରଣତଃ ୫ ଫୁଟ ଦୈର୍ଘ୍ୟ ବିଶିଷ୍ଟ । ଏଥିରେ ଆଗରୁ ହଣାଯାଇଥିବା ମାଟିକୁ ସମତଳ କରାଯାଇପାରେ ଏବଂ ଏହା ଦ୍ୱାରା ଚାଷ ମାଟିକୁ ରାମ୍ପି ଘାସଗୁଡ଼ିକୁ ବାହାର କରିବାରେ ସୁବିଧା ହୋଇଥାଏ । (ଚିତ୍ର-୭)

**ଟ୍ରାଓଲ (Trowel)** ଏହାର ଆକୃତି ଗୋଟିଏ ବଡ଼ ଚାମୁଚ ପରି । ଚାରା ଏବଂ ଗଛକୁ ଛୋଟ ଅବସ୍ଥାରେ ମାଟି ସହିତ ଉଠାଇବାରେ ଏହା ସାହାଯ୍ୟ କରିଥାଏ । (ଚିତ୍ର-୮)

**ଡିବଲର (Dibbler)** ଡିବଲରର ଅଗ୍ରଭାଗ ଗୋଟିଏ ଲୁହା କୋନ୍‌ରେ ତିଆରି ମୁନିଆ ଉପକରଣ ଏବଂ ଏଥିରେ ଏକ ଫୁଟରୁ କମ୍ ଲମ୍ବାର ଏକ ବେଣ୍ଟ ଲାଗିଥାଏ । ଡିବଲର ମାଟିରେ ଚାପିଦେଇ ଛୋଟ ଛୋଟ ଗାତ କରି ସେହି ଗାତଗୁଡ଼ିକରେ ଚାରା ଲଗାଇବା ସୁବିଧାଜନକ ହୋଇଥାଏ । (ଚିତ୍ର-୯)

**ଛେଦନ ଛୁରୀ (Prunning knife)** ଏହା ଦେଖିବାକୁ ଗୋଟିଏ ବଙ୍କା ମୁହଁ ଛୁରୀ ପରି । ଗଛରୁ ଛୋଟ ଛୋଟ ଡାଳ କାଟିବା ଏବଂ ଗଛକୁ ସୁନ୍ଦର ଆକୃତି କରିବା ପାଇଁ ଏହାକୁ ବ୍ୟବହାର କରାଯାଇଥାଏ । (ଚିତ୍ର-୧୦)

**କଲମ ଛୁରୀ (Budding grafting knife)** ସାଧାରଣତଃ ଆଖିକଲମୀ ଓ ଯୋଡ଼କଲମୀ ପାଇଁ ଦୁଇ ରକମର ଛୁରୀ ଦରକାର ହୋଇଥାଏ । ଏହି ଦୁଇଟି ଅଲଗା ଅଥବା ଏକାଠି ଯୋଡ଼ିହୋଇ ବିକ୍ରି ହୁଏ । ଏହା ଅଧିକାଂଶ ସମୟ ବନ୍ଦ ହୋଇ ରହୁଥିବାରୁ ତେଲ ଦେଇ ମଝିରେ ମଝିରେ ଏହାକୁ ସଫା କରାଯିବା ଉଚିତ । (ଚିତ୍ର-୧୧ ଓ ୧୨)

**ସିକେଟର (Secateur)** - ବାଡ଼ିବଗିଚା ବିଶେଷ କରି ଶୋଭାବର୍ଦ୍ଧକ ଉଦ୍ୟାନ ପାଇଁ ଏହା ଏକ ବିଶେଷ ଦରକାରୀ ଯନ୍ତ୍ର । ଏହା ଏକ ବଡ଼ କତୁରି ପରି କାମ କରେ । ଡାଳ କାଟିବା, ଅଙ୍ଗଜ ବିସ୍ତାର ପାଇଁ ଡାଳ ସଂଗ୍ରହ କରିବା, ଗଛରୁ ଫୁଲ ଫଳ ତୋଳିବା, ଏବଂ ସାଧାରଣ କଟାକଟିରେ ଏହାକୁ ବ୍ୟବହାର କରାଯାଏ । ଏହାର ଦୁଇଫାଳ ମଝିରେ ଗୋଟିଏ ସ୍ପ୍ରିଙ୍ଗ ଲାଗିଥାଏ । ତେଣୁ ଗଛକୁ କାଟିଲାବେଳେ ଏହା ଡାଳର ଛାଲିକୁ ନ ଫଟାଇ ସୂକ୍ଷ୍ମ ଭାବରେ କାଟେ । ବିଭିନ୍ନ ଆକୃତିର ସିକେଟର ବ୍ୟବହାର କରାଯାଇଥାଏ । (ଚିତ୍ର-୧୩)

**ବାଡ଼କଟା କଇଁଚି (Gardern shear)** ଏହା ଦେଖିବାକୁ ବେଣ୍ଟ ଲାଗିଥିବା ବଡ଼ କତୁରି ପରି । ତେବେ ବିଭିନ୍ନ ପ୍ରକାରର ବାଡ଼କଟା କଇଁଚି



ବଗିଚାରେ ବ୍ୟବହାର କରାଯାଏ । ବାଡ଼କଟା କତୁରୀ ଦ୍ୱାରା ବାଡ଼ିବଗିଚାର ବାଡକୁ କଟାକଟି କରିବା ସୁବିଧାଜନକ ହୋଇଥାଏ । (ଚିତ୍ର ୧୪)

**ଛେଦନ କରତ** (Prunning saw) ବାଡ଼ିବଗିଚାର ଶୋଭାବର୍ଦ୍ଧକ ବୃକ୍ଷଗୁଡ଼ିକର ଡାଳମାନଙ୍କୁ କାଟି ସୁନ୍ଦର ଆକୃତି କରିବାରେ ଏହା ସାହାଯ୍ୟ କରିଥାଏ । ଛେଦନ କରତ ଦେଖିବାକୁ ଏକ **ଛୋଟ** କରତ ପରି । (ଚିତ୍ର-୧୫)

**ଟ୍ରି ପ୍ରୁନର** (Tree Prunner) - ବହୁତ ଉଚ୍ଚରେ ଥିବା ଡାଳ କାଟିବା ପାଇଁ ଏହା ବ୍ୟବହାର କରାଯାଏ । ଏହାକୁ ବାଉଁଶରେ ଲଗାଯାଇ ଉଚ୍ଚା କରାଯାଏ ଏବଂ ଏକ ମୋଟା ତାରରେ ତଳ ଉପର କରାଯାଏ । (ଚିତ୍ର-୧୬)

**ଲପର** (Lopper) ଏହା ଦେଖିବାକୁ ଏକ ଲମ୍ବାବେଣ୍ଟଯୁକ୍ତ ସିକେଟର ପରି । ଲପରର ବେଣ୍ଟ ଦୁଇଫୁଟରୁ ଅଧିକ ହୋଇଥିବାରୁ ହାତଠାରୁ ସାମାନ୍ୟ ଦୂରରେ ଥିବା ଗଛର ଡାଳଗୁଡ଼ିକୁ ସିକେଟର ଭଳି କାଟିବାରେ ସାହାଯ୍ୟ କରିଥାଏ ।



ଚିତ୍ର-୧୭

**ଠେଲାଗାଡ଼ି** (Wheel barrow) ଏହା ଗୋଟିଏ ଏକଚକିଆ ଗାଡ଼ି । ଏହାର ଆଗପଟେ ଥିବା ଲୁହା ରଡ଼ ଦୁଇଟିକୁ ସାମାନ୍ୟ ତଳକୁ ବସାଇଦେଇ ଖତ, ସାର, ଚାରାଗଛ, ଘାସ ପ୍ରଭୃତି ଦୂରକୁ ନବା ଆଣିବା କରାଯାଏ । ଏହାକୁ ଗୋଟିଏ ଲୋକ ସହଜରେ ଭିଡ଼ି ନେଇପାରେ ।



ଚିତ୍ର-୧୮

**ଘାସକଟା ଯନ୍ତ୍ର** (Mower) ବଡ଼ ବଡ଼ ଘାସ ଗାଲିଚା ବା ଲନକୁ କାଟିବାରେ ଏହା ବ୍ୟବହାର କରାଯାଏ । ଘାସ ଗାଲିଚା (Lawn) ଗୁଡ଼ିକ ଶୋଭାବର୍ଦ୍ଧକ ଉଦ୍ୟାନର ଏକ ପ୍ରଧାନ ଅଂଶ ହୋଇଥିବାରୁ ଏଗୁଡ଼ିକର କଟାକଟି ପ୍ରତି ବିଶେଷ ନଜର ଦିଆଯିବା ବିଧେୟ । ସେଥିପାଇଁ ବିଭିନ୍ନ ପ୍ରକାର ଘାସକଟା ଯନ୍ତ୍ର ବ୍ୟବହାର କରାଯାଇପାରେ । ଜଣେ ଲୋକ ବ୍ୟବହାର କରିପାରିବା ଭଳି ଘାସକଟା ଯନ୍ତ୍ରଗୁଡ଼ିକ ଛୋଟ ଛୋଟ ବଗିଚାରେ ଏବଂ ବଡ଼ ବଡ଼ ଲନ୍ କାଟିବା ପାଇଁ ପେଟ୍ରୋଲ ଅଥବା ବିଦ୍ୟୁତ୍‌ଚାଳିତ ଘାସକଟା ଯନ୍ତ୍ର ବ୍ୟବହାର କରାଯାଏ । ଘାସକାଟି ସାରିଲା ପରେ ଘାସକୁ ମାଟି ଉପରେ ଠିକ୍ ଭାବରେ ରଖିବା ପାଇଁ ରୋଲର ଆବଶ୍ୟକ ହୋଇଥାଏ । ଘାସ କାଟିବା ଯନ୍ତ୍ର ସହିତ ରୋଲର ମିଶିକରି ଥାଏ; କିନ୍ତୁ ଅଲଗା ରୋଲର ମଧ୍ୟ ବ୍ୟବହାର କରାଯାଇ ପାରେ । (ଚିତ୍ର-୧୮)

**ପାଣିଝରା** (Rose can) ପାଣିଝରା ବଗିଚାର ଏକ ବିଶେଷ ଦରକାରୀ ଯନ୍ତ୍ର । ଏହାର ମୁହଁରେ ଛୋଟ ଛୋଟ କଣା ଥିବାରୁ ଏହା ଦ୍ୱାରା

ପାଣି ଛିଞ୍ଚିବାରେ ସୁବିଧା ହୁଏ । ଉଚ୍ଚ ଘରାରେ ଓ କୁଣ୍ଡରେ ପାଣି ଦେବା ଓ ଧୂଳି ଲାଗିଥିବା ପତ୍ରଗୁଡ଼ିକୁ ଧୋଇବା ପାଇଁ ଏହା ଆବଶ୍ୟକ ହୋଇଥାଏ । (ଚିତ୍ର -୧୯)



(ଚିତ୍ର -୧୯)

**ନାମଫଳକ** (Name Plate) ଉଦ୍ଭିଦ ଉଦ୍ୟାନ ତଥା ସାଧାରଣ ବଗିଚାଗୁଡ଼ିକରେ ବୃକ୍ଷଲତାଗୁଡ଼ିକର ନାମ ଲେଖାଯାଇ ରଖାଯିବା ଉଚିତ । ଏହା ଦ୍ୱାରା ଗଛ ଚିହ୍ନିବା ସହଜ ହୋଇଥାଏ । ବଡ଼ ବଡ଼ ଗଛ ପାଇଁ ନାମଫଳକଗୁଡ଼ିକ ଲୁହାରେ ତିଆରି କରିବା ଉଚିତ । କିନ୍ତୁ ଛୋଟ ଛୋଟ ଗଛରେ ପତଳା ଦସ୍ତାଟିଣର ନାମଫଳକ ବ୍ୟବହାର କରାଯାଇପାରେ ।

ବର୍ଣ୍ଣିତ ଉପକରଣ ବ୍ୟତୀତ ବଗିଚାରେ କଟାକଟି ପାଇଁ ଶାବଳ, ଦାଆ, କଟୁରୀ, କୁରାଢ଼ୀ, (ଚିତ୍ର ୨୦) ଔଷଧ ପକାଇବା ପାଇଁ ଛୋଟ ସ୍ପ୍ରେୟର୍ ଏବଂ ଡଷ୍ଟର ଇତ୍ୟାଦି ବ୍ୟବହାର କରାଯାଇଥାଏ । ବଗିଚାର ଆୟତନ ଅନୁଯାୟୀ ସ୍ପ୍ରେୟର, ଡଷ୍ଟର ରଖିବା ଉଚିତ । ସେହିପରି ବଗିଚାରେ ପାଣି ଦେବା ପାଇଁ ରବରପାଇପ୍ ନିହାତି ଆବଶ୍ୟକ । ସାଧାରଣତଃ ବଗିଚାର ଗୋଟିଏ ଅଂଶରେ ପାଣି ରହୁଥିବାରୁ ସେଠାରୁ ଦୂରକୁ ପାଣି ନେବା ପାଇଁ ରବର କିମ୍ବା ପ୍ଲାଷ୍ଟିକ୍ ପାଇପ୍ ବ୍ୟବହାର କରାଯାଏ । ଘାସ ଉପରେ ପାଣି ଛିଞ୍ଚିବା ତଥା ଗଛଗୁଡ଼ିକ ଉପରୁ ମଇଳା ଧୋଇଦେବା ପାଇଁ ରବର ପାଇପ୍‌ର ମୁହଁରେ ରୋଜ



(ଚିତ୍ର -୨୧)

ଲଗାଇ ବ୍ୟବହାର କରାଯାଏ । ଅନ୍ୟାନ୍ୟ ବଗିଚା ଉପକରଣ ମଧ୍ୟରେ କୁଣ୍ଡ, ଚାରାକୁଣ୍ଡ ପ୍ରଭୃତି ଅନ୍ୟତମ । ବଗିଚାର ଉପକରଣ ଗୁଡ଼ିକର ଯତ୍ନ ନେବା ନିହାତି ଆବଶ୍ୟକ । ବ୍ୟବହାର କରି ସାରି ସେଗୁଡ଼ିକ ଭଲଭାବରେ ପାଣିରେ ଧୋଇ ରଖାଯିବା ଉଚିତ । ଯେଉଁ ଯନ୍ତ୍ରପାତିଗୁଡ଼ିକରେ ସ୍ପ୍ରିଙ୍ଗ ଭଳି ଅଂଶ ଥାଏ ସେଗୁଡ଼ିକରେ ମଝିରେ ମଝିରେ ତେଲ ଦେବା ଆବଶ୍ୟକ । ବଗିଚାର ଉପକରଣ ଗୁଡ଼ିକର ଉପଯୁକ୍ତ ଯତ୍ନ ନେଲେ ତାହାକୁ ବହୁଦିନ ଧରି ବ୍ୟବହାର କରାଯାଇପାରିବ ।



॥ ସପ୍ତମ ପରିଚ୍ଛେଦ ॥

# କୁଣ୍ଡରେ ଫୁଲ ଓ ଗଛ ଲଗାଇବା ପ୍ରଣାଳୀ

ବର୍ତ୍ତମାନ ଯୁଗରେ ସୀମିତ ପରିବେଶକୁ ସୌନ୍ଦର୍ଯ୍ୟମୟ କରିବା ନିମନ୍ତେ ଉଦ୍ଭିଦ ଓ ପୁଷ୍ପର ବ୍ୟବହାର ଦିନକୁଦିନ ବୃଦ୍ଧି ପାଉଅଛି । କୁଣ୍ଡମାନଙ୍କରେ ଶୋଭାବର୍ଦ୍ଧକ ଉଦ୍ଭିଦମାନ ଲଗାଯାଇ ଗୃହର ଅଭ୍ୟନ୍ତର ଏବଂ ବହିର୍ଦ୍ଦେଶର ଶୋଭା ବଢ଼ାଯାଉଅଛି । ସେହିପରି ସରକାରୀ ବେସରକାରୀ କୋଠାବାଡ଼ିକୁ ସୁନ୍ଦର କରିବା ପାଇଁ ଫୁଲଗଛ ଲାଗିଥିବା କୁଣ୍ଡମାନ ରଖାଯାଏ । ବିଭିନ୍ନ ଉତ୍ସବ ତଥା ସଭାସମିତି ପ୍ରଭୃତି ଅନୁଷ୍ଠାନରେ ସାମୟିକ ଶୋଭା ବୃଦ୍ଧି ପାଇଁ କୁଣ୍ଡରେ ଲାଗିଥିବା ଉଦ୍ଭିଦଗୁଡ଼ିକର ବ୍ୟବହାର କରାଯାଇଥାଏ । କୁଣ୍ଡରେ ଗଛ ଲଗାଇବା ଏକ ପ୍ରାଚୀନତମ ପଦ୍ଧତି । କଥିତ ଅଛି ବାବିଲୋନର ଦୋଳାୟମାନ ଉଦ୍ୟାନରେ ଫୁଲ କୁଣ୍ଡର ବହୁଳ ପ୍ରଚଳନ ଥିଲା । କୁଣ୍ଡରେ ଲାଗିଥିବା ଫଳଗଛ ସହଜ ଉପାୟରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା ଆଣିବା କରିହୁଏ । ଏହା ଫଳରେ କିଛି ସମୟ ପାଇଁ ସୌନ୍ଦର୍ଯ୍ୟ ବୃଦ୍ଧିରେ ସାହାଯ୍ୟ କରିଥାଏ ।

ଉଦ୍ୟାନବିତ୍‌ମାନଙ୍କ ମତରେ କୁଣ୍ଡରେ ଫୁଲ ଓ ଉଦ୍ଭିଦ ଚାଷର ଏକ ବିଶେଷ ଗୁରୁତ୍ୱ ରହିଛି । କାରଣ ଅନେକ ଉଦ୍ଭିଦ ଉଦ୍ୟାନର ଉନ୍ମୁକ୍ତ ପ୍ରାଙ୍ଗଣରେ



(ଚିତ୍ର - ୨୨)

ସୂର୍ଯ୍ୟାଲୋକର ପ୍ରାଚୁର୍ଯ୍ୟ ଯୋଗୁଁ ବଢ଼ିପାରନ୍ତି ନାହିଁ । ତେଣୁ ସେଗୁଡ଼ିକ କୁଣ୍ଡରେ ରୋପଣକରି ଲକ୍ଷତ ସୂର୍ଯ୍ୟାଲୋକ ପାଉଥିବା ସ୍ଥାନରେ ରଖାଯାଇଥାଏ । ସେହିପରି ଖୁବ୍ କମ୍ ପାଣି ମିଳୁଥିବା ଅଞ୍ଚଳରେ କୁଣ୍ଡଗୁଡ଼ିକରେ ଗଛଗୁଡ଼ିକ ଲଗାଇଲେ ଅଳ୍ପ ପାଣି ଦେବାକୁ ହୋଇଥାଏ । ଆଜିକାଲି ସହର ବଜାର ଅଞ୍ଚଳରେ ବହୁତଳ ପ୍ରାସାଦର ସୌନ୍ଦର୍ଯ୍ୟବୃଦ୍ଧି ପାଇଁ କୁଣ୍ଡରେ ପୁଷ୍ପ ଓ ଗଛ ଲଗାଇବା ଏକମାତ୍ର ପନ୍ଥା କହିଲେ ଅତ୍ୟୁକ୍ତି ହେବ ନାହିଁ ।

କୁଣ୍ଡରେ ଉଦ୍ଭିଦ ଚାଷ କରି ସୌନ୍ଦର୍ଯ୍ୟ ବଢ଼ାଇବାକୁ ଗଲାବେଳେ ଆମକୁ କୁଣ୍ଡର ଆକୃତି ଉପରେ ଦୃଷ୍ଟି ଦେବାକୁ ପଡ଼ିଥାଏ । କୁଣ୍ଡ ନିର୍ମାଣର କଳାକୃତି, କୁଣ୍ଡରେ ଲଗାଇବା ଉଦ୍ଭିଦର ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ନିଶ୍ଚିତ ଭାବରେ ସାହାଯ୍ୟ କରେ । ମାନବ ସଭ୍ୟତାର ବିଭିନ୍ନ ପୁରାତନ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଆଲୋଚନା କଲେ କେଉଁ ସଭ୍ୟତାରେ କେଉଁ ପ୍ରକାର କୁଣ୍ଡ ବ୍ୟବହାର କରାଯାଉଥିଲା ତା'ର ପ୍ରମାଣ ମିଳେ । ଗଛ ଲଗାଇବା ପୂର୍ବରୁ ଉପଯୁକ୍ତ ଆକୃତିର କୁଣ୍ଡ ସଂଗ୍ରହ କରିବା ଏକ କଳାପ୍ରବଣ ମନୋଭାବର ପରିଚୟ ଦେଇଥାଏ ।



ଚିତ୍ର - ୨୩

କୁଣ୍ଡଗୁଡ଼ିକ ସାଧାରଣତଃ ମାଟିରେ ତିଆରି ହୋଇଥାଏ । ମାଟିରେ ତିଆରି ହୋଇଥିବା କୁଣ୍ଡଗୁଡ଼ିକ ବିଭିନ୍ନ ଆକୃତିର ଏବଂ ଆୟତନର ହେବା ସହଜ ହୁଏ । ସବୁ ପ୍ରକାର ମାଟିରେ ଭଲ କୁଣ୍ଡ ତିଆରି ହୋଇପାରେ ନାହିଁ । ନଦୀ କୂଳର କାଦୁଆ ବାଲିମିଶା ମାଟି କୁଣ୍ଡତିଆରି ପାଇଁ ଉପଯୁକ୍ତ ଅଟେ । ତେଣୁ ଭଲମାଟିରେ ତିଆରି ହୋଇଥିବା କୁଣ୍ଡଗୁଡ଼ିକ ସଂଗ୍ରହ କଲେ ବହୁଦିନ ପର୍ଯ୍ୟନ୍ତ ବ୍ୟବହାର କରିହୁଏ । ମାଟି କୁଣ୍ଡଗୁଡ଼ିକ ପୋଡ଼ି ନ ଥିଲେ ପାଣିରେ ଶୀଘ୍ର ମିଳାଇ ଯାଏ । ଭଲ ଭାବରେ ପୋଡ଼ା ଯାଇଥିବା କୁଣ୍ଡଗୁଡ଼ିକୁ ଠଣି ମାରିଲେ ସେଗୁଡ଼ିକରୁ ଧାତୁପାତ୍ରର ଶବ୍ଦ ବାହାରିଥାଏ । ଏହି ପ୍ରକାର କୁଣ୍ଡକୁ ବହୁଦିନ ପର୍ଯ୍ୟନ୍ତ ବ୍ୟବହାର କରିହୁଏ । ମାଟି କୁଣ୍ଡ ବ୍ୟତୀତ ସିମେଣ୍ଟରେ ବିଭିନ୍ନ ଆକୃତିର କୁଣ୍ଡ ନିର୍ମାଣ କରାଯାଇପାରେ । ସିମେଣ୍ଟ କୁଣ୍ଡଗୁଡ଼ିକ ମାଟିଠାରୁ ଦୀର୍ଘସ୍ଥାୟୀ ହେଲେବି କେତେକ ଦୃଷ୍ଟିରୁ ଉଦ୍ଭିଦ ଚାଷ ପାଇଁ ଅନୁପଯୁକ୍ତ । ସିମେଣ୍ଟ କୁଣ୍ଡଗୁଡ଼ିକ ମାଟିକୁଣ୍ଡ ଅପେକ୍ଷା ଶୀଘ୍ର ଉତ୍ତାପ ଗ୍ରହଣ କରିପାରନ୍ତି । ଯଦି ନିୟମିତ ଜଳସେଚନ ନ କରାଯାଏ ଅଧିକ ଉତ୍ତାପ ଗଛର ଚେର ଉପରେ କ୍ଷତିକାରକ ପ୍ରଭାବ ପକାଇଥାଏ । ଅନ୍ୟଦୃଷ୍ଟିରୁ ସିମେଣ୍ଟ କୁଣ୍ଡଗୁଡ଼ିକ ଅପେକ୍ଷାକୃତ ଅଧିକ ଓଜନ ହୋଇଥିବାରୁ ଏଗୁଡ଼ିକୁ ମାଟିକୁଣ୍ଡ ଭଳି ଏକ ସ୍ଥାନରୁ ଅନ୍ୟସ୍ଥାନକୁ ନେବା ଆଣିବା ସହଜ ହୁଏ ନାହିଁ । ଆଧୁନିକ ଯୁଗରେ ପ୍ଲାଷ୍ଟିକ୍ ଏବଂ ଚିନାମାଟିର ବିଭିନ୍ନ ଆକୃତିର କୁଣ୍ଡ ମିଳିଛି । ଏଗୁଡ଼ିକର ମସୃଣତା ଓ ରଙ୍ଗୀନ କଳେବର ଅଭ୍ୟନ୍ତରଣ ସାଜସଜ୍ଜାରେ ବିଶେଷ ଭାବରେ ସାହାଯ୍ୟ କରିଥାଏ । ସେହିପରି କାଠ ଏବଂ ଟିଣରେ ରଙ୍ଗ ଦେଇ କୁଣ୍ଡ ତିଆରି କରିହୁଏ । ଟିଣ କୁଣ୍ଡରେ ଶୀଘ୍ର କଳଙ୍କି ଲାଗିଯିବାର ସମ୍ଭାବନା ଥିବାରୁ ବ୍ୟବହାର ପୂର୍ବରୁ ଏହାର ଚତୁଃପାର୍ଶ୍ୱରେ ଏକ ମୋଟା ରଙ୍ଗର ପ୍ରଲେପ ଦେବା ଉଚିତ । ଅର୍କିଡ଼ ଭଳି କେତେକ ବିଶେଷ ଗଛର ଚାଷ ପାଇଁ ଫର୍ଣ୍ଣ ଗଛର ଗଣ୍ଡିରେ କୁଣ୍ଡମାନ ପ୍ରସ୍ତୁତ କରାଯାଇଥାଏ । କାରଣ ଅର୍କିଡ଼ମାନଙ୍କର ବାୟବୀୟ ଚେରଗୁଡ଼ିକ ପାଇଁ ଉତ୍ତମ ବାୟୁ ସଂଚାଳନ ଆବଶ୍ୟକ । ତେବେ ମାଟି କୁଣ୍ଡରେ ଅର୍କିଡ଼ ଲଗାଇବାକୁ ହେଲେ କୁଣ୍ଡ ତିଆରି ସମୟରେ କୁଣ୍ଡ ଚାରିପଟେ ଛୋଟ ଛୋଟ କଣା କରିବାକୁ ପଡ଼େ । ଆଜିକାଲି ପିତଳ, କଂସା, ତମ୍ବାରେ କୁଣ୍ଡ ତିଆରି କରାଯାଉଛି ।

କୁଣ୍ଡର ଆକୃତି ସାଧାରଣତଃ ତଳ ଆଡ଼କୁ କ୍ରମଶଃ ସରୁ ହୋଇଥାଏ । ଏହା କୁଣ୍ଡରୁ ଜଳ ନିଷ୍କାସନ ପାଇଁ ସାହାଯ୍ୟ କରିଥାଏ । ଅନ୍ୟ ଦୃଷ୍ଟିକୋଣରୁ ବିଚାର କଲେ କୁଣ୍ଡର ଉପରିଭାଗରେ ଅଧିକ ପରିମାଣର ମାଟି ରହିପାରୁଥିବାରୁ ଚେରଗୁଡ଼ିକ ଭଲଭାବରେ ଶାଖା ପ୍ରଶାଖା ମେଲି ବଢ଼ିପାରନ୍ତି ଏବଂ ମାଟିରେ ଉତ୍ତମ ବାୟୁ ସଂଚାଳନ ହୋଇଥାଏ । କୁଣ୍ଡର ଏହି ପିରାମିଡ଼ ଆକୃତି ଯୋଗୁ ଗଛ ବଦଳାଇବା ବେଳେ କୁଣ୍ଡରୁ ମାଟି ବାହାର କରିବା ସହଜ ହୁଏ । କୁଣ୍ଡରୁ ଜଳ ନିଷ୍କାସନ ନ ହେଲେ ମାଟିର ଅମ୍ଳତା ବଢ଼ିଯାଏ । ଉପଯୁକ୍ତ ବାୟୁ ସଞ୍ଚାଳନ ନ ହେଲେ ପତ୍ରସବୁ ହଳଦିଆ ପଡ଼ି ଝଡ଼ିଯାନ୍ତି । ଶେଷରେ ଚେର ପଚିଯାଏ ଏବଂ ଗଛଟି ଅକାଳ ମୃତ୍ୟୁ ବରଣ କରେ । ଯେଉଁ କୁଣ୍ଡଗୁଡ଼ିକ ସର୍ବଦା ସନ୍ତସନ୍ତିଆ ରହେ ଏବଂ ଯାହାର ମାଟିର ଉପରିଭାଗରେ ଶିଉଳି ବୃଦ୍ଧି ପାଉଥାଏ ସେଗୁଡ଼ିକରୁ ଉପଯୁକ୍ତ ଜଳ ନିଷ୍କାସନ ହେଉନାହିଁ ବୋଲି ଧରିବାକୁ ହେବ । ପ୍ରତ୍ୟେକ କୁଣ୍ଡର ନିମ୍ନଭାଗର ମଧ୍ୟରେ ଏକ କ୍ଷୁଦ୍ର ଛିଦ୍ର ଥାଏ । ସିମେଣ୍ଟ ଓ ଚିନାମାଟି କୁଣ୍ଡରେ ଏହା ମଝିରେ ନ ରହି ଏକ ପାର୍ଶ୍ୱରେ ଅନେକ ସମୟରେ ରହିଥାଏ । କୁଣ୍ଡରୁ ଉପଯୁକ୍ତ ଜଳ ନିଷ୍କାସନ ପାଇଁ ପ୍ରଥମେ କିଛି ଖପରା ସଂଗ୍ରହ କରି ଛିଦ୍ରର ଉପରିଭାଗରେ ଉପରଟପୁ ଅର୍ଦ୍ଧଗୋଲାକାର ଭାବରେ ରଖିବାକୁ ହେବ । ବ୍ୟବହୃତ ଖପରା ଉଚ୍ଚତାରେ କୁଣ୍ଡରେ କିଛି ଗୋଡ଼ି ଦେବାକୁ ପଡ଼େ । ଏହା ପରେ କିଛି ସଫା ବାଲି ଗୋଡ଼ି ଖପରାକୁ ଘୋଡ଼ାଇଲା ଭଳି ଢାଳି ଦିଆଯାଏ । ବାଲି ଉପରେ ଗଛ ଲଗାଇବା ପାଇଁ



ଚିତ୍ର-୨୫



ଚିତ୍ର-୨୬



ଚିତ୍ର-୨୭

ଆଗରୁ ତିଆରି ମିଶ୍ରିତ ମାଟି (Pot mixture) କୁ କଣ୍ଡର ମୁହଁଯାଏ ଭରି ଦିଆଯାଏ । ମାଟିକୁ ହାଲକା ଭାବରେ ଭର୍ତ୍ତି କରାଯିବା ଉଚିତ । ଯେପରିକି ମାଟି କୁଣ୍ଡରେ ବସିଯିବା ପରେ ଫନ୍ଦରୁ ୨ ସେ.ମି. ନିମ୍ନରେ ମାଟି ସ୍ଥିର ରହେ । ତେଣୁ କୁଣ୍ଡରେ ପାଣି ଦେବାପାଇଁ ସୁବିଧା ହୁଏ । କୁଣ୍ଡ ଲାଗି ମିଶ୍ରିତ ମାଟି ପ୍ରସ୍ତୁତ କରି ପ୍ରତି ବର୍ଷ କୁଣ୍ଡରେ ପୂର୍ଣ୍ଣ କରିବା ଦରକାର । ସେଥିରେ ଖାଦ୍ୟ ଉପାଦାନଗୁଡ଼ିକ ଠିକ୍ ଅନୁପାତରେ ନ ରହିଲେ ଗଛ ଭଲ ବଢ଼େ ନାହିଁ । ମାଟିଭରା କୁଣ୍ଡର ଠିକ୍ ମଧ୍ୟଭାଗରୁ କିଛି ମୃତ୍ତିକା ବାହାର କରିଦେଇ ଗଛ ଲଗାଇବା ଉଚିତ ଏବଂ ବାହାର କରାଯାଇଥିବା ମାଟିକୁ ତା ମୂଳରେ ଦେଇ ଗଛ ମୂଳକୁ ଭଲ ଭାବରେ ଚାପି ଦିଆଯାଏ । ଗଛ ଲଗା ସରିବା ପରେ ଝରାରେ ପାଣି ଦେବା ଉଚିତ । ଗଛ ଭଲ ବଢ଼ିବା ପାଇଁ ବେଳେ ବେଳେ କୁଣ୍ଡର ଉପରିଭାଗରେ କିଛି ଗୁଣ୍ଡ ଖତ ପ୍ରୟୋଗ କରାଯାଇପାରେ ।



ଚିତ୍ର ୨୪

ଗଛ ଲଗାଇବାର ବର୍ଷେ ଦୁଇବର୍ଷ ପରେ କୁଣ୍ଡ ବଦଳ କରାଯିବା ଉଚିତ । କାରଣ ଗଛ ବଢ଼ିଯିବା ପରେ ତାହା ଛୋଟ କୁଣ୍ଡରୁ ଆବଶ୍ୟକ ଲବଣ ଗ୍ରହଣ କରିପାରେ ନାହିଁ । ଏହା ବ୍ୟତୀତ ଚେରଗୁଡ଼ିକ କୁଣ୍ଡ ଦ୍ୱାରା ଏକାଠି ବାନ୍ଧି ହୋଇ ରହିଯିବାରୁ ଏବଂ କିଛି ଚେର କୁଣ୍ଡ ନିମ୍ନରେ ଥିବା ଛିଦ୍ର ଦେଇ ବାହାରକୁ ବାହାରିଯିବା ଯୋଗୁଁ କୁଣ୍ଡରୁ ଜଳ ନିଷ୍କାସନ ହୋଇପାରେ ନାହିଁ । ସମୟେ ସମୟେ ପୁରୁଣା କୁଣ୍ଡଗୁଡ଼ିକରେ ବାୟୁ ସଞ୍ଚାଳନ ମଧ୍ୟ ବାଧ

ହୁଏ । ଏହିପରି ଅବସ୍ଥାରେ କୁଣ୍ଡ ବଦଳାଇବା ନିହାତି ଆବଶ୍ୟକ । କୁଣ୍ଡ ବଦଳାଇବା ପୂର୍ବରୁ କୁଣ୍ଡରେ ଟିକିଏ ପାଣି ଦେଇ ଦିନେ ପରେ କୁଣ୍ଡର ମୁହଁକୁ ତଳକୁ କରି ଧୀରେ ଧୀରେ ଥାପୁଡ଼ାଇଲେ କୁଣ୍ଡରୁ ଗଛ ଚେର ଓ ମାଟି ସହିତ ବାହରି ଆସେ । ଏହାପରେ ପୁରୁଣା ଚେରରୁ କିଛି ଅଂଶ କାଟି ଦେବା ଉଚିତ । ଚେର ଏବଂ ମାଟି ଯଦି ନିହାତି ଟାଣି ହୋଇ ପରସ୍ପର ଲାଗି ରହିଥାନ୍ତି, ତେବେ ତାହାକୁ ପାଣି ସିଞ୍ଚି ହାଲୁକା କରି ଦେଇ ପୁରୁଣା ମାଟିରୁ କିଛି ଅଂଶ ଅଲଗା କରିଦେବା ଦରକାର । ଏହାପରେ ଆବଶ୍ୟକ ବଡ଼ କୁଣ୍ଡରେ ପୂର୍ବ ପରି ଜଳ ନିଷ୍କାସନ ପାଇଁ ଖପରା ଗୋଡ଼ି ଏବଂ ବାଲି ଦେଇ ତା ଉପରେ ମାଟିର ମିଶ୍ରଣ ରଖି ପୁଣି ଗଛକୁ କୁଣ୍ଡରେ ଲଗାଯାଏ । ବାରମ୍ବାର କୁଣ୍ଡ ବଦଳାଇବା ଗଛ ପକ୍ଷରେ କ୍ଷତିକାରକ ଅଟେ । ତେଣୁ କେଉଁ ଗଛ କିପରି ବଢ଼ିବ ତାହା ଚିନ୍ତା କରି ପ୍ରଥମରୁ ଉପଯୁକ୍ତ ସାଇଜର କୁଣ୍ଡ ଠିକ୍ କରିବା ଉଚିତ । କୁଣ୍ଡରେ ଗଛ ଲଗାଇବା ପୂର୍ବରୁ କେତେକ ସାଧାରଣ ନିୟମ ପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ଯଥା– ସଫା କୁଣ୍ଡ ଏବଂ ଖପରା ବ୍ୟବହାର କରିବା ଉଚିତ । ଫିମ୍ପି ଲାଗିଯାଇଥିବା ପୁରୁଣା କୁଣ୍ଡଗୁଡ଼ିକୁ ବିଶୋଧନ କରିବା ଆବଶ୍ୟକ । ନୂଆ କୁଣ୍ଡ ବ୍ୟବହାର କରିବା ଆଗରୁ ଏହାକୁ ପାଣିରେ ଭଲ ଭାବରେ ବୁଡାଇ ରଖାଯିବା ଉଚିତ । ନଚେତ୍ ନୂଆ କୁଣ୍ଡ ପାଣି ଟାଣି ନେବା ଫଳରେ ଗଛ ଝାଉଁଳି ଯିବାର ଭୟ ରହିଥାଏ । କୁଣ୍ଡରେ ଅଳ୍ପ ମାଟିରେ ଗଛ ବଢୁଥିବା ଦୃଷ୍ଟିରୁ ମାଟିର ମିଶ୍ରଣ ଉପରେ ବିଶେଷ ଗୁରୁତ୍ୱ ଦିଆଯିବା ଉଚିତ । କୁଣ୍ଡ ମାଟି ତିଆରି ପାଇଁ ସାଧାରଣତଃ ମାଟି, ବାଲି; ଖତ, ପତ୍ରଖତ, ସ୍ଫାଗନମ୍ ଶିଉଳି, ଗୋଡ଼ି, ଭଙ୍ଗା ଇଟା, କୋଇଲାଗୁଣ୍ଡ, ହାଡ଼ଗୁଣ୍ଡ, ପିଟମାଟି, ଭର୍ମିକୁଲାଇଟ୍ ପ୍ରଭୃତି ଜିନିଷ ଦରକାର ହୋଇଥାଏ । ବିଭିନ୍ନ ପ୍ରକାର ଉଦ୍ଭିଦ ପାଇଁ ଉପଯୁକ୍ତ ମାଟି ମିଶ୍ରଣର ଅନୁପାତ ଟେବୁଲରେ ଦିଆଗଲା ।

ବଗିଚାର ଲାଲମାଟି ମିଶ୍ରଣ ପ୍ରସ୍ତୁତ ପାଇଁ ଉପଯୁକ୍ତ ଅଟେ । ମିଶ୍ରଣ ତିଆରି ସମୟରେ ଶୁଖିଲାମାଟି ବ୍ୟବହାର ନ କରି ସମ୍ୟକ୍ ଆର୍ଦ୍ର ଥିବା ମାଟି ବ୍ୟବହାର କରିବା ଉଚିତ । ମିଶ୍ରଣ ପାଇଁ ମାଟି ବ୍ୟତୀତ ଅନ୍ୟାନ୍ୟ ବସ୍ତୁଗୁଡ଼ିକ

ଯଥା ବାଲି, ଖତ, ପତ୍ରଖତ, ସ୍ଫାଗନ୍ମ ଶିଉଳି, ଗୋଡ଼ି, ଭଙ୍ଗାଇଟା ପ୍ରଭୃତି ଆଗରୁ ସଂଗ୍ରହ କରି କିଛି ସମୟ ଖରାରେ ଶୁଖାଇ ବ୍ୟବହାର କରିବା ପ୍ରୟୋଜନ । ଏହି ପଦାର୍ଥଗୁଡ଼ିକୁ ବିଶୋଧନ କରିଦେଲେ ଭଲ ଫଳ ମିଳିଥାଏ ।

କୁଣ୍ଡରେ ଲଗାଯାଇଥିବା ଉଦ୍ଭିଦଗୁଡ଼ିକ ସାଧାରଣତଃ ଈଷତ୍ ଆଲୋକିତ ସ୍ଥାନରେ ରଖାଯାଏ । କେଉଁ ଉଦ୍ଭିଦ କେତେ ପରିମାଣର ଅଲୋକ ଦରକାର କରେ ତାହା ଜାଣି କୁଣ୍ଡ ଗୁଡ଼ିକୁ ଉପଯୁକ୍ତ ସ୍ଥାନରେ ରଖିବା ଉଚିତ । ବେଶୀ ସୂର୍ଯ୍ୟାଲୋକ ପାଉଥିବା ସ୍ଥାନରେ ଆମରିଲିଶ, ବଗନଭିଲା, କାଲାଡ଼ିଅମ୍, କ୍ରୋଟନ୍, ଆରାଲିଆ, ମନ୍ଦାର, ଅର୍କିଡ୍, ସୁନୁସୁନିଆ, ରକ୍ତଚିତା ପ୍ରଭୃତି ରଖାଯିବା ଦରକାର । ଖୁବ୍ କମ୍ ସୂର୍ଯ୍ୟାଲୋକ ପାଉଥିବା ସ୍ଥାନରେ ବିଭିନ୍ନ ପ୍ରକାର ସାରୁ, ଆଫ୍ରିକାନ ଭାଇୟୋଲେଟ୍, ଗ୍ଲକ୍ସିନିଆ, ଜିରାନିୟମ୍, ଷ୍ଟେରଲିଟ୍‌ଜିଆ, ଶୋଭାବର୍ଦ୍ଧକ କମଳା, କ୍ରୋସାଣ୍ଡ୍ରା, ବିଭିନ୍ନ ପ୍ରକାର ତାଳ ଉଦ୍ଭିଦ, ସୁଗନ୍ଧରାଜ, ପୋଥସ୍, କିଆ, ସେନ୍‌ସିଭାରିଆ ପ୍ରଭୃତି ରଖାଯାଇପାରିବ । ମଧ୍ୟମ ଭାବେ ଆଲୋକିତ ହେଉଥିବା ସ୍ଥାନରେ ମାରଣ୍ଟା, କାଲଥିଆ, ବିଗୋନିଆ, ପିର୍ଟାଡ଼ିଆ, ଗଜକର୍ଣ୍ଣ, ପିପେରମିଆ ପ୍ରଭୃତି ରଖାଯିବା ଉଚିତ ।

କୁଣ୍ଡରେ ଲଗାଯାଇଥିବା ଉଦ୍ଭିଦଗୁଡ଼ିକୁ ଅନୁଧାନ କରି ଉପଯୁକ୍ତ ପରିମାଣରେ ଜଳ ଦେବା ଆବଶ୍ୟକ । ବାରଣ୍ଡାରେ ରଖାଯାଉଥିବା କୁଣ୍ଡଗୁଡ଼ିକରୁ ପାଣି ସାଧାରଣତଃ ଡେରିରେ ଶୁଖିଥିବାରୁ ଏଗୁଡ଼ିକର ପାଣି ଦେବାର ବ୍ୟବଧାନ ସମୟ ବଢ଼ାଇବା ଉଚିତ । ଗଛ ଗୁଡ଼ିକ ବାରଣ୍ଡାରେ ରହୁଥିବା ସମୟରେ ଧୂଳି, ମଳି ଏବଂ ଅନ୍ୟାନ୍ୟ ଆବର୍ଜନା ପତ୍ରଗୁଡ଼ିକ ଉପରେ ଲାଗିଥାଏ । ମଝିରେ ମଝିରେ ଝରାରେ ପାଣିଦେଇ ପତ୍ର ଉପରୁ ଏଗୁଡ଼ିକ ଧୋଇଦେବା ଆବଶ୍ୟକ । ଅନେକ ସମୟରେ ଗଛଗୁଡ଼ିକ ଠିକ୍ ଉତ୍ତାପ ଯୋଗାଇବା ପାଇଁ କୃତ୍ରିମ ଉପାୟରେ ଆଲୋକ ଯୋଗାଯାଇଥାଏ । ଘରର ବାରଣ୍ଡା ଓ ଭିତରେ ରଖାଯାଇଥିବା କୁଣ୍ଡଗୁଡ଼ିକ ସାଧାରଣତଃ ୬୫° ରୁ ୭୫° ଫାରେନହାଇଟ୍‌ରେ ରହିବା ଉଚିତ । ଟିଉବଲାଇଟ୍ ଲଗାଇଲେ ଗଛଗୁଡ଼ିକ ଭଲ ଭାବରେ ବଢ଼ିଥାନ୍ତି । ଗଛରେ ଲାଗିଥିବା ଶୁଖିଲା ପତ୍ର ତଥା ଅବାଞ୍ଛିତ

## ବିଭିନ୍ନ ପ୍ରକାର ଉଭିଦ ଓ ଫୁଲଗଛ ଲଗାଇବା ପାଇଁ ମାଟି ମିଶ୍ରଣ ତାଲିକା (ଅନୁପାତ ବା Parts)

| ଗଛର ନାମ (୧) | ମାଟି (୨) | ଖତ (୩) | ବାଲି (୪) | ପତ୍ରଖତ (୫) | ଚୂନଗୁଣ୍ଡ (୬) | କୋଇଲା ଗୁଣ୍ଡ (୭) | ପଟୁମାଟି (୮) | ନାଲିମାଟି (୯) | ଇଟାଗୁଣ୍ଡ (୧୦) | ପିଟ୍‌ମସ୍ (୧୧) | ମନ୍ତବ୍ୟ (୧୨) |
|---|---|---|---|---|---|---|---|---|---|---|---|
| ଋତୁଜ ପୁଷ୍ପ | ୧ | ୩ | ୧ ୧/୨ | | | | | | | | |
| ଛୋଟ ଛୋଟ କୋମଳ କାଣ୍ଡିନ ଗଛ (ଆଲୋ, କ୍ରାସୁଲା, ବ୍ରାୟୋଫାଇଲମ, ଝୁନୁସୁନିଆ, ଆଇକୁଡ଼ି ପ୍ରଭୃତି) | ୪ | ୬ | ୩ | ୨ | | | | | | | |
| ମୂଳଜ ଉଭିଦ | ୨ | ୧ | ୧ | ୧ | | ୧/୪ | | | | | |
| ଗୋଲାପ | ୧ | ୨ | ୧ | | | | | | | | |
| କ୍ରୋଟନ୍ | ୪ | ୪ | ୩ | ୨ | ୧ | | | | | | |
| ତାଳଜାତୀୟ ଗଛ | ୩ | ୨ | ୩ | ୪ | | | ୨ | | | | |

## ବିଭିନ୍ନ ପ୍ରକାର ଉଦ୍ଭିଦ ଓ ଫୁଲଗଛ ଲଗାଇବା ପାଇଁ ମାଟି ମିଶ୍ରଣ ତାଲିକା (ଅନୁପାତ ବା Parts)

| ଗଛର ନାମ (୧) | ମାଟି (୨) | ଖତ (୩) | ବାଲି (୪) | ପତ୍ରଖତ (୫) | ଚୂନଗୁଣ୍ଡ (୬) | କୋଇଲା ଗୁଣ୍ଡ (୭) | ପଟୁମାଟି (୮) | ନାଳିମାଟି (୯) | ଇଟାଗୁଣ୍ଡ (୧୦) | ପିଟମୋସ (୧୧) | ମନ୍ତବ୍ୟ (୧୨) |
|---|---|---|---|---|---|---|---|---|---|---|---|
| ଫର୍ଣ୍ଣ | | ୨ | ୩ | ୪ | ୧ | ୧/୨ | ୨ | | ୧ | | |
| ବିଗୋନିଆ<br>କାଲାଡିଅମ୍, ଡାଇଫେନ<br>ଡାକିଆ, ଡ୍ରାସେନା<br>ପ୍ରଭୃତି ଉଦ୍ଭିଦ | ୪ | ୪ | ୩ | ୪ | ୧ | ୧ | | | | | |
| | ୩ | ୨ | | ୪ | ୧ | ୧/୨ | | | ୧/୪ | | |
| ଅର୍କିଡ | | | | ୧ | | ୧ | | | ୨ | ୪ | ଝାଲୁକା ପୋଖରୀ ବାଲୁକା ବା ଲଟି-ଫାଳ |
| ଶୋଭା ବର୍ଦ୍ଧକ ଗୁଳ୍ମ ଓ ଲତା | ୪ | ୪ | ୪ | ୨ | | | | | | | |
| ଚାରା ଲଗାଇବା ପାଇଁ | | | ୧ ୧/୨ | ୩ | | ୧/୨ | | ୧ ୧/୨ | | | ଭିଜା ମାଟି |

ଚୋଳଗୁଡ଼ିକୁ ମଝିରେ ମଝିରେ ବାହାର କରିଦେବା ଦରକାର । କୁଣ୍ଡଗୁଡ଼ିକରେ ଆବଶ୍ୟକ ପରିମାଣର ସାର ମଝିରେ ମଝିରେ ପ୍ରୟୋଗ କରିବା ନିହାତି ପ୍ରୟୋଜନ ଅଟେ । ଗଛଗୁଡ଼ିକ ବଢୁଥିବା ସମୟରେ ସାର ଦେଲେ ଗଛଗୁଡ଼ିକ ଉତ୍ତମଭାବେ ବଢ଼ି ସୌନ୍ଦର୍ଯ୍ୟ ବୃଦ୍ଧି କରିଥାନ୍ତି । କିନ୍ତୁ ଗଛଗୁଡ଼ିକ ଦୁର୍ବଳ କିମ୍ବା ରୋଗଗ୍ରସ୍ତ ଥିବାବେଳେ ସାର ଦେବା ଉଚିତ ନୁହେଁ । ସମୟେ ସମୟେ କୁଣ୍ଡଗୁଡ଼ିକରେ ଲଗାଯାଇଥିବା ଗଛଗୁଡ଼ିକୁ ବିଭିନ୍ନ ପ୍ରକାରର ପୋକ ଓ ରୋଗ ଆକ୍ରମଣ କରିଥାନ୍ତି । ସେଗୁଡ଼ିକର ଦୂରୀକରଣ ପାଇଁ ଉପଯୁକ୍ତ ବ୍ୟବସ୍ଥା କରିବା ଉଚିତ ।



॥ ଅଷ୍ଟମ ପରିଛେଦ ॥

# ରୋଗ ଓ ପୋକ

ବାଡ଼ି ବଗିଚାର ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକରେ ରୋଗ ଓ ପୋକ ଲାଗିଲେ ସୌନ୍ଦର୍ଯ୍ୟ ବିତରଣ କରିବା ପରିବର୍ତ୍ତେ କୁତ୍ସିତ ଓ କଦାକାର ରୂପ ଧାରଣ କରିଥାନ୍ତି । ରୋଗ ଓ ପୋକ ବ୍ୟତୀତ ସାମୟିକ ବିଭିନ୍ନ ପ୍ରକାର ସାର ଏବଂ ଅଣୁସାରର ଅଭାବରେ ଉଦ୍ଭିଦମାନଙ୍କରେ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଥାଏ । ଏହି ସବୁ ଅସୁବିଧାରୁ ରକ୍ଷା ପାଇବାକୁ ହେଲେ ପ୍ରତିରୋଧକ ବ୍ୟବସ୍ଥା ଗ୍ରହଣ କରାଯିବା ଉଚିତ । ରୋଗ ଆରମ୍ଭ ହେବା କ୍ଷଣି କିମ୍ବା ଆରମ୍ଭ ହେବା ପରେ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କଲେ ଗଛଗୁଡ଼ିକ ବିରୂପ ହେବାର ସମ୍ଭାବନା ଅଛି । ତେବେ ଅନେକ ଉଦ୍ଭିଦରେ ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ବିଭିନ୍ନ ରୋଗ ଓ ପୋକ ଆକ୍ରମଣ କରୁଥିବାରୁ ସେଗୁଡ଼ିକରେ ରୋଗ ପୋକ ନ ଲାଗିଲେ ବି ବହୁ ଆଗରୁ ପ୍ରତିରୋଧକ ବ୍ୟବସ୍ଥା ଗ୍ରହଣ କରାଯିବା ଉଚିତ । ରୋଗ ସାଧାରଣତଃ କବକ (Fungus), ଭୂତାଣୁ (Virus) ମାଇକୋପ୍ଲାଜମା, ବ୍ୟାକ୍ଟେରିଆ, ନେମାଟୋଡ଼ ପ୍ରଭୃତି ଦ୍ୱାରା ସୃଷ୍ଟି ହୋଇଥାଏ । କବକଗୁଡ଼ିକ ସାଧାରଣତଃ ପତ୍ର, କାଣ୍ଡ, ଫଳ, ପୁଷ୍ପ, ଚେର ପ୍ରଭୃତି ଅଙ୍ଗକୁ ଆକ୍ରମଣ କରିଥାନ୍ତି । ଏଗୁଡ଼ିକର ଆକାର କ୍ଷୁଦ୍ରାଦପି କ୍ଷୁଦ୍ର ହୋଇଥିବାରୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଏହାକୁ ଦେଖି ହୁଏ । କବକଗୁଡ଼ିକ ପ୍ରାକ୍ ଉଦ୍ଭିଦର ବିକାଶ ଅବସ୍ଥାରେ ଥିବାରୁ ଏମାନଙ୍କ ଦେହରେ ହରିତ୍‌କଣା ଦେଖିବାକୁ ମିଳେ ନାହିଁ । ସୁତରାଂ ସୂର୍ଯ୍ୟକିରଣକୁ ଗ୍ରହଣ କରି ଏମାନେ ଖାଦ୍ୟ ପ୍ରସ୍ତୁତ କରିବାକୁ ସମର୍ଥ ହୋଇ ନ ପାରିବା ହେତୁ ଅନ୍ୟ ଉପରେ ଆଶ୍ରୟ ଗ୍ରହଣ କରି ନିଜର ବଂଶ ବିସ୍ତାର କରିଥାନ୍ତି । ଏମାନେ ଉଦ୍ଭିଦମାନଙ୍କୁ ଆକ୍ରମଣ କଲେ ବିଭିନ୍ନ ପ୍ରକାର ପ୍ରତିକ୍ରିୟା ପ୍ରକାଶ ପାଇଥାଏ । ଏଗୁଡ଼ିକ ମଧ୍ୟରେ ପତ୍ରଝଡ଼ିବା, ବିବର୍ଣ୍ଣ ହୋଇଯିବା, ଫୁଲଫଳ ପ୍ରଭୃତି ଝଡ଼ିଯିବା, ଚେର ପଚିବା ଓ ଉଦ୍ଭିଦଗୁଡ଼ିକ ଅକାଳ ମୃତ୍ୟୁବରଣ କରିବା ପ୍ରଭୃତି ପ୍ରଧାନ । କବକମାନେ ସାଧାରଣତଃ ଦୁଇଭାଗରେ ବିଭକ୍ତ ଯଥା- ପରାଧାରୀ (Parasite) ଏବଂ ପରାଶ୍ରୟୀ (Saprophyte)

ପରାଧାରୀ କବକଗୁଡ଼ିକ ଜୀବନ୍ତ ଉଦ୍ଭିଦରେ ନାନା ପ୍ରକାର ରୋଗ ସୃଷ୍ଟି କରିଥାନ୍ତି । ଅପର ପକ୍ଷରେ ପରାଶ୍ରୟୀମାନେ ଜୀର୍ଣ୍ଣ ବକଳ, ପତିତପତ୍ର ପ୍ରଭୃତିରେ ବଢ଼ିଥାନ୍ତି । ଦ୍ୱିତୀୟ ଶ୍ରେଣୀର କବକମାନଙ୍କ ଦ୍ୱାରା ବିଶେଷ କିଛି କ୍ଷତି ହୁଏ ନାହିଁ । କିନ୍ତୁ ପ୍ରଥମ ଶ୍ରେଣୀର କବକଗୁଡ଼ିକ ଉଦ୍ଭିଦମାନଙ୍କୁ ଆକ୍ରମଣ କରି ସମ୍ପୂର୍ଣ୍ଣ କିମ୍ବା ଆଂଶିକ ମୃତ୍ୟୁ ଘଟାଇଥାନ୍ତି । ଆକ୍ରମଣ ଭେଦରେ କବକମାନଙ୍କୁ ବିଭିନ୍ନ ଜାତିରେ ବିଭକ୍ତ କରାଯାଇଥାଏ, ଗୋଟିଏ ଜାତି କବକର ଆକ୍ରମଣ, ବୃଦ୍ଧି, ବିକାଶ ପ୍ରକ୍ରିୟା ଅନ୍ୟ ଠାରୁ ସମ୍ପୂର୍ଣ୍ଣ ଭାବରେ ପୃଥକ୍ ହୋଇଥାଏ । ଏପରି କି କେତେକ ଜାତିର କବକ ଉଦ୍ଭିଦର ନିର୍ଦ୍ଦିଷ୍ଟ ଅଂଶରେ କ୍ଷତି ସାଧନ କରିଥାନ୍ତି । କବକମାନଙ୍କ ସମ୍ବନ୍ଧରେ ଏଠାରେ ବିଶେଷ ଆଲୋଚନା କରିବା ଅନାବଶ୍ୟକ । କବକମାନେ ଆକ୍ରମଣ କଲେ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦମାନଙ୍କର ରୂପ ବିକୃତ, ସ୍ଫୀତ, ରଙ୍ଗହୀନ ତଥା ସମୟେ ସମୟେ ଖର୍ବାକୃତି ହୋଇଯାଏ । ଗୁଳ୍ମଗୁଡ଼ିକର ସରୁ ସରୁ ପତ୍ର ହେବା ଏବଂ ଫୁଲ ଝଡ଼ିବା ଲକ୍ଷ୍ୟ କରାଯାଇଥାଏ । ସମୟେ ସମୟେ ଉଦ୍ଭିଦଗୁଡ଼ିକର ମୂଳ ପଚିଯାଏ କିମ୍ବା ମୂଳରେ ଯାଦୁପରି ରୋଗ ହୋଇଥାଏ । ନିମ୍ନରେ କେତେକ ସାଧାରଣ ରୋଗ ସମ୍ବନ୍ଧରେ ଆଲୋଚନା କରାଗଲା ।

**ଘରକଟା (Damping Off)** ଏହି ରୋଗ ପିଥିଅମ୍ ରାଇଜୋକ୍ଟୋନିଆ ଫାଇଟପ୍‌ଥୋରା ପ୍ରଭୃତି କବକମାନଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ । ତଳିଘରା (Nursery) ମାନଙ୍କରେ ଗଛଗୁଡ଼ିକ ଛୋଟ ଛୋଟ ଥିବା ଅବସ୍ଥାରେ ଏହି କବକମାନେ କୋମଳ କାଣ୍ଡଗୁଡ଼ିକୁ ଠିକ୍ ମାଟି ଉପରେ ପୋକାଟିଲାପରି ପଚାଇ ନଷ୍ଟ କରିଦିଅନ୍ତି । ଫଳରେ ଛୋଟ ଛୋଟ ତଳିଗୁଡ଼ିକ ଝାଉଁଳି ଯାଇ ମରିଯାନ୍ତି । ଗୋଟିଏ ତଳିଘରାରେ ଏହି ରୋଗ ଖୁବ୍ ଶୀଘ୍ର ଅନ୍ୟ ତଳିଘରାକୁ ବ୍ୟାପିଯାଇଥାଏ । ଏହି ରୋଗ ମୃତ୍ତିକାବାହୀ କବକମାନଙ୍କ ଦ୍ୱାରା ସୃଷ୍ଟି ହୋଇଥାନ୍ତି । ତେଣୁ ତଳି ଉତାରିବା ପୂର୍ବରୁ ରୋଗ ଲାଗିବାର ସମ୍ଭାବନା ଥିଲେ ମୃତ୍ତିକା ବିଶୋଧନ ଆବଶ୍ୟକ । ଏକରୁ ଦୁଇଭାଗ ଫର୍ମାଲିନ୍‌ର (Formaldehyde) ଏକ ମିଶ୍ରଣ ପ୍ରସ୍ତୁତକରି ପ୍ରସ୍ତୁତ ତଳିଘରାରେ ୧୨ ରୁ ୧୫ ସେଣ୍ଟିମିଟର ଗଭୀର ପର୍ଯ୍ୟନ୍ତ ଢାଳି ଦେବାକୁ ହୁଏ । ଏହାପରେ ଏହାକୁ ୨୪

ରୁ ୪୮ ଘଣ୍ଟା ପର୍ଯ୍ୟନ୍ତ କେରପାଲ ବା ଅଖା ଦ୍ୱାରା ଘୋଡ଼ାଇ ଦେବା ଉଚିତ । ଅଖାଗୁଡ଼ିକ ଖୋଲିଦେବା ପରେ ଅନ୍ୟୁନ ୫ ରୁ ୧୦ ଦିନ ପର୍ଯ୍ୟନ୍ତ ତଳି ଘରାଗୁଡ଼ିକ ଖରାରେ ରହିବାପରେ ମଞ୍ଜି ଲଗାଯାଏ । ଲଗାଲଗି କରି ମଞ୍ଜି ଲଗାଇବା ତଥା ଉପଯୁକ୍ତ ଭାବେ ଜଳ ନିଷ୍କାସନ ହେଉ ନ ଥିବା ତଳି ଘରାଗୁଡ଼ିକରେ ଏହି ରୋଗ ହେବାର ସମ୍ଭାବନା ଥାଏ । ଋତୁଜ ପୁଷ୍ପ ପାଇଁ ଚାରା ଉତାରିବା ବେଳେ ତଳି ଘରାଗୁଡ଼ିକୁ ଭୂମିସ୍ତର ଠାରୁ ଛଅରୁ ନଅ ଇଞ୍ଚ ଉଚ୍ଚା କରାଯିବା ଉଚିତ । ରୋଗମୁକ୍ତ ତଳି ପାଇବା ପାଇଁ ମଞ୍ଜି ଲଗାଯିବା ପାତ୍ର (seed pan)ରେ ଚାରା ଉତାରିବା ଉଚିତ ।

**ମୂଳପଚା** (Root rot) - ସ୍କ୍ଲେରୋସିୟମ କବକ ଦ୍ୱାରା ଗଛଗୁଡ଼ିକ ଆକ୍ରାନ୍ତ ହେଲେ ମୂଳପଚା ରୋଗ ସୃଷ୍ଟି ହୋଇଥାଏ । ଏହି କବକଗୁଡ଼ିକ ମୃତ୍ତିକାବାହୀ ହୋଇଥିବାରୁ ମୃତ୍ତିକା ବିଶୋଧନ କଲେ ଏହି ରୋଗ ହୁଏ ନାହିଁ । ଡାହାଲିଆ, କୋଲିଅସ୍, ପେନସି, ଜିନିଆ, କାର୍ଣ୍ଣେସନ୍, ପପି ପ୍ରଭୃତି ବହୁ ଶୋଭାବର୍ଦ୍ଧକ ଉଦ୍ଭିଦରେ ଏହି ରୋଗ ଦେଖାଯାଇଥାଏ । ଯେଉଁ ଅଞ୍ଚଳରେ ଏହି ରୋଗ ଲାଗିବାର ସମ୍ଭାବନା ଥାଏ ସେଠାରେ ମାଟି ତଥା ଖତ ବିଶୋଧନ କରି ଗଛ ଲଗାଇବା ଉଚିତ ।

**ପତ୍ରପୋଡ଼ା** ( Leaf blight) ଏହି ରୋଗ ସେବତୀ, ମଲ୍ଲୀ, ଗୋଲାପ ଏବଂ ଅନ୍ୟାନ୍ୟ ଶୋଭାବର୍ଦ୍ଧକ ଉଦ୍ଭିଦଗୁଡ଼ିକରେ ଦେଖାଯାଇଥାଏ । ବିଭିନ୍ନ ପ୍ରକାର କବକ ଦ୍ୱାରା ଏହି ରୋଗ ସାଧାରଣତଃ ସୃଷ୍ଟି ହୋଇଥାଏ । ଏହି ରୋଗ ଲାଗିଲେ ୪ ୪ ୫୦ ବୋର୍ଡ଼ୋକ୍ସ ମିଶ୍ରଣ କିମ୍ବା ଫାଇଟୋଲନ୍ ବ୍ୟବହାର କରାଯିବା ଉଚିତ । ଏହି ରୋଗ ସାଧାରଣତଃ ଆଲଟରନାରିଆ, ଫାଇଟୋପଥୋରା, ରାଇଜୋକ୍ଟୋନିଆ ପ୍ରଭୃତି କବକମାନଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ ।

**ପାଣ୍ଡୁର ରୋଗ** (Powdery mildew) ପାଣ୍ଡୁର ରୋଗ ସାଧାରଣତଃ କାଲେଣ୍ଡୁଲା, ସେବତୀ, ଗୋଲାପ, ଆଣ୍ଟିରାଇନମ୍ ସୁଇଟ ପି. ପ୍ରଭୃତି ଫୁଲଗଛରେ ଦେଖାଯାଇଥାଏ । ଓଇଡ଼ିଅମ୍, ମାଇକ୍ରୋସ୍ଫେରା ପ୍ରଭୃତି

କବକ ଦ୍ୱାରା ଏହି ରୋଗ ସୃଷ୍ଟି ହୋଇଥାଏ । ଏହି କବକଗୁଡ଼ିକର ରେଣୁ ବାୟୁ ଦ୍ୱାରା ଗୋଟିଏ ଗଛରୁ ଅନ୍ୟ ଗଛକୁ ସଂକ୍ରମିତ ହୋଇଥାଏ ଏବଂ ପାଣ୍ଡୁର ରୋଗ ଶୀଘ୍ର ବ୍ୟାପିଯାଏ । ପତ୍ରଗୁଡ଼ିକରେ ପାଉଁଶ ଝାଡ଼ିଲା ପରି ଦିଶେ । ଗଛଗୁଡ଼ିକରେ ଗନ୍ଧକ ଝାଡ଼ିଦେଲେ କିମ୍ବା କାରାଥେନ (Karathane) ଛିଞ୍ଚିଦେଲେ ଏହି ରୋଗ ଛାଡ଼ିଯାଏ ।

**ନିମ୍ନ ପାଣ୍ଡୁର ରୋଗ** (Downy mildews) - ଏହି ପ୍ରକାର ପାଣ୍ଡୁର ରୋଗ ପେରୋନୋସ୍ପୋରା କବକ ଦ୍ୱାରା ସୃଷ୍ଟି ହୁଏ । ସାଧାରଣତଃ ଗୋଲାପ, ଆଣ୍ଟିରାଇନମ୍, ହରଗୌରା ପ୍ରଭୃତିରେ ଏହି ରୋଗ ଦେଖାଯାଇଥାଏ । ପତ୍ରଗୁଡ଼ିକର ଉପରପଟ ସବୁଜ ଥିଲେ ବି ଏହାର ତଳପଟେ ଏହି ରୋଗ ଲାଗିଥାଏ । ନୂଆ ନୂଆ ଡାଳ ବାହାରୁଥିବା ଅବସ୍ଥାରେ ଏହି ରୋଗ ଅନେକ ସମୟରେ ଲାଗି ଡାଳଗୁଡ଼ିକୁ ନଷ୍ଟ କରେ । ଖୁବ୍ କମ୍ ସମୟରେ ଥଣ୍ଡା ଜଳବାୟୁରେ ଏହି ରୋଗ ପ୍ରସାରିତ ହୋଇଯାଏ । ଏହି ରୋଗ ଲାଗିଲେ ଡିଥେନ ଜେଡ଼-୭୮ ଗଛରେ ଛିଞ୍ଚିବା ଉଚିତ ।

**କଳଙ୍କି ରୋଗ** (Rusts) - ଗୋଲାପ, ସେବତୀ, କାର୍ଣ୍ଣେସନ୍ ଏବଂ ଅନେକ ସମୟରେ ବଡ଼ ବଡ଼ ଗଛରେ ଏହି ରୋଗ ଲାଗିଥାଏ । ଇଉରୋମାଇସେସ, ପୁସିନିଆ, ଫ୍ରାଗ୍‌ମିଡ଼ିୟମ୍, କୋଲିଓସ୍ପୋରିୟମ୍ ପ୍ରଭୃତି କବକ ଦ୍ୱାରା ଏହି ରୋଗ ସୃଷ୍ଟି ହୋଇଥାଏ । ଏହି ରୋଗଗୁଡ଼ିକ ହେଲେ ପତ୍ରଗୁଡ଼ିକରେ ଡିମା ଡିମା ଦାଗ ହୁଏ ଓ ପତ୍ର କଣା ହୋଇଯାଏ । ଏଥିରୁ ରକ୍ଷା ପାଇବା ପାଇଁ କ୍ୟାପଟେନ, ଫର୍ମେଟ୍ ପ୍ରଭୃତି ବ୍ୟବହାର କରିବା ଉଚିତ ।

**ଝାଉଁଳା ରୋଗ** (Wilts) ଝାଉଁଳା ରୋଗ ଶୋଭାବର୍ଦ୍ଧକ ଉଦ୍ୟାନଗୁଡ଼ିକର ବିରାଟ ଶତ୍ରୁ ଅଟେ । ଏହି ରୋଗ ହେଲେ ଗଛର କାଣ୍ଡଗୁଡ଼ିକ ପଚିବାକୁ ଆରମ୍ଭ କରେ ଓ ଗଛ ଝାଉଁଳି ଯାଏ । ଭର୍ଟିସିଲିଅମ୍ କବକ ଦ୍ୱାରା ସେବତୀ, ବିଗୋନିଆ ପ୍ରଭୃତି ଉଦ୍ଭିଦରେ ଏହି ରୋଗ ହୋଇଥାଏ । ଫୁଜାରିଅମ୍ କବକ ଦ୍ୱାରା ଆଷ୍ଟର, କାର୍ଣ୍ଣେସନ ପ୍ରଭୃତିରେ ଝାଉଁଳା ରୋଗ ହୋଇଥାଏ । କିନ୍ତୁ ଆଣ୍ଟିରାଇନମ୍ ଫୁଲରେ ଦେଖାଯାଉଥିବା ଝାଉଁଳା ରୋଗ ସ୍କେରୋଟିନିଆ

କବକ ଦ୍ୱାରା ସୃଷ୍ଟି ହୋଇଥାଏ । ଏହି ରୋଗ ଦେଖାଗଲା କ୍ଷଣି ଗଛଗୁଡ଼ିକରେ ସପ୍ତାହକେ ଥରେ ଡିଥେନ ଜେଡ୍- ୭୮ ଛିଞ୍ଚିବା ଆବଶ୍ୟକ ।

**ଖର୍ବରୋଗ** (Staunt disease) କ୍ଲୋଡ଼ୋସ୍ପୋରିଅମ୍ କବକ ଗଛରେ ଲାଗିଲେ ଗଛଗୁଡ଼ିକ ଖର୍ବାକୃତି ହୋଇଯାଏ ଏବଂ ଗଛରେ ଲାଲ ବାଦାମୀ ରଙ୍ଗର ଦାଗ ଦେଖାଯାଏ । ମାଟିକୁଣ୍ଡଗୁଡ଼ିକୁ ବିଶୋଧନ କଲେ ଏହି ରୋଗ ହୁଏ ନାହିଁ ।

**କଳାଦାଗ** (Black spot) କଳାଦାଗ ରୋଗ ଡିପ୍ଲୋକାରପନ୍‌ରୋଜାଇ ଦ୍ୱାରା ଗୋଲାପରେ ସୃଷ୍ଟି ହୋଇଥାଏ । ଏହି ରୋଗ ଗୋଲାପର ଏକ ପ୍ରଧାନ ଶତ୍ରୁ ହୋଇଥିବାରୁ ରୋଗ ଲାଗିବା କ୍ଷଣି ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବା ଉଚିତ । ଡିଥେନ ଜେଡ୍-୭୮, କ୍ୟାପଟାନ, ବ୍ଲାଇଟକ୍ସ ୫୦ ପ୍ରଭୃତି ଛିଞ୍ଚିଲେ ଏହି ରୋଗ କମିଯାଏ ।

କବକମାନଙ୍କ ଭଳି ବ୍ୟାକ୍ଟେରିଆମାନେ ଉଦ୍ଭିଦମାନଙ୍କ ଦେହରେ ନାନା ପ୍ରକାର ରୋଗ ସୃଷ୍ଟି କରିଥାନ୍ତି । ନିମ୍ନରେ ବ୍ୟାକ୍ଟେରିଆ ଦ୍ୱାରା ହେଉଥିବା କେତେକ ରୋଗ ବିଷୟରେ ବର୍ଣ୍ଣନା କରାଗଲା ।

**ଝାଉଁଳା ରୋଗ** - ସୁଡ଼ୋମୋନାସ ପ୍ରଭୃତି କେତେକ ବ୍ୟାକ୍ଟେରିଆ ଉଷ୍ଣ ପରିବେଶରେ ଗଛରେ ଝାଉଁଳା ରୋଗ ସୃଷ୍ଟି କରିଥାନ୍ତି । ଏହି ବ୍ୟାକ୍ଟେରିଆଗୁଡ଼ିକ ସାଧାରଣତଃ ମୃତ୍ତିକାବାହୀ ଅଟନ୍ତି । ବ୍ୟାକ୍ଟେରିଆମାନଙ୍କ ଦ୍ୱାରା ହେଉଥିବା ଝାଉଁଳା ରୋଗରେ ପତ୍ର ଶୁଖିଯାଏ । କାଣ୍ଡଗୁଡ଼ିକ ଲମ୍ବାବାଗରେ ଫାଟେ ଏବଂ ଚେରଗୁଡ଼ିକ ପଚିଯାଇ ମରିଯାଏ ।

**କାଣ୍ଡ ଏବଂ ମୂଳପଚା ରୋଗ** - ଏହା ଜାନ୍ଥୋମୋନାସ ବ୍ୟାକ୍ଟେରିଆ ଦ୍ୱାରା ସୃଷ୍ଟି ହୋଇଥାଏ । ସେବତୀ ପ୍ରଭୃତି ଫୁଲଗଛରେ ଏହି ରୋଗ ଦେଖାଦିଏ । ଏହି ପ୍ରକାର ବ୍ୟାକ୍ଟେରିଆ ଗଛରେ ଲାଗିଲେ ଗଛରେ ମୂଳ ପାଖରୁ କାଣ୍ଡ ପଚିଯାଏ । ଆଗ୍ରିମାଇସିନ ଛିଞ୍ଚିଲେ ଏହି ରୋଗରୁ ରକ୍ଷା ମିଳେ ।

**ଗୁଚ୍ଛିକରଣ ରୋଗ** (Fisciation) ଏହି ରୋଗ କୋରିନେ ବ୍ୟାକ୍ଟେରିୟମ୍ ଫାସିଆନସ୍ ଦ୍ୱାରା ସୃଷ୍ଟି ହୋଇଥାଏ । ଡାଳଗୁଡ଼ିକ ଅସମ୍ଭବ

ଭାବେ ଫୁଲିଯାଏ ଏବଂ ଗଛର ପତ୍ର ମୋଟା ହୋଇଯାଏ । ସେବତୀ, କାର୍ଣ୍ଣେସନ, ସୁଇଟି ପି. ପିଟୁନିଆ, ଜିରାନିୟମ ପ୍ରଭୃତି ଗଛରେ ଏହି ରୋଗ ସାଧାରଣତଃ ଦେଖାଯାଏ । ଏହି ରୋଗ ମଞ୍ଜିଦ୍ୱାରା ସଂକ୍ରମିତ ହୋଇଥାଏ । ମଞ୍ଜି ଓ ମାଟି ବିଶୋଧନ ହେଲେ ଏହି ରୋଗ ହେବା ସମ୍ଭାବନା ବହୁତ କମ୍ ।

**ଆବୁ ରୋଗ (Gall)** - ଗୋଲାପ, ସେବତୀ, ସୁଇଟି ପି. ପ୍ରଭୃତିରେ ଆଗ୍ରୋ ବ୍ୟାକ୍ଟେରିୟମ୍ ଟୁମେ ଫାସିଆନସ୍ ବ୍ୟାକ୍ଟେରିଆ ଦ୍ୱାରା ଏହି ରୋଗ ସୃଷ୍ଟି ହୋଇଥାଏ । ବ୍ୟାକ୍ଟେରିଆମାନେ ମାଟିରେ ରହି ମୂଳ ଓ କାଣ୍ଡକୁ ଆକ୍ରମଣ କରନ୍ତି । ମାଟି ବିଶୋଧନ କଲେ ଏହି ରୋଗ ସାଧରଣତଃ ହୋଇ ନ ଥାଏ ।

**ପତ୍ର ଦାଗ (Leaf spot)** ଜାନ୍ଥୋମୋନାସ ବ୍ୟାକ୍ଟେରିୟମ୍ ଦ୍ୱାରା ବିଭିନ୍ନ ପ୍ରକାର ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦରେ ପତ୍ର ଦାଗ ରୋଗ ହୋଇଥାଏ । ପତ୍ରର ଶିରା ପ୍ରଶୀରା ମଧ୍ୟବର୍ତ୍ତୀ ଅଂଶଗୁଡ଼ିକ ଲାଲ ପଡ଼ିଥାଏ । ଆଗ୍ରୋମାଇସିନ୍ ଛିଞ୍ଚିଲେ ଏହି ରୋଗ ହୁଏ ନାହିଁ । ବିଗୋନିଆ, କାର୍ଣ୍ଣେସନ, ଗାର୍ଡେନିଆ ଏବଂ ବିଭିନ୍ନ ଶୋଭାବର୍ଦ୍ଧକ ପତ୍ରଧାରୀ (Foliage plant) ଗଛରେ ଏହି ରୋଗ ହୁଏ ।

ଅନ୍ୟାନ୍ୟ ଉଦ୍ଭିଦମାନଙ୍କ ପରି ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକରେ କେତେକ ଭୂତାଣୁ ରୋଗ ଲାଗିଥାଏ । ଭୂତାଣୁ ରୋଗରୁ ରକ୍ଷା ପାଇବା ସମ୍ଭବପର ନୁହେଁ । ଏହି ରୋଗରେ ଆକ୍ରାନ୍ତ ହୋଇଥିବା ଗଛଗୁଡ଼ିକୁ ଓପାଡ଼ି ବାହାର କରିଦେବା ଉଚିତ ।

**ମୋଜାଇକ** - ମୋଜାଇକ ରୋଗ ବିଭିନ୍ନ ଭୂତାଣୁମାନଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ । କାର୍ଣ୍ଣେସନ, ହରଗୌରା, ଗେଣ୍ଡୁ ଜିନିଆ, ଲିଲି ପ୍ରଭୃତି ଉଦ୍ଭିଦରେ ଏହି ରୋଗ ଦେଖା ଯାଇଥାଏ । ଏହି ରୋଗ ଲାଗିଲେ ଗଛଗୁଡ଼ିକ ଖର୍ବାକୃତି ହୋଇଯାନ୍ତି । ପତ୍ରଗୁଡ଼ିକ ଛୋଟ ଛୋଟ ହୋଇଯାଏ । ଉଦ୍ଭିଦର ସୌନ୍ଦର୍ଯ୍ୟ ବିତରଣ କ୍ଷମତା ହ୍ରାସ ପାଏ ।

ସେହିପରି କାର୍ଣ୍ଣେସନରେ ଷ୍ଟ୍ରିକ୍ ରୋଗ ଭୂତାଣୁମାନଙ୍କ ଦ୍ୱାରା ହୋଇଥାଏ । ଏହି ରୋଗ ଲାଗିଲେ ଗଛର ପୁରୁଣା ପତ୍ରଗୁଡ଼ିକ ଲାଲ କିମ୍ବା

ବାଙ୍ଗଣୀ ରଙ୍ଗ ହୋଇଯାଏ । ଭୂତାଣୁମାନଙ୍କ ଯୋଗୁଁ ଗଛଗୁଡ଼ିକ ହଳଦିଆ ଦିଶନ୍ତି । କାଣ୍ଡରେ ପବଗୁଡ଼ିକ ଛୋଟ ଛୋଟ ହୋଇଯାନ୍ତି । ଗଛରୁ ଅନେକ ଡାଳ ବାହାରି ପଡ଼େ । ସେବତୀ, ଆଷ୍ଟର ପ୍ରଭୃତି ଗଛରେ ଏହି ରୋଗ ଦେଖାଯାଏ । ଭୂତାଣୁମାନଙ୍କ ଦ୍ୱାରା ପତ୍ରମୋଚା ରୋଗ ହୁଏ । ଫଳରେ ପତ୍ରଗୁଡ଼ିକ ମୋଚା ହୋଇ ବାଦାମୀ ରଙ୍ଗ ହୋଇଯାଏ । କିଛିଦିନ ପରେ ପତ୍ରଗୁଡ଼ିକ ଝଡ଼ି ଏହା ପତ୍ରଶୂନ୍ୟ ଦିଶେ । ଭୂତାଣୁରୋଗ ଲାଗିଥିବା ଗଛରୁ ଡାଳ ନେଇ ଅଙ୍ଗଜ ବିସ୍ତାର ପ୍ରଣାଳୀରେ ନୂତନ ଗଛ ସୃଷ୍ଟି କରିବା ଅନୁଚିତ, ନିମ୍ନରେ କେତେକ ଶୋଭାବର୍ଦ୍ଧକ ଉଦ୍ଭିଦରେ ଲାଗୁଥିବା ରୋଗ ସମ୍ବନ୍ଧରେ ଉଲ୍ଲେଖ କରାଗଲା –

| ଫୁଲର ନାମ | ରୋଗ |
|---|---|
| ଆଣ୍ଟିରାଇନମ | ରଷ୍ଟ, ଡାଉନିମିଲଡ଼ିଉ |
| କାର୍ଣ୍ଣେସନ | ଝାଉଁଳା ରୋଗ, କାଣ୍ଡ ପଚା, ପତ୍ରମୋଚା, ଭୂତାଣୁ ରୋଗ |
| ସେବତୀ | ପତ୍ରସ୍ଫୀତ, ପାଣ୍ଡୁର |
| କ୍ଲାରକିଆ | ମୂଳ ଏବଂ କାଣ୍ଡପଚା ରୋଗ |
| କର୍ଣ୍ଣଫ୍ଲାୱାର | କଳଙ୍କି ଓ ପାଣ୍ଡୁର ରୋଗ |
| ଡାଇଆନ୍ଥସ | ପତ୍ରପୋଡ଼ା ଓ କଳଙ୍କି |
| ଗିଲାର୍ଡ଼ିଆ | ପାଣ୍ଡୁର ଏବଂ ଭୂତାଣୁ ରୋଗ |
| ହେଲିକ୍ରାଇସମ | ନିମ୍ନ ପାଣ୍ଡୁର ରୋଗ |
| ହଲିକକ୍ | କଳଙ୍କି ଓ ସ୍ଫୀତ ରୋଗ |
| ଗେଣ୍ଡୁ | ମୂଳପଚା ରୋଗ |
| ପିଟୁନିଆ | ମୂଳପଚା ଓ ପତ୍ରମୋଚା ରୋଗ |
| ଫ୍ଲକ୍ସ | ପତ୍ରଦାଗ ଓ ପାଣ୍ଡୁର ରୋଗ |
| ରଜନୀଗନ୍ଧା | ପତ୍ରଦାଗ ରୋଗ |
| ପପି | ନମ୍ର ପାଣ୍ଡୁର |

| ଫୁଲର ନାମ | ରୋଗ |
|---|---|
| ସୂର୍ଯ୍ୟମୁଖୀ | ମୂଳପଚା ରୋଗ |
| ଭର୍ବିନା | ମୂଳପଚା ରୋଗ |
| ଜିନିଆ | ମୂଳପଚା, ପତ୍ରଦାଗ ଓ ଭାଇରସ୍ ରୋଗ |
| ବିଗୋନିଆ | ପାଣ୍ଡୁର ଓ ଭୂତାଣୁ ରୋଗ |
| ଡାହାଲିଆ | କଳାଗୁଣ୍ଡି ଓ ଭୂତାଣୁ ରୋଗ |
| ଗ୍ଲାଡ଼ିଓଲସ୍ | ଅନ୍ତପଚା, ଯାଦୁ ଓ ଭୂତାଣୁ ରୋଗ |
| ଗୋଲାପ | କଳାଦାଗ, ପାଣ୍ଡୁର, କଳଙ୍କି ରୋଗ |
| ଥୁଜା | ପତ୍ରଶୁଖା ରୋଗ |
| ସୁଗନ୍ଧରାଜ | ଯାଦୁରା ରୋଗ |

ଉପରୋକ୍ତ ଉଦ୍ଭିଦଗୁଡ଼ିକର ରୋଗଗୁଡ଼ିକ ଦୂରୀକରଣ ପାଇଁ ପ୍ରତିଶୋଧକ ବ୍ୟବସ୍ଥା କଲେ ଗଛଗୁଡ଼ିକ, ଉତ୍ତମଭାବେ ବଢ଼ିପାରନ୍ତି ।

ରୋଗମାନଙ୍କ ପରି କୀଟପତଙ୍ଗ ଦ୍ୱାରା ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକର ଅନେକ କ୍ଷତି ହୋଇଥାଏ । ବେଳେ ବେଳେ ଉପଯୁକ୍ତ ପ୍ରତିଷେଧକ ବ୍ୟବହାର କରା ନଯିବା ଫଳରେ ଖୁବ୍ କମ୍ ସମୟରେ କୀଟପତଙ୍ଗଗୁଡ଼ିକ ଉଦ୍ଭିଦର ଅନେକ କ୍ଷତି କରିଥାନ୍ତି । ଚେରଠାରୁ ଆରମ୍ଭ କରି ଫୁଲଫଳ ପର୍ଯ୍ୟନ୍ତ ଉଦ୍ଭିଦର ବିଭିନ୍ନ ଅଂଶ କୀଟପତଙ୍ଗ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଏମାନଙ୍କ ଆକ୍ରମଣରୁ ରକ୍ଷା ପାଇବାକୁ ହେଲେ ସେମାନଙ୍କର ଜୀବନଚକ୍ର ସମ୍ବନ୍ଧରେ ପ୍ରତ୍ୟକ୍ଷ ଭାବରେ ଅନୁଧ୍ୟାନ କରି ପ୍ରତିଶେଧକ ବ୍ୟବସ୍ଥାମାନ ଗ୍ରହଣ କରାଯିବା ଉଚିତ । କୀଟପତଙ୍ଗ ଆକ୍ରମଣରୁ ରକ୍ଷା କରିବା ପାଇଁ ଅନେକ ପ୍ରକାରର ପୋକମରା ଔଷଧ ବ୍ୟବହାର କରାଯାଏ । ସେହିପରି କୀଟପତଙ୍ଗ ଆକ୍ରମଣରୁ ପ୍ରତିରୋଧ କଲାଭଳି ନୂତନ ଜାତିର ବିହନ ବ୍ୟବହାର କରିବା ଆବଶ୍ୟକ ।

ଠିକ୍ ସମୟରେ ଉପଯୁକ୍ତ ବ୍ୟବସ୍ଥା କଲେ କୀଟପତଙ୍ଗମାନେ ବିଶେଷ କିଛି କ୍ଷତି କରନ୍ତି ନାହିଁ । ଶୋଭାବର୍ଦ୍ଧକ ଉଦ୍ୟାନମାନଙ୍କୁ ନଷ୍ଟ କରୁଥିବା କୀଟପତଙ୍ଗମାନଙ୍କୁ ତିନି ଭାଗରେ ବିଭକ୍ତ କରାଯାଇଥାଏ ।

**ଚର୍ବକ କୀଟ** (Chewing insect) - ଚର୍ବକ କୀଟଗୁଡ଼ିକ ମଧ୍ୟରେ ପିମ୍ପୁଡ଼ି, ଭୃଙ୍ଗ (Bettle), ଘୁଣିପୋକ (Weevil), ଫଳକଟା ପୋକ, ଚର୍ବକ ସାଁବାଲୁଆ (Cut worm), ଝିଣ୍ଟିକା, ପତ୍ରଗୁଡ଼ା ପୋକ (Leaf roller), ପତ୍ରଖୋଳା ପୋକ (Leaf miner), ତେଲୁଣି ଜାତୀୟ ପୋକ, କରତଗୁଣ୍ଡି ପୋକ (Saw fly), ଉଇ ପ୍ରଭୃତି ପ୍ରଧାନ । ଏଗୁଡ଼ିକ ଗଛର ପତ୍ର, ଡାଳ, କାଣ୍ଡ, ଚେର, କଢ଼, ଫୁଲ, ଫଳ ଇତ୍ୟାଦିକୁ ଖାଇଦିଅନ୍ତି । ଏଗୁଡ଼ିକରୁ ରକ୍ଷା ପାଇବାକୁ ହେଲେ ଡି. ଡି. ଟି. ଡାଇଏଲ୍ଡ୍ରିନ୍, କ୍ଲୋର୍‌ଡେନ୍, ଗାମାକ୍ସିନ୍, ଆଲଡ୍ରିନ ଡଷ୍ଟ, ଲିଣ୍ଡେନ ପ୍ରଭୃତି ବ୍ୟବହାର କରାଯାଏ ।

**ଶୋଷକ କୀଟ** (Piercing & sucking insects)- ଶୋଷକ କୀଟଗୁଡ଼ିକ ସାଧାରଣତଃ ସବୁ ପ୍ରକାର ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକକୁ ଆକ୍ରମଣ କରିଥାନ୍ତି । ଏଗୁଡ଼ିକର ଆକ୍ରମଣ ଦ୍ୱାରା ପତ୍ର, କଢ଼, ଫୁଲ ପ୍ରଭୃତି କଦାକାର ଓ ବିବର୍ଣ୍ଣ ଦିଶନ୍ତି । ଏହି ପ୍ରକାର କୀଟପତଙ୍ଗମାନଙ୍କ ମଧ୍ୟରେ ଜଉପୋକ, (Aphids), ମାଇଟ୍ (Mites), କାହାଳିଆପୋକ (Gall midge), ଧଳାମାଛି (White fly), ଡିଆଁପୋକ (Leaf hopper), ଚୂର୍ଣ୍ଣପୃଷ୍ଠପୋକ (Mealy bug), କାତିପୋକ (Scale insect) ପ୍ରଭୃତି ପ୍ରଧାନ । ଏଗୁଡ଼ିକର ଆକ୍ରମଣରୁ ରକ୍ଷା ପାଇବାକୁ ହେଲେ ଗଛଗୁଡ଼ିକରେ ପାରାଥିଅନ, ମାଲାଥିଅନ, ଡି. ଡି. ଟି., କ୍ଲୋରଡେନ, ଏଣ୍ଡ୍ରିନ ପ୍ରଭୃତି ବ୍ୟବହାର କରିବା ଆବଶ୍ୟକ ।

**କୋରକ କୀଟ** (Rasping insects) କଙ୍କତି ପକ୍ଷ କୀଟ (Thrips) କୋରକ କୀଟମାନଙ୍କ ମଧ୍ୟରେ ପ୍ରଧାନ । ଥ୍ରିପସ ଛୋଟ ଅବସ୍ଥାରେ ପତ୍ର, କଢ଼, ନୂତନ ଡାଳଗୁଡ଼ିକୁ ଶୋଷି ନେବା ଫଳରେ ସେଗୁଡ଼ିକ କଳା ପଡ଼ି ଯାଆନ୍ତି । ଥ୍ରିପସ୍ ଫୁଲରେ ଲାଗିଲେ ଫୁଲର ଉପର ପାଖୁଡ଼ାଗୁଡ଼ିକ

କଳାପଡ଼ିଯାନ୍ତି ଓ ଫୁଲ ଭଲଭାବରେ ଫୁଟିପାରେ ନାହିଁ । ଗୋଲାପ ଓ ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଗୁଳ୍ମଗୁଡ଼ିକରେ ଏଗୁଡ଼ିକ ବେଶୀ ଦେଖାଯାନ୍ତି । ଡାଇଏଲଡ୍ରିନ୍, ଲିଣ୍ଡେନ, ମାଲାଥିଅନ୍ ଛିଞ୍ଚିଲେ ଏମାନଙ୍କ କବଳରୁ ରକ୍ଷା ମିଳିଥାଏ ।

**ସୂତ୍ରବୀଜ (Nematodes)** କୀଟପତଙ୍ଗ ଭଳି ସୂତ୍ରଜୀବ ମଧ୍ଯ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକର ଯଥେଷ୍ଟ କ୍ଷତି କରିଥାନ୍ତି । ସେବତୀ, ଆଫ୍ରିକାନ ଭାଇଓଲେଟ୍, ବିଗୋନିଆ, କାର୍ଣ୍ଣେସନ ପ୍ରଭୃତି ଅନେକ ଉଦ୍ଭିଦକୁ ଏଗୁଡ଼ିକ ଆକ୍ରମଣ କରିଥାନ୍ତି । ସୂତ୍ରଜୀବଗୁଡ଼ିକ ଗଛର ଚେରଗୁଡ଼ିକୁ ଆକ୍ରମଣ କରିଥାନ୍ତି । ସୂତ୍ରଜୀବଗୁଡ଼ିକ ଗଛର ଚେରଗୁଡ଼ିକୁ ଆକ୍ରମଣ କରି ଛୋଟ୍ ଛୋଟ ଗଣ୍ଠି (Knot) ସୃଷ୍ଟି କରିଥାନ୍ତି । ଫଳରେ ଚେରଗୁଡ଼ିକ ସେମାନଙ୍କର ସାରଗ୍ରହଣ ଶକ୍ତି ହରାଇଥାନ୍ତି । ଏଥିରୁ ରକ୍ଷା ପାଇବାକୁ ହେଲେ ମାଟିରେ ନେମାଗନ, ଭ୍ୟାପନ୍ ଏବଂ ମିଥାଇଲ ବ୍ରୋମାଇଡ୍ ପ୍ରଭୃତି ବ୍ୟବହାର କରିବାକୁ ପଡ଼େ । ଉପରୋକ୍ତ ଉଦ୍ଭିଦ ଶତ୍ରୁମାନଙ୍କ ବ୍ୟତୀତ ମୂଷା, ବିଭିନ୍ନ ପ୍ରକାର ପକ୍ଷୀ, ବିରୁଡ଼ି ପ୍ରଭୃତି ବେଳେ ବେଳେ ଉଦ୍ଭିଦଗୁଡ଼ିକୁ ନଷ୍ଟ କରିଥାନ୍ତି । ସେମାନଙ୍କୁ ଗଛଗୁଡ଼ିକଠାରୁ ଦୂରରେ ରଖିବା ଆବଶ୍ୟକ । ଅନେକ ସମୟରେ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକୁ କୀଟପତଙ୍ଗ ଓ ରୋଗ ଦାଉରୁ ରକ୍ଷାରେ ଅବହେଳା ପ୍ରଦର୍ଶନ କରାଯାଇଥାଏ । ଫଳରେ ସେଗୁଡ଼ିକ ପ୍ରକୃତ ସୌନ୍ଦର୍ଯ୍ୟ ବିତରଣ କରିପାରନ୍ତି ନାହିଁ । ଏହି ଦୃଷ୍ଟିରୁ ଅନ୍ୟାନ୍ୟ ଲାଭଜନକ ଫସଲ ପରି ଫୁଲ ଗଛଗୁଡ଼ିକୁ ସେମାନଙ୍କ ଶତ୍ରୁଙ୍କଠାରୁ ରକ୍ଷା କରିବା ବିଧେୟ ।



|| ନବମ ପରିଛେଦ ||

# ବୃକ୍ଷ
## (Trees)

ବୃକ୍ଷ ଆଦିମ କାଳରୁ ମନୁଷ୍ୟର ପରମ ବନ୍ଧୁରୂପେ ପରିଚିତ । ବୃକ୍ଷ ପରିବେଷ୍ଟିତ ଘଞ୍ଚଜଙ୍ଗଲ, ଫଳପୁଷ୍ପଭରା ବୃକ୍ଷ ଦେଖିଲେ ମନରେ ଅସୀମ ଆନନ୍ଦ ଜାତହୁଏ । ରାସ୍ତାର ଦୁଇଧାରରେ ବୃକ୍ଷ ଲଗାଇଲେ ରାସ୍ତାର ସୌନ୍ଦର୍ଯ୍ୟ ବଢ଼ିଥାଏ । ସେହିପରି ଗୃହର ଚତୁଃପାର୍ଶ୍ୱରେ, କେନାଲ କିମ୍ବା ହ୍ରଦ ଧାରେ ବୃକ୍ଷମାନଙ୍କର ସମାବେଶ ଅପୂର୍ବ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାନ୍ତି । ମନୁଷ୍ୟର ଖାଦ୍ୟ, ବାସଗୃହ ଉପଯୋଗୀ ଉପକରଣ ଯୋଗାଇବା ସାଙ୍ଗକୁ ବୃକ୍ଷମାନେ ମନୁଷ୍ୟ ଶ୍ୱାସ ପ୍ରଶ୍ୱାସ ପ୍ରକ୍ରିୟାରୁ ନିର୍ଗତ ଦୂଷିତ ବାଷ୍ପ ଓ କଳ କାରଖାନାରୁ ନିର୍ଗତ ବିଷାକ୍ତ ବାଷ୍ପ ଗ୍ରହଣ କରି ସମଗ୍ର ମାନବ ସମାଜକୁ ପରୋକ୍ଷରେ ସୁସ୍ଥହୋଇ ବଞ୍ଚିବାରେ ସାହାଯ୍ୟ କରନ୍ତି । ବହୁ ପୁରାତନ କାଳରୁ ବୃକ୍ଷରୋପଣକୁ ଏକ ପବିତ୍ର ସାମାଜିକ କର୍ତ୍ତବ୍ୟ ରୂପେ ଗ୍ରହଣ କରାଯାଇଅଛି । ସ୍ୱାଧୀନ ଭାରତରେ ଜୁଲାଇ ମାସର ପ୍ରଥମ ଭାଗରେ ବୃକ୍ଷରୋପଣ ସପ୍ତାହ ପାଳନ କରାଯାଉଅଛି । ଗାଁ ଗହଳିରେ ବର, ଅଶ୍ୱଥର ବିବାହ ସମ୍ପନ୍ନ କରାଯାଉଅଛି । ବିଭିନ୍ନ ଦେବାଦେବୀଙ୍କ ସହିତ ବୃକ୍ଷମାନଙ୍କୁ ସଂଶ୍ଳିଷ୍ଟ କରାଯାଇଅଛି ।

ଉଦ୍ଭିଦ ଜଗତରେ ବୃକ୍ଷଗୁଡ଼ିକ ଚିହ୍ନିବାରେ ଅସୁବିଧା ହୁଏ ନାହିଁ । ପ୍ରତ୍ୟେକ ବୃକ୍ଷ ସାଧାରଣତଃ ତିନି ମିଟରରୁ ଅଧିକ ଉଚ୍ଚ ହୁଏ ଏବଂ ଏହାର ଏକ ନିର୍ଦ୍ଦିଷ୍ଟ ଆକୃତି ଥାଏ । ନଡ଼ିଆ, ଆମ୍ବ, ଝାଉଁ, ବର, ବଉଳ, ଦେବଦାରୁ ପ୍ରଭୃତି ବୃକ୍ଷକୁ ଦେଖିଲେ ତାହା ସହଜରେ ଚିହ୍ନି ହୁଏ । ସର୍ବୋପରି ପ୍ରତ୍ୟେକ ବୃକ୍ଷର ଗୋଟିଏ ମାତ୍ର ସବଳ କାଣ୍ଡ ଥାଏ ।

ଜଳବାୟୁର ବିଭିନ୍ନତା ଯୋଗୁଁ ପୃଥକ୍ ଭୌଗଳିକ ପରିସ୍ଥିତିରେ ଭିନ୍ନ ଭିନ୍ନ ପ୍ରକାର ବୃକ୍ଷ ଦେଖାଯାଇଥାଏ । ସେହି ଦୃଷ୍ଟିରୁ କୁମାରୀକା ଠାରୁ ହିମାଳୟର

ଉଚ୍ଚ ପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ପର୍ଯ୍ୟବେକ୍ଷଣ କଲେ ବିଭିନ୍ନ ପ୍ରକାର ବୃକ୍ଷ ଦେଖିବାକୁ ମିଳିଥାଏ । ବିଭିନ୍ନ ବୃକ୍ଷର ଜନ୍ମସ୍ଥାନର ନାମ ଉଲ୍ଲେଖ କରାଗଲା—

| **ବୃକ୍ଷର ନାମ** | **ଜନ୍ମସ୍ଥାନ** |
|---|---|
| ଆମହେରଷ୍ଟିଆ | ବର୍ମା |
| କଞ୍ଚନ | ଭାରତ |
| ବ୍ରାଉନିଆ | ପଶ୍ଚିମ ଦ୍ୱୀପପୁଞ୍ଜ |
| କଲ୍‌ଭିଲିଆ | ମାଡ଼ାଗାସ୍କାର |
| ପାଟଳୀ | ଭାରତ |
| ଆକାଶନିମ | ବର୍ମା |
| କୃଷ୍ଣଚୂଡ଼ା | ମାଡ଼ାଗାସ୍କାର |
| ତାମ୍ରଫଳା | ମାଳୟ |
| ଚାକୁଣ୍ଡା | ବ୍ରାଜିଲ୍ |
| ଅଶୋକ | ଭାରତ |

ବିଭିନ୍ନ ଜଳବାୟୁ ଓ ଭୌଗଳିକ ପରିସ୍ଥିତିକୁ ବିଚାର କରି ବୃକ୍ଷ ଲଗାଯିବା ଆବଶ୍ୟକ । ବେଶୀ ବର୍ଷା ହେଉଥିବା ଅଞ୍ଚଳରେ ଆମ୍ବ, ପଣସ, ନଡ଼ିଆ, ପାଟଳୀ, ଆକାଶନିମ, କୃଷ୍ଣଚୂଡ଼ା, ଚାକୁଣ୍ଡା, ଅଶୋକ, କଞ୍ଚନ ପ୍ରଭୃତି ବୃକ୍ଷ ରୋପଣ କରିବା ଆବଶ୍ୟକ । ଶୁଷ୍କ ଅଞ୍ଚଳରେ ଟୁଲିପ, ବାଦାମ, ପଲାଶ, ପାଳଧୂଆ, ଜାକାରାଣ୍ଡା, ନିମ, କାଠଚମ୍ପା, କରଞ୍ଜ, ଥେସ୍‌ପେସିଆ ପ୍ରଭୃତି ବୃକ୍ଷ ଲଗାଯିବା ଆବଶ୍ୟକ । ମରୁଭୂମି ଓ ଖୁବ୍ କମ୍ ବର୍ଷା ହେଉଥିବା ଅଞ୍ଚଳରେ ପଳାଶ, ଶିରିଶ, ସୁନାରୀ, ଝାଉଁ, ଉଇକାଲିପଟସ୍, ନିମ, ମଲବେରୀ, ଖଜୁରୀ ପ୍ରଭୃତି ବୃକ୍ଷ ଲଗାଯାଇ ପାରିବ । ଲୁଣୀ ଅଞ୍ଚଳରେ ନିମ, ପଳାଶ, ଅଁଳା, ପିଜୁଳି, ମହୁଲ ପ୍ରଭୃତି ବୃକ୍ଷ ଲଗାଇଲେ ସେଗୁଡ଼ିକ ଭଲ ବଢ଼େ ଓ ବେଶୀଦିନ ପର୍ଯ୍ୟନ୍ତ ରୁହେ । ମହୁଚାଷରେ ସାହାଯ୍ୟ କରିବା ପାଇଁ କଞ୍ଚନ, ବଟଲବ୍ରଶ, ଜାମୁ, ନିମ, ଶିଶୁ ଓ ବରୁଣ ପ୍ରଭୃତି ବୃକ୍ଷ ଲଗାଯାଇ ପାରିବ । ଉଦ୍ଭିଦଉଦ୍ୟାନ (Botanical

garden) ଗୁଡ଼ିକରେ ଉଦ୍ଭିଦ ସମ୍ବନ୍ଧୀୟ ଜ୍ଞାନ ଆହରଣ ପାଇଁ ସବୁ ପ୍ରକାର ବୃକ୍ଷ ସଂଗ୍ରହ କରି ଲଗାଯାଇଥାଏ ।

ଖରାଦିନେ ବୃକ୍ଷ ରୋପଣ ପାଇଁ ଏକ ମିଟର ଦୈର୍ଘ୍ୟ, ପ୍ରସ୍ଥ ଓ ଗଭୀର ଗାତ ଖୋଳି ସେଥିରେ ତାଳପତ୍ର ପକାଇ ପୋଡ଼ି ଦିଆଯାଏ । ବର୍ଷାଦିନେ ଗଛ ଲଗାଯିବା ଆବଶ୍ୟକ । ଅଧିକାଂଶ ବୃକ୍ଷର ବଂଶବିସ୍ତାର ମଞ୍ଜି ଦ୍ୱାରା ହୋଇଥାଏ । ଛଅମାସରୁ ଏକବର୍ଷ ବୟସର ଚାରାଗଛକୁ ରୋପଣ କରାଯାଏ । ପଲିଥିନ୍ ପ୍ୟାକେଟରେ ପ୍ରତ୍ୟେକ ଏକ ଭାଗ ମାଟି, ବାଲି ଓ ଗୋବରଖତର ମିଶ୍ରଣ ଭର୍ତ୍ତିକରି ମଞ୍ଜି ପକାଯାଏ ଓ ଗଛ ଲଗାଯିବା ପର୍ଯ୍ୟନ୍ତ ଚାରାଗଛର ପରିପାଳନ କରାଯାଏ । କାଠଚମ୍ପା, ପାଳଧୂଆ, ବ୍ରାଉନିଆ ପ୍ରଭୃତି ଅଳ୍ପ କେତେକ ବୃକ୍ଷର ବଂଶବିସ୍ତାର ଅଙ୍ଗଜ ପ୍ରଣାଳୀରେ ହୋଇଥାଏ । ଗଛ ଲଗାଇଲା ବେଳେ ପ୍ରତ୍ୟେକ ଗାତରେ ପାଞ୍ଚଭାଗ ମାଟି ଓ ଏକଭାଗ ଖତର ମିଶ୍ରଣ ଦେବା ଆବଶ୍ୟକ । ମାଟିପିଣ୍ଡୁଳା ସହିତ ଗଛ ଲଗାଯିବା ଉଚିତ । ଚାରାକୁ ସିଧା ଭାବରେ ଓ ସନ୍ଧ୍ୟା ସମୟରେ ଲଗାଯିବା ଦରକାର ଓ ପରବର୍ତ୍ତୀ କିଛିଦିନ ପର୍ଯ୍ୟନ୍ତ ପାଣିଦେବା ଆବଶ୍ୟକ । ଗଛ ଲଗାଇଲା ବେଳେ ସିଧାରେ ଗଛ ପୋତିବା ଆବଶ୍ୟକ ଓ ଗଛମୂଳକୁ ଚାପି ଦେଇ ଚାରିପଟେ ମଳା କରିବା ଉଚିତ । ଗାଈଗୋରୁ ଛେଳି କବଳରୁ ଗଛମୂଳକୁ ରକ୍ଷା କରିବା ପାଇଁ ବୃକ୍ଷ ପ୍ରହରୀ ବା ଗହଣା (Tree guard) ଲଗାଇବା ସର୍ବାଦୌ ଆବଶ୍ୟକ । ବଡ଼ ବଡ଼ ସହରର ରାଜପଥ ଧାରରେ ସିମେଣ୍ଟ ଓ ଇଟାର ସୁନ୍ଦର ସୁନ୍ଦର ବୃକ୍ଷ ପ୍ରହରୀମାନ ଲଗାଯାଏ । ବାଉଁଶ ପାତିଆରେ ବୃକ୍ଷପ୍ରହରୀ ପ୍ରସ୍ତୁତ କଲେ କମ୍ ପଇସା ଖର୍ଚ୍ଚ ହୁଏ । ଗଛ ଲାଗିବାର ୪ ରୁ ୫ ବର୍ଷ ପର୍ଯ୍ୟନ୍ତ ଖରାଦିନେ ଜଳସେଚନର ବ୍ୟବସ୍ଥା କରିବା ଆବଶ୍ୟକ ଏବଂ ବର୍ଷାଦିନେ ପ୍ରତ୍ୟେକ ଗଛପିଛା ଯବକ୍ଷାରଜାନ, ପଟାସ ଓ ସୁପର ସାରର ସମାନ ପରିମାଣର ମିଶ୍ରଣରୁ ୧୦୦ ରୁ ୨୦୦ ଗ୍ରାମ ପର୍ଯ୍ୟନ୍ତ ପ୍ରୟୋଗ କଲେ ଗଛ ଶୀଘ୍ର ବଡ଼ ହୁଏ । ଗଛ ବଙ୍କା ହୋଇ ବଢ଼ିଲେ ତାହାକୁ ବାଉଁଶ ପୋତି ନଚେତ୍ କଟାକଟି କରି ସିଧା କରିବା ଆବଶ୍ୟକ । ଗଛରେ ରୋଗ କିମ୍ବା ପୋକ ଲାଗିଲେ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବା ବିଧେୟ । ନିମ୍ନରେ କେତେକ ବୃକ୍ଷର ବିଶଦ ବର୍ଣ୍ଣନା ଦିଆଗଲା ।

**ପଲାଶ** (*Butea monosperma*, Papilionaceae)

ଭାରତର ପ୍ରାଚୀନତମ ବୃକ୍ଷମାନଙ୍କ ମଧ୍ୟରେ ପଲାଶ ଅନ୍ୟତମ । ହର୍ଷ, କାଳିଦାସ, ଭବଭୂତିଙ୍କଠାରୁ ଆରମ୍ଭକରି ଆଧୁନିକ ଯୁଗର ପ୍ରତ୍ୟେକ କବିଙ୍କର କାବ୍ୟ କବିତାରେ ପଲାଶ ଫୁଲ ତାର ମନୋଲୋଭା ରଙ୍ଗ ଯୋଗୁଁ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରି ଆସିଛି । ଆକୁମାରୀ ହିମାଚଳ ପ୍ରତ୍ୟେକ ପ୍ରାନ୍ତରେ ଏହି ବୃକ୍ଷ ଦେଖାଯାଇଥାଏ । ସଂସ୍କୃତରେ ଏହାକୁ କିଂଶୁକ ଆଖ୍ୟା ଦିଆଯାଇଛି । ଗଛଗୁଡ଼ିକ ୧୫ ମିଟର ପର୍ଯ୍ୟନ୍ତ ଉଚ୍ଚରେ ବଢ଼ିଥାନ୍ତି । ଡାଳଗୁଡ଼ିକ ଅସଜଡ଼ ଓ



(ଚିତ୍ର ୨୮ ) ପଲାଶ

କାଣ୍ଡ ଆବୁଡ଼ାଖାବୁଡ଼ା । ବକଳ ପାଉଁଶିଆ ରଙ୍ଗ ଓ ବୃକ୍ଷର ପତ୍ରଗୁଡ଼ିକ ଗୋଲାକାର ଓ ତ୍ରିପକ୍ଷକ (trifoliate) । ନୂତନ ପତ୍ରଗୁଡ଼ିକ ସାମାନ୍ୟ ଲୋମଶ କିନ୍ତୁ ପୁରୁଣା ପତ୍ରଗୁଡ଼ିକ ଲୋମହୀନ । ଦୂରରୁ ପତ୍ରଗୁଡ଼ିକ ପାଉଁଶିଆ ଦେଖାଯାନ୍ତି । ଶୀତ ଦିନରେ ଗଛଗୁଡ଼ିକରୁ ପତ୍ର ଝଡ଼ିପଡ଼େ ଓ ବସନ୍ତ କାଳରେ ଫୁଲ ଫୁଟେ । ଫୁଲଗୁଡ଼ିକ ଏକ ଟାଣୁଆ ଅସୀମ ସ୍ତବକରେ ଆସେ । ଫୁଲରେ ପାଞ୍ଚଟି ପାଖୁଡ଼ା ଥାଏ । ପୁଂକେଶର ଚକ୍ର ମଝି ପାଖୁଡ଼ାରେ ଆବଦ୍ଧ ହୋଇଥାଏ । ଫୁଲଗୁଡ଼ିକ ଗାଢ଼ କମଳା ରଙ୍ଗ ଓ ଦୂରରୁ ସୁସ୍ପଷ୍ଟ ଓ ଗନ୍ଧହୀନ । ବିଲ ବନ ପ୍ରାନ୍ତରରେ ବଢ଼ିଥିବା ପୁଷ୍ପ ବିମଣ୍ଡିତ ପଲାଶ ତରୁଗୁଡ଼ିକ ଦୂରରୁ ଲେଲିହାନ ବହ୍ନିଶିଖା ପରି ପ୍ରତୀୟମାନ ହୋଇଥାନ୍ତି । ମଞ୍ଜି ଦ୍ୱାରା ନୂଆ ଗଛ ଲଗାଯାଏ । ପ୍ରତ୍ୟେକ ଫଳରେ ଗୋଟିଏ ମାତ୍ର ମଞ୍ଜି ଥାଏ । ବଡ଼ ବଡ଼ ଉଦ୍ୟାନରେ ପଲାଶକୁ ଏକ ପ୍ରତୀକ ବୃକ୍ଷରୂପେ ଲଗାଯାଇଥାଏ । ପ୍ରାକୃତିକ ଉଦ୍ୟାନର ଉଚ୍ଚ ସ୍ଥାନରେ ଏହାକୁ ଲଗାଯାଇପାରେ । ପ୍ରଶସ୍ତ ରାଜପଥର ଦୁଇପାର୍ଶ୍ୱରେ ଏହାକୁ ଲଗାଇଲେ ବସନ୍ତ କାଳରେ ରାସ୍ତାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଥାଏ । ଗଛଗୁଡ଼ିକ ସହଜରେ ବଢ଼ାଯାଇପାରେ ତେବେ ସାମୟିକ ଜଳଦାନ ଆବଶ୍ୟକ ହୋଇଥାଏ । ଛଅ ବର୍ଷରେ ଗଛରେ ଫୁଲ ଆସେ । ଲତା ପଲାଶ (*Butea superba*)ରେ ବସନ୍ତ କାଳରେ ଫୁଲ ଫୁଟିଥାଏ । ଫୁଲ ରଙ୍ଗ ଗାଢ଼ ଲାଲ । ଏହା ଏକ ବିରାଟକାୟ ଲତାରୂପେ ବଢୁଥିବାରୁ ସାଧାରଣ ଉଦ୍ୟାନରେ ଲଗାଯାଏ ନାହିଁ । ଉଦ୍ଭିଦ ଉଦ୍ୟାନ ତଥା ବଡ଼ ବଡ଼ ଉଦ୍ୟାନରେ ଏହାକୁ ବ୍ୟବହାର କରାଯିବା ଉଚିତ ।

**ସୁନାରୀ** (*Cassia fistula*, Ceasalpinae)- ଗ୍ରୀଷ୍ମ କାଳରେ କ୍ରମଃ ଶୀତଳ ମଧ୍ୟାହ୍ନରେ ସୁନା ରଙ୍ଗର ଦୀର୍ଘ ପୁଷ୍ପ ସ୍ତବକରେ ମଣ୍ଡିତ ସୁନାରୀ ଗଛ ଦେଖିଲେ ମନୁଷ୍ୟ ସବୁ ଦୁଃଖ ଭୁଲିଯାଏ । ଏହି ବୃକ୍ଷ ଏକ ଭାରତୀୟ ବୃକ୍ଷ । ଏହା ୧୦ମି. ପର୍ଯ୍ୟନ୍ତ ବଢ଼ିପାରେ । ନୂତନ ଗଛର ଡାଳ ଓ କାଣ୍ଡ ଚିକକଣ କିନ୍ତୁ ଗଛ ପୁରୁଣା ହୋଇଗଲେ ଗଛ ଗଣ୍ଡି ଆବୁଡ଼ାଖାବୁଡ଼ା ହୋଇଯାଏ । ଏହାର ପତ୍ରଗୁଡ଼ିକ ପକ୍ଷଳ । ପ୍ରତ୍ୟେକ ପକ୍ଷଳ ପତ୍ରରେ ୪ ରୁ ୮ ପର୍ଯ୍ୟନ୍ତ ଶାଖାପତ୍ର

ଥାଏ । ପତ୍ରଗୁଡ଼ିକ ବର୍ଚ୍ଛାକାର ଓ ସାମାନ୍ୟ ଲୋମଶ । ଶୀତଦିନରେ ଗଛରୁ ପତ୍ର ଝଡ଼ିଯାଏ ଓ ବସନ୍ତ ଋତୁର ଶେଷ ଆଡ଼କୁ ଗଛରେ ନୂଆ ପତ୍ର କଅଁଳିବାକୁ ଆରମ୍ଭ ହୁଏ ଓ ପରେ ପରେ ଦୋଳାୟମାନ ସ୍ତବକଗୁଡ଼ିକରେ ସୁନାରଙ୍ଗର ଫୁଲ ଫୁଟେ । ଉପର ଆଡୁ କ୍ରମଶଃ ତଳ ଆଡ଼କୁ ଫୁଲ ଫୁଟେ । ଗୋଟିଏ ସ୍ତବକ ୩୦ ରୁ ୪୫ ସେ.ମି. ଦୈର୍ଘ୍ୟ । ପ୍ରତ୍ୟେକ ଫୁଲରେ ୫ଟି ପାଖୁଡ଼ା ଥାଏ ଓ ଫୁଲ ମଝିରୁ ପୁଂକେଶର ଚକ୍ର ବାହ୍ୟରକୁ ବାହାରି ଥାଏ । ଫଳଗୁଡ଼ିକ ଗୋଲାକାର ଦଣ୍ଡପରି । ମଞ୍ଜିଦ୍ୱାରା ଗଛର ବଂଶ ବୃଦ୍ଧି କରାଯାଏ । ୬/୭ ବର୍ଷ ପରେ ଗଛରେ ଫୁଲ ଆସେ । ବର୍ଷା କାଳରେ ସବୁଜ ପତ୍ରଭରା ଗଛ ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ସୁନାରୀ ରାସ୍ତା କଡ଼ପାଇଁ ଏକ ସୌନ୍ଦର୍ଯ୍ୟବର୍ଦ୍ଧକ ବୃକ୍ଷ । ତେଣୁ ଏହାକୁ ରାସ୍ତାକଡ଼, ବଗିଚାର ବିଭିନ୍ନ ଛକ ସ୍ଥାନ କିମ୍ବା ପ୍ରତୀକ ଗଛରୂପେ ଲଗାଯିବା ଦରକାର । ନଦୀକୂଳ କିମ୍ବା ହ୍ରଦ ଧାରରେ ଏହାକୁ ଲଗାଇଲେ ସ୍ଥାନର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଥାଏ ।

**ବରୁଣ** (*Crataeva nurvala*,Capparidaceae)- ହିନ୍ଦୁ ଧର୍ମରେ ବରୁଣକୁ ଏକ ପବିତ୍ର ବୃକ୍ଷରୂପେ ଗ୍ରହଣ କରାଯାଇଥାଏ । ମହାଦେବଙ୍କ ସହିତ ଏହା ସଂଶ୍ଲିଷ୍ଟ । ଏହି ବୃକ୍ଷ ୬ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଶୀତ ଦିନରେ ଗଛରୁ ପତ୍ର ଝଡ଼ିଯାଏ ଓ ବସନ୍ତ କାଳରେ ଗଛ ଫୁଲରେ ମଣ୍ଡି ହୋଇଯାଏ । ପତ୍ରଗୁଡ଼ିକ ତ୍ରିପକ୍ଷକ ଏବଂ ସବୁଜ ରଙ୍ଗ । ଫୁଲଗୁଡ଼ିକ ଡାଳର ଅଗ୍ରଭାଗରେ ପେଛା ପେଛା ହୋଇ ଫୁଟିଥାନ୍ତି । ପ୍ରଥମାବସ୍ଥାରେ ଫୁଲଗୁଡ଼ିକ ସାମାନ୍ୟ ହରିତ ଦିଶନ୍ତି କିନ୍ତୁ ପରେ ଗୋଲାପିରୁ ହଳଦିଆକୁ ବଦଳିଯାଆନ୍ତି । ଫୁଲର ଏକ ପାର୍ଶ୍ୱରେ ସୁସେଣ୍ଡା ପରି ତିନୋଟି ପାଖୁଡ଼ା ଥାଏ ଏବଂ ଅପର ପଟରେ ବକ୍ର ପୁଂକେଶର ଗୁଡ଼ିକ ଶୋଭା ପାଉଥାଏ । ଫୁଲଗୁଡ଼ିକ ଝଡ଼ି ସାରିବା ପରେ ଗଛରେ ନୂଆ ପତ୍ର କଅଁଳେ । ଏହି ବୃକ୍ଷକୁ ଏକ ପ୍ରତୀକ ବୃକ୍ଷରୂପେ ବ୍ୟବହାର କରାଯିବା ଉଚିତ । ପ୍ରାକୃତିକ ଉଦ୍ୟାନରେ ଏହାକୁ ରୋପଣ କରାଯାଇପାରେ । ମଞ୍ଜିରୁ ଗଛ କରାଯାଏ । ଗଛରେ କମ୍ ଫଳ ଧରେ ।



(ଚିତ୍ର ୨୯) ସୁନାରୀ

**ପାଳଧୁଆ** ( *Erythrina indica*, Fabacae) ପାଳଧୁଆ ସା ଗହଳରେ ଏକ ସାଧାରଣ ବୃକ୍ଷ । ଏହି ବୃକ୍ଷ ୭/୮ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । କାଣ୍ଡ ପାଉଁଶିଆ ରଙ୍ଗ ଗୋଲାକାର ଏବଂ କଣ୍ଟାଯୁକ୍ତ । ଯୌଗିକ ପତ୍ରଗୁଡ଼ିକ



(ଚିତ୍ର - ୩୦) ପାଳଧୁଆ

ତ୍ରିପକ୍ଷକ, ଗୋଲାକାର ଏବଂ ଇଷତ୍ ହରିତ୍ ରଙ୍ଗ । ଡାଳ ଓ ମଞ୍ଜିରୁ ନୂଆ ଗଛ କରାଯାଇଥାଏ । ଗଛ ଲଗାଇବାର ଏକ ବର୍ଷରେ ଫୁଲ ଫୁଟେ । ବର୍ଷାଦିନେ ମଞ୍ଜି କିମ୍ବା ଡାଳ ଲଗାଇବା ଆବଶ୍ୟକ । ଶୀତଦିନ ଆରମ୍ଭରୁ ଗଛରୁ ପତ୍ର ଝଡ଼ିଯାଏ । ବସନ୍ତ ଆଗମନରେ ଥୁଣ୍ଟା ଗଛରେ ପେଣ୍ଡା ପେଣ୍ଡା ଫୁଲ ଆସେ । ପ୍ରତ୍ୟେକ ଫୁଲରେ ୫ଟି ପାଖୁଡ଼ା ଥାଏ । ଏଗୁଡିକ ଗାଢ଼ ରକ୍ତ ବର୍ଣ୍ଣ ଓ ଦେଖିବାକୁ ପଳାଶ ଫୁଲପରି । ପ୍ରାକୃତିକ ଉଦ୍ୟାନଗୁଡ଼ିକରେ ଏହାର ସୀମିତ ବ୍ୟବହାର କରାଯିବା ଉଚିତ ଓ ରାସ୍ତା କଡରୁ ସାମାନ୍ୟ ଦୂରରେ ଲଗାଯିବା ଦରକାର । ଉଚ୍ଚ ଢିପ

ସ୍ଥାନରେ ଏହି ଗଛ ଲଗାଇଲେ ଏହା ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ଗଛକୁ ଛୋଟ କରି ରଖିବା ପାଇଁ ଡାଳ କାଟିଦେବା ଉଚିତ ।

**ଆକାଶମଲ୍ଲି** (*Mellingtonia hortensis,* Bignoniaceae)- ଆକଶମଲ୍ଲି ଏକ ଚିରହରିତ ବୃକ୍ଷ । ସିଧାରେ ୧୫ମିଟର ପର୍ଯ୍ୟନ୍ତ ବଢ଼ିପାରେ । ଡାଳଗୁଡ଼ିକ ତଳକୁ ଝୁଲିଥାଏ । ଗଛର ଗଣ୍ଡି ହଳଦିଆ ବାଦାମି ଓ ପୁରୁଣା ଗଣ୍ଡିରେ ଫାଟ ଦେଖାଯାଏ । ଏହାର ପତ୍ରଗୁଡ଼ିକ ବହୁତ ସୁନ୍ଦର । ପତ୍ରଗୁଡ଼ିକ ଦ୍ୱିପକ୍ଷକ ବା ତ୍ରିପକ୍ଷକ । ପାର୍ଶ୍ୱ ପତ୍ରଗୁଡ଼ିକ ଅଣ୍ଡାକାର ଓ ପାଞ୍ଚ ଛଅ ସେ.ମି.



(ଚିତ୍ର ୩୧ ) ଆକାଶମଲ୍ଲୀ

ଦୈର୍ଘ୍ୟ । ଜାନୁଆରୀ ଏବଂ ମାର୍ଚ୍ଚମାସ ମଧ୍ୟରେ ଗଛରୁ ଅଳ୍ପ ପତ୍ର ଝଡ଼େ ଓ ଏପ୍ରିଲ ମାସ ବେଳକୁ ନୂଆପତ୍ର କଅଁଳେ । ଗଛରେ ଅକ୍ଟୋବର ମାସରେ ଫୁଲ ଫୁଟେ । ଫୁଲଗୁଡ଼ିକ ତୁରୀ ଆକାରର, ଧଳା ଓ ମେଞ୍ଚା ମେଞ୍ଚା ହୋଇ ତଳକୁ ଝୁଲିଥାଏ । ପାଖୁଡ଼ାଗୁଡ଼ିକ ଅଣ୍ଡାକୃତି, ଫୁଲ ମଝିରେ ପୁଂକେଶର ଚକ୍ର ବାହାରକୁ ବାହାରିଥାଏ । ମଞ୍ଜି ଓ ଗଛ ମୂଳରେ ବାହାରିଥିବା ଭୂସ୍ତାରିଦ୍ୱାରା ବଂଶ ବିସ୍ତାର କରାଯାଏ । ଅଧିକ ଚୌଡ଼ା ରାସ୍ତାକଡ଼ରେ ଏହି ଗଛ ଲଗାଯିବା ଉଚିତ । ଶରତ ଋତୁର ସନ୍ଧ୍ୟାରେ ଏହାର ମଧୁର ସୁବାସ ଚତୁର୍ଦ୍ଦିଗକୁ ସୁରଭିତ କରିଥାଏ ।

**ସିମୁଳି** (*Bombax malabaricum*, Bombaceae) - ଏହା ଏକ ବିରାଟକାୟ ବୃକ୍ଷ । ଗଛଗୁଡ଼ିକ ଖୁବ୍ ଶୀଘ୍ର ବଢ଼ିପାରେ । ଗଛର ଉଚ୍ଚତା ୨୦-୩୦ ମିଟର ଉଚ୍ଚ ହୁଏ । କାଣ୍ଡଗୁଡ଼ିକ କଣ୍ଟାଯୁକ୍ତ ଏବଂ ସାମାନ୍ୟ ପାଉଁଶିଆ ରଙ୍ଗ ।



(ଚିତ୍ର-୩୨) ସିମୁଳି

ଯୌଗିକ ପତ୍ରଗୁଡ଼ିକରେ ୪ ରୁ ୭ ପର୍ଯ୍ୟନ୍ତ ଉପପତ୍ର ଥାଏ ଓ ଏହା ଦେଖିବାକୁ ହାତ ପାପୁଲି ଓ ଖୋଲା ଆଙ୍ଗୁଳି ଭଳି । ଶୀତଦିନର ଆରମ୍ଭରେ ଗଛରୁ ପତ୍ର ଝଡ଼ିଯାଏ ଓ ବସନ୍ତ ସମୟରେ ଗଛରେ ଫୁଲ ଫୁଟେ । ଫୁଲଗୁଡ଼ିକ ଗାଢ଼ ରକ୍ତବର୍ଣ୍ଣ ଓ ପେଣ୍ଡା ପେଣ୍ଡା ହୋଇ ଫୁଟେ । ଗଛରେ ବେଳେ ବେଳେ ହଳଦିଆ ମିଶା ଧଳା ଫୁଲ ଫୁଟିବାର ଦେଖାଯାଏ । ମଞ୍ଜିରୁ ନୂଆଗଛ ହୁଏ । ଏହାର ଫଳରୁ ବାହାରୁଥିବା ତୁଳାରେ ଶେଯ, ତକିଆ ତିଆରି ହୁଏ । ବୃହଦାକାର ଉଦ୍ୟାନମାନଙ୍କରେ ଏହାକୁ ଏକ ପ୍ରତୀକ ଗଛରୂପେ ରୋପଣ କରାଯାଇପାରିବ । ଏହା ବ୍ୟତୀତ ବଡ଼ ବଡ଼ ପୋଖରୀର ଓ ହ୍ରଦମାନଙ୍କର ତୀରଦେଶରେ ଏହାକୁ ଲଗାଯିବା ଉଚିତ ।

**ଅଶୋକ** (*Saraca indica,* Leguminoceae)- ଅଶୋକ ଏକ ଭାରତୀୟ ବୃକ୍ଷ । ବିଭିନ୍ନ କାବ୍ୟ ଗ୍ରନ୍ଥରେ ଏହାର ବର୍ଣ୍ଣନା କରାଯାଇଛି । ଏହା ଏକ ଖର୍ବାକୃତି ବୃକ୍ଷ । ୬/୭ ମିଟର ପର୍ଯ୍ୟନ୍ତ ଉଚ୍ଚା ହୁଏ । ଗଛଗୁଡ଼ିକରେ ଲାଲ ବାଦାମୀ ରଙ୍ଗର ବକଳ ଥାଏ । ଏଗୁଡ଼ିକ ଔଷଧ ପାଇଁ ବ୍ୟବହାର କରାଯାଏ । ଡାଳଗୁଡ଼ିକ ଛତା ପରି ଚାରିଆଡ଼କୁ ବିସ୍ତାରିତ ହୋଇଥାଏ ଓ ଯୌଗିକ ପତ୍ରଗୁଡ଼ିକ ତଳକୁ ଝୁଲିଥାଏ । ଦୈର୍ଘ୍ୟ, ପ୍ରାୟ ୩୦ ସେ.ମି. ଓ ପ୍ରତ୍ୟେକ ଯୌଗିକ ପତ୍ରରେ ୪/୬ଟି ଯୁଗଳ ପତ୍ର ଥାଏ । ପ୍ରତ୍ୟେକ ପାର୍ଶ୍ୱପତ୍ରଗୁଡ଼ିକ ୧୫ ସେ.ମି. ଲମ୍ବା । ଚିକ୍କଣ ସବୁଜ ଓ ତରଙ୍ଗାୟିତ ଧାରଯୁକ୍ତ । ନୂଆପତ୍ର ତମ୍ବା ରଙ୍ଗର ଦିଶେ । ବସନ୍ତ କାଳରେ ଗଛରେ ଫୁଲ ଫୁଟେ । ଫୁଲଗୁଡ଼ିକ ପୁରୁଣା ଡାଳ, ଗଣ୍ଡି, ଶାଖା ପ୍ରଶାଖାରେ ଭର୍ତ୍ତି ହୋଇଯାଏ । କମଳା ରଙ୍ଗର ଫୁଲଗୁଡ଼ିକ ପେଣ୍ଡା ପେଣ୍ଡା ହୋଇ ଫୁଟେ । ମଞ୍ଜିରୁ ଗଛ ହୁଏ । ରାସ୍ତାର ଦୁଇପାର୍ଶ୍ୱ, ଲନର ମଧ୍ୟଭାଗ କିମ୍ବା ଏକ ପାର୍ଶ୍ୱରେ ଏହାକୁ ଲଗାଯିବା ଉଚିତ । ପ୍ରଶସ୍ତ ଅଗଣାମାନଙ୍କରେ ଏହାକୁ ଲଗାଇଲେ ଗୃହର ସୌନ୍ଦର୍ଯ୍ୟ ବୃଦ୍ଧି ହୋଇଥାଏ ।. ଅଶୋକ ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ ହୋଇଥିବାରୁ ବାତାୟନ ପାର୍ଶ୍ୱରେ ଏହାକୁ ଲଗାଯାଇପାରେ । ଏହି ପ୍ରଜାତିର *S.declinata* ଅଶୋକ ଠାରୁ ଛୋଟ ଓ ଧୀରେ ଧୀରେ ବଢ଼େ । କିନ୍ତୁ ଏହାର ଫୁଲଗୁଡ଼ିକ ବଡ଼ ବଡ଼ ପେଣ୍ଡାରେ ଫୁଟେ । (S.cauliflora)ରେ

ଫୁଲ ଫୁଟିବା ଆଗରୁ ପତ୍ରଗୁଡିକ ଝଡ଼ିଯାଏ ଏବଂ ଖୋଲା ସ୍ତବକରେ ଫୁଲ ଧରେ ।



(ଚିତ୍ର-୩୩) ଅଶୋକ

**କୃଷ୍ଣଚୂଡ଼ା** (*Delonix regia*, Leguminoceae) - ଆଧୁନିକ ସହର ଓ ନଗରମାନଙ୍କରେ କୃଷ୍ଣଚୂଡ଼ାର ରୋପଣ ଦିନକୁ ଦିନ ବୃଦ୍ଧି ପାଉଛି । ଏହି ଗଛ ଫୁଲ ଫୁଟିବା ସମୟରେ ତଥା ଫୁଲ ନ ଥିବା ଅବସ୍ଥାରେ ମଧ୍ୟ ସୁନ୍ଦର ଦିଶେ । ଗଛଗୁଡ଼ିକ ଗମ୍ବୁଜ ଆକାରରେ ୧୦ ମିଟର ପର୍ଯ୍ୟନ୍ତ ବଢ଼େ । ପତ୍ରଗୁଡ଼ିକ ପକ୍ଷଳ । ମଞ୍ଜିରୁ ନୂଆଗଛ କରାଯାଇଥାଏ । ଗଛ ଖୁବ୍ ଶୀଘ୍ର ବଢ଼େ ଓ ୪/୫ ବର୍ଷ ପରେ ଫୁଲ ଫୁଟେ । ଶୀତଦିନର ଶେଷ ଆଡ଼କୁ ଗଛରୁ ପତ୍ର ଝଡ଼େ ଓ ପତ୍ରଶୂନ୍ୟ ଗଛରେ ଖରାଦିନେ ନାଲି ଓ ଛିଟ ରଙ୍ଗର ଫୁଲ ଆସେ । ସାଧାରଣତଃ ଫୁଲର

ରଙ୍ଗ ଗାଢ଼ ଲାଲ ବା କମଳା ରଙ୍ଗ । ଫୁଲଗୁଡ଼ିକ ପେଣ୍ଡା ପେଣ୍ଡା ହୋଇ ଫୁଟେ । ଏହାର ଫଳଗୁଡ଼ିକ ୩୦/୩୫ ସେ.ମି. ଦୈର୍ଘ୍ୟ ହୁଏ । କୃଷ୍ଣଚୂଡ଼ାକୁ ରାସ୍ତାର ଦୁଇକଡ଼ରେ, ବଡ଼ ବଡ଼ ଲନ ମଝିରେ କିମ୍ବା ଉଚ୍ଚ ସ୍ଥାନମାନଙ୍କରେ ଲଗାଯିବା ଉଚିତ । ତେବେ ଏହାର ଚେର ବହୁତ ଦୁର୍ବଳ ହୋଇଥିବାରୁ ବେଳେ ବେଳେ ଗଛ ଉପୁଡ଼ିଯାଏ ।



(ଚିତ୍ର-୩୪) କୃଷ୍ଣଚୂଡ଼ା

**ମୁଚୁକୁନ୍ଦ** (*Pterospermum acerifolium*, Sterculiaceae) ମୁଚୁକୁନ୍ଦ ବା କନକଚମ୍ପା ଭାରତର ପୁରାତନ ବୃକ୍ଷମାନଙ୍କ ମଧ୍ୟରୁ ଅନ୍ୟତମ । ଏହା ୮/୧୦ ମିଟର ପର୍ଯ୍ୟନ୍ତ ବଢ଼େ । ପତ୍ରଗୁଡ଼ିକ ଗୋଲାକାର । ୨୫ ସେ.ମି. ଲମ୍ବା, ୧୮ ସେ.ମି. ଓସାର, ଟାଆଁସା ମୋଟା । ପତ୍ରଗୁଡ଼ିକର ଉପର ପଟ ସବୁଜ ଓ ତଳପଟ ପାଉଁଶିଆ ଧଳା । ନୂଆପତ୍ର ଓ ଡାଳଗୁଡ଼ିକ ଲୋମଶ କିନ୍ତୁ ପୁରୁଣା ଡାଳ ଓ ପତ୍ରରେ ଲୋମ ନଥାଏ । ବସନ୍ତ ଗ୍ରୀଷ୍ମ କାଳରେ ଗଛରେ କାହାଳୀ ଆକୃତିର ୧୫ ସେ.ମି. ଲମ୍ବାର ଫୁଲ ଫୁଟେ । ଏଥିରେ ପାଞ୍ଚଟି ମାଂସାଳ ମୋଟା ବୃନ୍ତି ଥାଏ । ସେଗୁଡ଼ିକ ଲୋମଶ ଓ ଟାଆଁସା । ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ । ଡାଳର ଅଗଆଡ଼କୁ ପତ୍ରର ପାର୍ଶ୍ୱରେ ୨/୩ଟି କରି ଫୁଲ ଫୁଟିଥାଏ । ମଞ୍ଜି ଦ୍ୱାରା ନୂଆଗଛ କରାଯାଏ । ରାଜପଥର ଦୁଇପାର୍ଶ୍ୱର, ପ୍ରାକୃତିକ ଉଦ୍ୟାନ ଓ ଗୃହ ଉଦ୍ୟାନଗୁଡ଼ିକରେ ଏହାକୁ ଲଗାଯିବା ଉଚିତ ।

**ନାଗେଶ୍ୱର** (*Mesua ferrea*, Gutiferae) ମନ୍ଦିର ଉଦ୍ୟାନଗୁଡ଼ିକରେ ନାଗେଶ୍ୱର ବୃକ୍ଷ ବେଶୀ ଦେଖିବାକୁ ମିଳେ । ଏହା ଗ୍ରୀଷ୍ମମଣ୍ଡଳୀୟ ବୃକ୍ଷ ଓ ପୁଷ୍ପଗୁଡ଼ିକ ସୁଗନ୍ଧଯୁକ୍ତ । ଗଛଗୁଡ଼ିକ ୧୫ ମିଟର ପର୍ଯ୍ୟନ୍ତ ବଢ଼ନ୍ତି ଓ ଶାଖାପ୍ରଶାଖା ମେଲାଇଥାନ୍ତି । ଗଛର ଡାଳ ଓ ଗଣ୍ଡିଗୁଡ଼ିକ ବାଦାମୀ ରଙ୍ଗ ଓ ଏହାର କାଠ ଖୁବ୍ ଟାଣ । ପତ୍ରଗୁଡ଼ିକ ଦେଖିବାକୁ ତେଜପତ୍ର ଭଳି ଓ ଚିକ୍କଣ ସବୁଜରଙ୍ଗ । ପତ୍ରଗୁଡ଼ିକ ଗଛରେ ଝୁଲିକରି ଥାଏ । ଗଛର ନୂଆପତ୍ରର ରଙ୍ଗ ଲାଲ ହୋଇଥାଏ । ବସନ୍ତ କାଳରେ ଗଛରେ ଫୁଲ ଫୁଟେ । ପ୍ରତ୍ୟେକ ଫୁଲରେ ୪ଟି ଧଳା ପାଖୁଡ଼ା ଓ ମଝିରେ ହଳଦିଆ ପୁଂକେଶର ଚକ୍ର ଥାଏ । ପୁଷ୍ପର ସୁଗନ୍ଧ ବହୁ ଦୂରକୁ ପ୍ରସାରିତ ହୋଇପାରେ । ମଞ୍ଜିରୁ ନୂଆଗଛ ହୁଏ । ବେଶୀ ବର୍ଷା ହେଉଥିବା ଅଞ୍ଚଳରେ ଏହି ଗଛ ଭଲ ବଢ଼ିପାରେ । ପ୍ରାକୃତିକ ଉଦ୍ୟାନଗୁଡ଼ିକରେ ତଥା ସଂଯୋଗକାରୀ ରାସ୍ତାର ଦୁଇପାର୍ଶ୍ୱରେ ନାଗେଶ୍ୱର ଲଗାଯିବା ଉଚିତ । ଫୁଲ ଶୁଖିବା ଅବସ୍ଥାରେ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ସୁଗନ୍ଧ ଯୁକ୍ତ ହୋଇ ରହିଥାଏ ।

**ଓଉ** (*Dillenia indica,* Dilleniaceae) - ଓଉଗଛ ସାଧାରଣତଃ ଏକ ଫଳଗଛ ରୂପେ ଉଦ୍ୟାନଗୁଡ଼ିକରେ ଲଗାଯାଇଥାଏ । କିନ୍ତୁ ଏହାର ପତ୍ର ଓ ପୁଷ୍ପ ମଧ୍ୟଦେଖିବାକୁ ବହୁତ ସୁନ୍ଦର । ସ୍ଥାନ ବିଶେଷରେ ଗଛଗୁଡ଼ିକ ୧୦/୧୫ ମିଟର ଉଚ୍ଚ ହୁଅନ୍ତି କିନ୍ତୁ କଟାକଟି କରି ଏହାକୁ ଛୋଟ ଆକାରରେ ବଢ଼ାଯାଇପାରେ । ଗଛରେ ତୀକ୍ଷ୍ଣ ସମବୃତ୍ତାଭାସ ପତ୍ରରେ ଶିରାପ୍ରଶିରାଗୁଡ଼ିକ ସ୍ପଷ୍ଟ ଦେଖାଯାଏ । ପତ୍ରଗୁଡ଼ିକ ସୌନ୍ଦର୍ଯ୍ୟଯୁକ୍ତ ହୋଇଥିବାରୁ ଏହାକୁ ଉଦ୍ୟାନର ରାସ୍ତାଧାରରେ କିମ୍ବା ଲନ ମଝିରେ ଲଗାଯାଇଥାଏ । ଏହା ବ୍ୟତୀତ ବର୍ଷାଦିନରେ ଗଛଗୁଡ଼ିକରେ ଧଳାରଙ୍ଗର ୨୦/୨୨ ସେ.ମି. ବ୍ୟାସାର୍ଦ୍ଧର ଫୁଲ ଫୁଟିଥାଏ । ପାଖୁଡ଼ାଗୁଡ଼ିକ ୫ଟି ମୋଟା ସବୁଜରଙ୍ଗର ବୃନ୍ତି ସହିତ ସଂଯୁକ୍ତ । ପାଖୁଡ଼ା ଝଡ଼ିଗଲା ପରେ ଏଗୁଡ଼ିକ ଫଳପରି ବଢ଼ିଥାନ୍ତି । ଏହାକୁ ଖଟା କରିବାରେ ବ୍ୟବହାର କରାଯାଏ । ଓଉ ମଞ୍ଜିରୁ ଗଛ ହୁଏ । ପ୍ରଚୁର ଜଳୀୟ ଅଂଶ ଥିବା ମାଟିରେ ଏହା ଭଲ ବଢ଼େ । ଉଦ୍ୟାନଗୁଡ଼ିକରେ ଏହି ଗଛକୁ ୨/୩ ମିଟର ସିଧାରେ ବଢ଼ାଇ ପରେ ଗଛକୁ ଗମ୍ବୁଜାକାର ଆକାରରେ ରଖିଲେ ଉଦ୍ୟାନ ଓ ଗୃହର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଥାଏ ।

**କାଠଚମ୍ପା** (Plumeria sp. Apocynaceae) - କାଠଚମ୍ପା ଏକ ଗ୍ରୀଷ୍ମମଣ୍ଡଳୀୟ ବୃକ୍ଷ । ଏହା ୭ମିଟର ପର୍ଯ୍ୟନ୍ତ ବଢ଼େ । ଡାଳଗୁଡ଼ିକ ଗୋଲାକାର ଓ ଏହାର ଅଗ୍ରଭାଗରେ ବର୍ଚ୍ଛାକାର ସବୁଜ ରଙ୍ଗର ପତ୍ର ଭର୍ତ୍ତି ହୋଇଥାଏ । ପତ୍ରରେ ଶିରାଗୁଡ଼ିକ ସୁସ୍ପଷ୍ଟ । ଶୀତଦିନର ଶେଷଭାଗରେ ଗଛରୁ ପତ୍ର ଝଡ଼ିଯାଏ ଓ ପରେ ପରେ ଗଛ ସୁବାସିତ ପୁଷ୍ପରେ ମଣ୍ଡି ହୋଇଯାଏ । ଫୁଲଗୁଡ଼ିକ କଢ଼ ଅବସ୍ଥାରେ ଛୋଟ ନାକଫୁଲ ପରି ଦିଶେ । ଡାଳ କଲମି ଦ୍ୱାରା ନୂଆଗଛ ସହଜରେ ଲଗାଯାଇପାରେ । ପ୍ରାକୃତିକ ଉଦ୍ୟାନମାନଙ୍କରେ ଏହାର ବହୁଳ ବ୍ୟବହାର କରାଯାଏ । ଶିକ୍ଷାନୁଷ୍ଠାନ ଓ ଆବାସୀକ ଉଦ୍ୟାନଗୁଡ଼ିକରେ ଏହାକୁ ଲଗାଯିବା ଦରକାର । ସହରର ନିର୍ଜନ ରାଜପଥର ଧାରରେ କାଠଚମ୍ପା ଲଗାଇଲେ ସଂଧ୍ୟଭ୍ରମଣକାରୀଙ୍କୁ ଏହା ଆମୋଦ ଦେଇଥାଏ । କାଠଚମ୍ପାର ବିଭିନ୍ନ ଜାତିମାନଙ୍କ ମଧ୍ୟରେ P. acutifolia ର ଫୁଲ ଧଳା, ପାଖୁଡ଼ା ଧାରଗୁଡ଼ିକ ହଳଦିଆ । ଫୁଲଗୁଡ଼ିକ ବିଶେଷ ସୁବାସଯୁକ୍ତ ଏବଂ ୮ ସେ.ମି. ଓସାର । ଏହାର



(ଚିତ୍ର-୩୬) କାଠଚମ୍ପା

ଅନ୍ୟାନ୍ୟ ପ୍ରଜାତିମାନଙ୍କ ମଧ୍ୟରେ *P. Lambertiana* ଏକ ଚିରହରିତ ବୃକ୍ଷ ଓ ପତ୍ରର ଅଗ୍ରଭାଗ ଗୋଲାକାର, ଫୁଲ ବେଶୀ ଧଳା । *P. rubra* ଲାଲ, *P. alba* ଧଳା ଓ *P. lutea* ରେ ଧଳାଫୁଲରେ ହଳଦିଆ ବେକ ଥିବା ଫୁଲ ଫୁଟେ ।

**ଚମ୍ପା** (*Michelia champaca,* Mangoliaceae) ଚମ୍ପା ଗ୍ରୀଷ୍ମମଣ୍ଡଳୀୟ ଉଦ୍ୟାନଗୁଡ଼ିକରେ ଏକ ପ୍ରାଧାନ ସୁଗନ୍ଧ ପୁଷ୍ପ ପରିପୂର୍ଣ୍ଣ ବୃକ୍ଷ । ଏହି ଚିରହରିତ ବୃକ୍ଷ ତ୍ରିଭୁଜାକାର ଆକୃତିରେ ବଢ଼େ । ପତ୍ର ଗୁଡ଼ିକ ବୃତ୍ତଭାସ ଆକୃତିର ଗଛଗୁଡ଼ିକ ୧୦ ମିଟର ଉଚ୍ଚ ହୁଅନ୍ତି । ବର୍ଷାଦିନରେ ଗଛରେ ପ୍ରଚୁର ଫୁଲ ଫୁଟେ । ଫୁଲର ପାଖୁଡ଼ାଗୁଡ଼ିକ ମୋଟା ଏବଂ ସୁଗନ୍ଧଯୁକ୍ତ । ସୁନା ହଳଦିଆ ରଙ୍ଗ ଏବଂ ଲହୁଣୀ ରଙ୍ଗର ଚମ୍ପାଫୁଲ ଦେଖିବାକୁ ମିଳେ । ମଞ୍ଜିଦ୍ୱାରା ନୂଆଗଛ କରାଯାଏ । ଛୋଟ ଗଛରେ ଶୀଘ୍ର ଫୁଲ ଫୁଟାଇବା ପାଇଁ ଯୋଡ଼କଲମ କରାଯାଇଥାଏ । ପ୍ରମୋଦ ଉଦ୍ୟାନଗୁଡ଼ିକରେ ଏଗୁଡ଼ିକର ଏକତ୍ର ରୋପଣ ସୁଶୀତଳ ଛାୟା ସୃଷ୍ଟି କରିଥାଏ । ଏହା ବ୍ୟତୀତ ଚମ୍ପାକୁ ଏକ ପ୍ରତୀକ ବୃକ୍ଷରୂପେ ମଧ୍ୟ ବ୍ୟବହାର କରାଯାଇପାରେ ।

**ପାଟଳି** (Largerstroemia Flos-reginae, Lythraceae)
ପାଟଳିବୃକ୍ଷ ୧୦ ମିଟର ପର୍ଯ୍ୟନ୍ତ ବଢ଼େ । ଗଛ ଗମ୍ବୁଜାକାର ସଦୃଶ । ପତ୍ର ଈଷତ୍ ହରିତ । ଗଣ୍ଡିଗୁଡ଼ିକ ବାଦାମୀ ରଙ୍ଗ ଓ କାଠ ଟାଣ । ଶୀତଦିନରେ ଗଛରୁ ପତ୍ର ଝଡ଼ି ବସନ୍ତ ଋତୁରେ ନୂଆପତ୍ର ଓ ଫୁଲ ଧରେ । ଫୁଲଗୁଡ଼ିକ ଗୋଲାପି ବାଇଗଣି ରଙ୍ଗର ଓ ଏକ ଅସୀମ ସ୍ତବକରେ ପେନ୍ଥା ପେନ୍ଥା ହୋଇ ଫୁଟେ । ଗଛଟି ଏକ ପିଜୁଳି ଗଛ ପରି ଦିଶେ । ଏହି ବୃକ୍ଷକୁ ରାଜପଥ ଧାରରେ କିମ୍ବା ଏକ ପ୍ରତୀକ ଗଛ ରୂପେ ବ୍ୟବହାର କରାଯିବା ଉଚିତ । ମଞ୍ଜି ଦ୍ୱାରା ନୂଆ ଗଛ କରାଯାଏ ।



(ଚିତ୍ର-୩୭) ପାଟଳି

ଫୁଲ ଶେଷରେ ଗଛରେ ଶୁଖିଲା ଫଳ ଭର୍ତ୍ତି ହୋଇଥାଏ । ଏଗୁଡ଼ିକ କୁତ୍ସିତ ପରିବେଶ ସୃଷ୍ଟି କରୁଥିବାରୁ ଏଗୁଡ଼ିକୁ ଛିଣ୍ଡାଇ ଫିଙ୍ଗିଦେବା ଉଚିତ । ଏହାର ଅନ୍ୟ ଏକ ଜାତି *L. thorelli* ରେ ବାଇଗଣି ରଙ୍ଗର ଛୋଟ ଛୋଟ ଫୁଲ ପେଣ୍ଡା ପେଣ୍ଡା ହୋଇ ଫୁଟେ ।

**କଦମ୍ବ** (*Nauclea cadamba*, Rubiaceae) - କଦମ୍ବ ବୃକ୍ଷଗୁଡ଼ିକ ଦୀର୍ଘକାୟ ଓ ସିଧା ବଢ଼ନ୍ତି । ଗଣ୍ଡିରୁ ଚାରିଆଡ଼କୁ ଡାଳ ବାହାରିଥାଏ । ପତ୍ରଗୁଡ଼ିକ ବଡ଼ ପିଚୁଳି ପତ୍ରପରି । ଶୀତଦିନରେ ଗଛରୁ ପତ୍ର ଝଡ଼େ । ବର୍ଷାଦିନେ ସବୁଜପତ୍ରଭରା ବୃକ୍ଷରେ ଗୋଲାକାର ଫୁଲ ଫୁଟେ । ପୁଂକେଶର ଚକ୍ରଗୁଡ଼ିକ ଫୁଲର ଆକର୍ଷଣୀୟ ଅଂଶ । ଫୁଲଗୁଡ଼ିକ ଈଷତ ହଳଦିଆ ଓ ସୁବାସିତ ଅଟେ । ଏକପ୍ରକାର ଖର୍ବାକୃତି କଦମ୍ବ ଜାତିକୁ କେଳିକଦମ୍ବ କୁହାଯାଏ । କଦମ୍ବ ବୃକ୍ଷ ଶ୍ରୀକୃଷ୍ଣଙ୍କ ଜୀବନ ସହିତ ସଂପୃକ୍ତ । ମଞ୍ଜିଦ୍ୱାରା ନୂଆ ଗଛ ହୁଏ । ଏହାକୁ ରାସ୍ତାକଡ଼ରେ ଲଗାଯିବା ଉଚିତ । ତେବେ ଏଗୁଡ଼ିକ ରସ୍ତାର ଦୁଇପାଖରେ ଯେପରି ସମଉଚ୍ଚତାରେ ବଢ଼ି ପାରିବେ ତାର ବ୍ୟବସ୍ଥା କରିବା ପ୍ରୟୋଜନ । ବନ ବଡ଼ ଲନ ମଝିରେ ଏହାକୁ ଲଗାଇଲେ ସୁନ୍ଦର ଦିଶେ । କଦମ୍ବ ଗଛ ଖୁବ୍ ଶୀଘ୍ର ବଢ଼େ ।



(ଚିତ୍ର-୩୮) କଦମ୍ବ

**ପରଶପିପ୍ଳୀ( *Thespesia populnea,* Malvaceae )**

ପରଶପିପ୍ଳୀକୁ ଭେଣ୍ଡିଗଛ ବା କପିଟୁନ୍ କୁହାଯାଏ । ଗଛଗୁଡ଼ିକ ୧୫ ମିଟର ପର୍ଯ୍ୟନ୍ତ ଗମ୍ବୁଜାକାରରେ ବଢ଼ିଥାନ୍ତି । ପତ୍ରଗୁଡ଼ିକ ହୃତ୍‌ପିଣ୍ଡ ଆକୃତିର ଏବଂ ଈଷତ ସବୁଜରଙ୍ଗ ଓ ୮ ସେ.ମି. ଦୈର୍ଘ୍ୟ । ମସୃଣ ପତ୍ରଗୁଡ଼ିକରେ ଶିରାପ୍ରଶିରାଗୁଡ଼ିକ



(ଚିତ୍ର-୩୯) ପରଶପିପ୍ଳୀ

ସ୍ପଷ୍ଟ ଦିଶେ । ପରଶପିପଳୀ ଏକ ଚିରହରିତ ବୃକ୍ଷ ଏବଂ ଏଥିରେ ବର୍ଷସାରା ଫୁଲ ଫୁଟେ । ମଞ୍ଜିରୁ ଗଛ ହୁଏ ଏବଂ ଖୁବ୍ ଶୀଘ୍ର ବଢ଼ିପାରେ । ଫୁଲଗୁଡ଼ିକ ଦେଖିବାକୁ ମନ୍ଦାର ପରି । ଫୁଟିବାର ପ୍ରଥମାବସ୍ଥାରେ ଏହା ହଳଦିଆ ଦିଶେ କିନ୍ତୁ ପରେ ନାଲିମାଟିଆ ରଙ୍ଗରେ ବଦଳି ହୋଇ ମଉଳି ଝଡ଼ିଯାଏ । ପ୍ରଶସ୍ତ ରାସ୍ତାର ଦୁଇପାର୍ଶ୍ୱ କିମ୍ବା ପ୍ରାକୃତିକ ଉଦ୍ୟାନଗୁଡ଼ିକରେ ଏହାକୁ ଲଗାଯାଇପାରେ ।

**ଟୁଲିପ ବୃକ୍ଷ** (*Spathodea campanulata*, Bignoniaceae)- ଟୁଲିପ ବୃକ୍ଷରେ ଲାଲ ଗାଢ଼ ରଙ୍ଗର ଫୁଲଗୁଡ଼ିକ ଶୀତ କାଳରେ ପେନ୍ଥା ପେନ୍ଥା ହୋଇ ଗଛର ଅଗ୍ରଭାଗରେ ଫୁଟି ଉପରମୁହାଁ ହୋଇ ରହିଥାଏ । ଫୁଲଗୁଡ଼ିକ ଫୁଟିବା ଅବସ୍ଥାରେ ଉପରକୁ ମୁହଁ କରୁଥିବାରୁ ଏହାକୁ ଟୁଲିପ ବୃକ୍ଷ କୁହାଯାଏ । ଗଛ ୧୫ ମିଟରରୁ ଅଧିକ ଉଚ୍ଚ ହୁଏ । ବର୍ଷାଦିନ ପୂର୍ବରୁ



(ଚିତ୍ର-୪୦) ଟୁଲିପ ବୃକ୍ଷ

ପତ୍ର ଝଡ଼ିଯାଏ । ଗାଢ଼ସବୁଜ ରଙ୍ଗର ପକ୍ଷଳ ପତ୍ର ମଧ୍ୟରେ ପୁଷ୍ପଗୁଡ଼ିକ ସ୍ପଷ୍ଟ ଓ ସୁନ୍ଦର ଦିଶେ । ମଞ୍ଜିରୁ ଗଛ ହୁଏ । ଶୀତ ଓ ବସନ୍ତକାଳ ବ୍ୟତୀତ ଖରା ଓ ବର୍ଷାକାଳରେ ମଧ୍ୟ କିଛି କିଛି ଫୁଲ ଫୁଟେ । ରାସ୍ତା କଡ଼ରେ ଲଗାଇବା ପାଇଁ ଏହା ଉପଯୁକ୍ତ ଅଟେ । ଉଚ୍ଚ ପାର୍ବତୀୟ ଅଂଚଳରେ ଏହା ଭଲ ଫୁଟେ ।

**ବିତାଙ୍ଗ** (*Kleinhovia, hospita,* Sterculiaceae) - ବିତାଙ୍ଗ ଏକ କ୍ଷୁଦ୍ର ଚିରହରିତ ବୃକ୍ଷ । ଏହା ୮ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ ଓ ଡାଳଗୁଡ଼ିକ ଚାରିପାର୍ଶ୍ୱକୁ ବଢ଼ିଥାଏ । ପତ୍ରଗୁଡ଼ିକ ଗୋଲାକାର ଓ ଶୀତଦିନେ ଗଛରୁ କିଛି କିଛି ପତ୍ର ଝଡ଼େ । ବର୍ଷାଦିନ ଆରମ୍ଭରେ ଡାଳ ଅଗରେ ଏକ ଅସୀମ ସ୍ତବକରେ ଗୋଲାପି ରଙ୍ଗର ମନୋହର ପୁଷ୍ପମାନ ଫୁଟେ । ଫୁଲ ପରେ ପେଛା ପେଛା ଫଳ ଗଛରେ ଝୁଲୁଥାଏ । ଗୁଟି ଓ ମଞ୍ଜିଦ୍ୱାରା ନୂଆଗଛ ହୁଏ । ଗଛଗୁଡ଼ିକ ଖୁବ୍ କମ୍ ସମୟରେ ବଢ଼ିପାରନ୍ତି । ବିରାଟ ଉଦ୍ୟାନଗୁଡ଼ିକରେ, ତଥା ରାସ୍ତାଧାରରେ ଏହାକୁ ଲଗାଯିବା ଉଚିତ ।

**ଜାକାରଣ୍ଡା** (*Jacaranda mimosaefolia,* Bignoniaceae) ଜାକାରଣ୍ଡା ଏକ ବ୍ରାଜିଲ ଦେଶୀୟ ବୃକ୍ଷ । ବର୍ତ୍ତମାନ ପୃଥିବୀର ଚାରିଆଡ଼େ ଏହାକୁ ରାଜପଥଧାରରେ ରୋପଣ କରାଯାଉଅଛି । ଗଛଗୁଡ଼ିକ ଝାମ୍ପୁରା ନ ହୋଇ ସିଧାଭାବେ ୧୫/୨୦ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । ଏହା ଏକ ଚିରହରିତ ବୃକ୍ଷ । ପତ୍ରଗୁଡ଼ିକ ଦେଖିବାକୁ ଫର୍ଣ୍ଣ ପତ୍ର ଭଳି ଓ ୩୦ ସେ.ମି. ଲମ୍ବା । ପକ୍ଷଳ ପତ୍ରଗୁଡ଼ିକରେ ୧୬ଟି ସମପାର୍ଶ୍ୱୀ ପକ୍ଷ ଥାଏ । ପ୍ରତ୍ୟେକ ପକ୍ଷରେ ୧୪ରୁ ୨୪ଟି ଉପପତ୍ର ଥାଏ । ଉପପତ୍ରଗୁଡ଼ିକ କ୍ଷୁଦ୍ର ଓ ଅଗ୍ରଭାଗ ସୂକ୍ଷ୍ମ । ଖରାଦିନ ଗଛରେ ପିରାମିଡ଼ ଆକୃତିର ଅସୀମ ସ୍ତବକରେ ୯୦ଟି ପର୍ଯ୍ୟନ୍ତ ସୌନ୍ଦର୍ଯ୍ୟଭରା ନୀଳରଙ୍ଗର ଫୁଲ ଫୁଟେ । ଫୁଲଗୁଡ଼ିକ ଘଣ୍ଟିପରି ଗଛରେ ଝୁଲୁଥାନ୍ତି । ବୃକ୍ଷର ସୌନ୍ଦର୍ଯ୍ୟ ବହୁଦୂରରୁ ଦେଖିହୁଏ । ମଞ୍ଜିର ତଥା ଅଧାପାକଳ ଡାଳରେ ଡାଳକଲମି କରି ନୂଆଗଛ କରାଯାଏ । ଡାକ୍ତରଖାନା ଏବଂ ପାର୍କର ସଂଯୋଗକାରୀ ରାସ୍ତାରେ ଏଗୁଡ଼ିକ ଲଗାଯିବା ଉଚିତ । ଉଦ୍ୟାନରେ ଭାରସାମ୍ୟ ରଖି ଏଗୁଡ଼ିକ ଲଗାଇଲେ ସୁନ୍ଦର ଦେଖାଯାଏ ।



(ଚିତ୍ର-୪୧) ଜାକାରଣ୍ଡା

**କିଜେଲିଆ** (*Kigelia pinnata*, Bignoniaceae) - କିଜେଲିଆ ଗଛଗୁଡ଼ିକର ବର୍ତ୍ତୁଳାକାର ଫଳଗୁଡ଼ିକ ଦେଖିବାକୁ ସୁନ୍ଦର । ଏହି ଗଛର କାଣ୍ଡଗୁଡ଼ିକ ଚାରିଆଡ଼େ ଶାଖାପ୍ରଶାଖା ମେଲି ପ୍ରାସାରିତ ହୋଇଥାନ୍ତି । ଗଛଗୁଡ଼ିକ ୧୦ରୁ ୧୨ ମିଟର ପର୍ଯ୍ୟନ୍ତ ଉଚ୍ଚ । ବସନ୍ତକାଳରେ ଗଛରେ ନଳୀ ଆକୃତିର ଫିକା ବାଇଗଣୀ ରଙ୍ଗର ଫୁଲ ଫୁଟି ତଳକୁ ଝୁଲିଥାଏ । ଫୁଲର ବୃନ୍ତ ୨ମିଟର ପର୍ଯ୍ୟନ୍ତ ଲମ୍ବା । ଫୁଲଗୁଡ଼ିକରେ ୪୦/୫୦ ସେ.ମି. ଲମ୍ବାର କାକୁଡ଼ି

ଆକୃତିର ଫଳ ଫଳେ । ମଞ୍ଜିରୁ ନୂଆଗଛ ହୁଏ ଏବଂ ଗଛ ଥଣ୍ଡା ସ୍ଥାନରେ ଭଲ ବଢ଼େ । କେନାଲ କୂଳ ରାସ୍ତା ଓ ହ୍ରଦ ପାର୍ଶ୍ୱବର୍ତ୍ତୀ ରାସ୍ତାର ଦୁଇପାର୍ଶ୍ୱରେ କିମ୍ବା ଏକ ପ୍ରତୀକ ଗଛରୂପେ ଏହାକୁ ଉଦ୍ୟାନରେ ଲଗାଯାଇ ପାରେ ।

**ରୁଦ୍ରାକ୍ଷ** (*Elaeocarpus ganitrus*, Eleocarpaceae) ରୁଦ୍ରାକ୍ଷ ଏକ ସୌନ୍ଦର୍ଯ୍ୟଯୁକ୍ତ ବୃକ୍ଷ । ଏହା ୧୦ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ ଓ ଗଛରେ ଦୀର୍ଘ ସ୍ତବକରେ ବସନ୍ତ ଋତୁରେ ଧଳା ଫୁଲ ଫୁଟେ । ମଞ୍ଜିରୁ ଗଛ କରାଯାଏ । ଏହାକୁ ଲନ ମଝି, ରାସ୍ତାକଡ଼ ଓ ବୃକ୍ଷୋଦ୍ୟାନଗୁଡ଼ିକରେ ଲଗାଯାଇପାରେ । ଏହାର ମଞ୍ଜିକୁ ମାଳକରି ସନ୍ନ୍ୟାସୀ ତଥା ଧାର୍ମିକ ଲୋକମାନେ ନାମ ଜପ କରନ୍ତି ।

**ନାଗଚମ୍ପା** (*Couroupita, guianensis*, Lecythidaceae) - ନାଗଚମ୍ପା ବୃକ୍ଷ ୧୫/୨୦ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । କାଣ୍ଡରୁ ଡାଳଗୁଡ଼ିକ ଚାରିଆଡ଼କୁ ପ୍ରସାରିତ ହୋଇଥାନ୍ତି । ଶୀତଦିନ ପୂର୍ବରୁ ଗଛଗୁଡ଼ିକରୁ ପତ୍ର ଝଡ଼ି ନୂଆପତ୍ର ଧରେ । ଏହି ସମୟରେ ବୃକ୍ଷ ରମଣୀୟ ଦିଶେ ।  ଗଛ ଗଣ୍ଡିରୁ ଲମ୍ବା ଲମ୍ବା ଡାଳ ବାହାରି ସେଥିରେ ଆକର୍ଷଣୀୟ ଓ କୌତୁହଳପ୍ରଦ ଫୁଲ ଫୁଟେ । ଫୁଲର ତଳପଟେ ଏକ ଥାଳି ଆକୃତିର ପାଖୁଡ଼ା ମଧ୍ୟରେ ସ୍ତ୍ରୀ କେଶର ଚକ୍ର ଥାଏ । ଉପର ପଟେ ଏକ ସାପ ଫଣା ପରି ପୁଂ କେଶର ଚକ୍ର ଶୋଭା ପାଉଥାଏ । ଫୁଲଗୁଡ଼ିକ ସୁଗନ୍ଧ ଓ ଗୋଲାପି ରଙ୍ଗଯୁକ୍ତ । ଫଳଗୁଡ଼ିକ ଛୋଟ ଛୋଟ ନଡ଼ିଆପରି ଏବଂ ଦୁର୍ଗନ୍ଧଯୁକ୍ତ । ଗଛମୂଳରୁ ବାହରୁଥିବା ଭୂସ୍ତାରୀ କିମ୍ବା ମଞ୍ଜି ଦ୍ୱାରା ନୂଆଗଛ କରାଯାଏ । ଫୁଲଗୁଡ଼ିକ ଦୂରକୁ ଦିଶୁ ନ ଥିବା ହେତୁ ଉଦ୍ୟାନରେ ଏହାର ସୀମିତ ବ୍ୟବହାର କରାଯାଇଥାଏ ।

**କୋଡ଼ିଆ** (*Cordia sebestena*, Boraginaceae) - କୋଡ଼ିଆ ଏକ ଖର୍ବକାୟ ବୃକ୍ଷ । ଏହାର ପତ୍ରଗୁଡ଼ିକ ଗୋଲାକାର, ଟାଆଁସା ଓ ୮ ସେ.ମି. ଦୈର୍ଘ୍ୟ ବିଶିଷ୍ଟ । ବର୍ଷାଋତୁ ପରେ ଡାଳ ଅଗରେ କମଳା ରଙ୍ଗର ପେଣ୍ଡା ପେଣ୍ଡା ଫୁଲ ଫୁଟେ । ଫୁଲଗୁଡ଼ିକ ଶୁଖିଲା ପରେ ଧଳା ରଙ୍ଗର ଫଳ ଧରେ । ମଞ୍ଜିରୁ

ନୂଆଗଛ କରାଯାଏ । ଗଛଗୁଡ଼ିକ କ୍ଷୁଦ୍ର ହୋଇଥିବାରୁ ଏହାକୁ ଲନ କିମ୍ବା ଛୋଟ ଉଦ୍ୟାନରେ ରାସ୍ତା କଡ଼ରେ ଲଗାଯାଇପାରେ । ଗଛଗୁଡ଼ିକ ଖୁବ୍ ଧୀରେ ଧୀରେ ବଢ଼େ ।



(ଚିତ୍ର-୪୩) କୋଡ଼ିଆ

**ସୁନାଝରୀ** (*Accacia ariculiformis*, Leguminoceae)

ସୁନାଝରୀ ଗଛଗୁଡ଼ିକ ୧୫ ମି ଉଚ୍ଚକୁ ବଢ଼ିପାରନ୍ତି । ପତ୍ରଗୁଡ଼ିକ ଦେଖିବାକୁ ଲମ୍ବା ଲମ୍ବା ତେଜପତ୍ର ଭଳି । ଏହି ଚିରହରିତ ବୃକ୍ଷର ଦୋଳାୟମାନ ଡାଳଗୁଡ଼ିକ ବହୁତ ରମଣୀୟ । ବସନ୍ତକାଳ ଓ ବର୍ଷାଦିନେ ଲମ୍ବା ଲମ୍ବା ସୁନାଖଡ଼ିକାପରି ଫୁଲ ଫୁଟେ । କ୍ଷୁଦ୍ର ଫୁଲଗୁଡ଼ିକ ଏକ ୭/୮ ସେ.ମି ସ୍ତବକରେ ସଜ୍ଜା ହୋଇ ରହିଥାଏ । ମଞ୍ଜିରୁ ଗଛହୁଏ । ରାସ୍ତାକଡ଼ ଗୃହ ସମ୍ମୁଖ

ଓ ଜଳାଧାର ନିକଟରେ ଲଗାଇଲେ ସୌନ୍ଦର୍ଯ୍ୟ ବିଶେଷ ବୃଦ୍ଧି ପାଏ । *A. dealbata, A. decarrens,* A. elata ପ୍ରଭୃତି ଅନ୍ୟ କେତେକ ସୁନାଝରି ବୃକ୍ଷ ରାସ୍ତାକଡ଼ରେ ଲଗାଯାଏ । ଏସବୁର ପୁଷ୍ପ ହଳଦିଆ ଅଟେ ।

**ଏମହରଷ୍ଟିଆ** (*Amherstia, nobilis,* Leguminoceae) - ଏମହରିଷ୍ଟିଆ ସୌନ୍ଦର୍ଯ୍ୟବର୍ଦ୍ଧକ ପ୍ରମୁଖ ବୃକ୍ଷମାନଙ୍କ ମଧ୍ୟରେ ଅନ୍ୟତମ । ଏହା ଏକ ମଧ୍ୟମ ଧରଣର ବୃକ୍ଷ । ୧୨ ମିଟର ପର୍ଯ୍ୟନ୍ତ ବଢ଼ିଥାଏ । ପତ୍ରଗୁଡ଼ିକ ଦେଖିବାକୁ ଅଶୋକ ପତ୍ରପରି । ନୂଆ ପତ୍ର ବାହାରିଲା ବେଳେ ତାମ୍ରରଙ୍ଗଯୁକ୍ତ ହୋଇଥିବାରୁ ବିଶେଷ ସୁନ୍ଦର ଦିଶନ୍ତି । ବସନ୍ତକାଳରେ ୫୦ ସେ.ମି.ରୁ ଅଧିକ ଲମ୍ବା ଦୋଳାୟମାନ ଅସୀମ ସ୍ତବକଗୁଡ଼ିକରେ ଗାଢ଼ ସିନ୍ଦୁର ରଙ୍ଗର ଫୁଲ ଫୁଟେ । ଗୁଟି ଓ ମଞ୍ଜି ଦ୍ୱାରା ନୂଆ ଗଛ କରାଯାଇପାରେ । ଏଗୁଡ଼ିକୁ ଏକ ପ୍ରତୀକ ଗଛରୂପେ କିମ୍ବା ରାସ୍ତା କଡ଼ରେ ଏହାକୁ ଲଗାଯାଇପାରେ । ସମୁଦ୍ରକୂଳିଆ ଅଞ୍ଚଳରେ ଏହା ଭଲ ବଢ଼େ ।

**କାଞ୍ଚନ** (*Bauhinia, sp.* Leguminosae) - କାଞ୍ଚନର ଅନେକ ଜାତି ଗୁଳ୍ମ ଆକାରର ବଢ଼ନ୍ତି କିନ୍ତୁ କେତେକ କ୍ଷୁଦ୍ର ବୃକ୍ଷ ଆକାରରେ ବଢ଼ି ସୌନ୍ଦର୍ଯ୍ୟଭରା ପୁଷ୍ପ ଧାରଣ କରନ୍ତି । କାଞ୍ଚନବୃକ୍ଷ ୬ମିଟର ପର୍ଯ୍ୟନ୍ତ ବଢ଼ିଥାଏ । ଗଛର ଡାଳଗୁଡ଼ିକ ଚାରିଆଡ଼କୁ ପ୍ରସାରିତ ହୋଇ ବଢ଼େ । ପତ୍ରଗୁଡ଼ିକ ଦିଫାଳିଆ ଓ ଗଛରେ ବର୍ଷା ଓ ବସନ୍ତ କାଳରେ ଫୁଲ ଫୁଟେ । ମଞ୍ଜିଦ୍ୱାରା ନୂଆଗଛ କରାଯାଏ । କାଞ୍ଚନ ଗଛକୁ ରାସ୍ତାଧାର, ବଡ଼ ବଡ଼ ଗୃହ ଉଦ୍ୟାନର ପ୍ରାଚୀର ପାର୍ଶ୍ୱରେ କିମ୍ବା ଏକ ପ୍ରତୀକ ଗଛ ରୂପେ ଲଗାଯାଏ । B. candid କାଞ୍ଚନଗଛର ଫୁଲ ଧଳା ଓ ସୁଗନ୍ଧଯୁକ୍ତ । B. alba ରେ ଧଳା ଫୁଲଫୁଟେ ଏବଂ B. purpurea ରେ ବାଇଗଣି ରଙ୍ଗର ଫୁଲ ଫୁଟେ । କିନ୍ତୁ ଖରାଦିନରେ B. variegata ରେ ହରରଙ୍ଗି ଏବଂ B.monodra ରେ ଗୋଲାପି ଫୁଲ ଫୁଟେ । ଶେଷ ଦୁଇ ପ୍ରଜାପତିର ଗଛରେ ଫୁଲ ଫୁଟିବା ଆଗରୁ ଅନେକ ପତ୍ର ଝଡ଼ିଯାଏ ।



(ଚିତ୍ର-୪୪) କଞ୍ଚନ

**ବଟଲ ବ୍ରସ** (*Callistemon lanceolatus*, Myrtaceae)- ବଟଲବ୍ରସ ବୃକ୍ଷଗୁଡ଼ିକ ଗୁଳ୍ମପରି ପରିଦୃଶ୍ୟମାନ ହୁଅନ୍ତି । ଏହାର ଡାଳ ଗୁଡ଼ିକ ଚାରିପାଖକୁ ଝୁଲିଥାଆନ୍ତି । ପତ୍ର ସରୁ ସରୁ ଘାସପତ୍ର ପରି ତଳକୁତଳ ସଜା ହୋଇ ରହିଥାଏ । ନୂଆ ଡାଳର ଅଗରେ ବୋତଲ ଧୂଆ ବ୍ରଶପରି ଗାଢ଼ ଲାଲରଙ୍ଗରେ ବିମଣ୍ଡିତ ଏକ କାଟକିନ୍‌ରେ ଫୁଲ ଆସେ । ଫୁଲଗୁଡ଼ିକର ପୁଂକେଶର ଚକ୍ର ତା'ର ସୌନ୍ଦର୍ଯ୍ୟ ବଢ଼ାଏ । ଗୁଟିଦ୍ୱାରା ନୂଆଗଛ କରାଯାଏ । କ୍ଷୁଦ୍ର ରାସ୍ତାର ଦୁଇକଡ଼ କିମ୍ୱା ପ୍ରାଚୀର ଧାରେ ଧାରେ ଏହି ବୃକ୍ଷ ଲଗାଯାଇ ପାରେ । ଗଛରେ ବର୍ଷକୁ ୨/୩ ମୁଥ ଫୁଲ ଆସେ । ଉତ୍ତର ଭାରତରେ ଏହି ବୃକ୍ଷଗୁଡ଼ିକ ଭଲ ବଢ଼େ । *Callistemon brachyandrus* ରେ ଗାଢ଼ ହଳଦିଆ

ରଙ୍ଗର ଫୁଲ ଫୁଟେ ଏବଂ ଏହା ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଲଗାଯାଇପାରେ । ଏହି ବୃକ୍ଷ ଦ୍ୱାରା ପରାଗ ରେଣୁ ପ୍ରଦୂଷଣ ହେବାର ସମ୍ଭାବନା ଥାଏ ।

**ପୁନାଙ୍ଗ** (*Calophyllum inophyllum,* Guttiferae)- ସମୁଦ୍ରକୂଳ ଉପକୂଳବର୍ତ୍ତୀ ଅଞ୍ଚଳରେ ପୁନାଙ୍ଗବୃକ୍ଷମାନ ବେଶୀ ଦେଖାଯାଏ । ଏହା ୧୦ ମିଟର ପର୍ଯ୍ୟନ୍ତ ବଢ଼େ । ଗଛର ଆକୃତି ଗମ୍ବୁଜାକାର ଏବଂ ଗଣ୍ଡି ଓ କାଣ୍ଡ ଗାଢ଼ ବାଁଦାମିରଙ୍ଗ । କଳାରଙ୍ଗର ଚେରଗୁଡ଼ିକ ଅଳ୍ପ ମାଟିତଳେ ମାଡ଼ିଥାଏ । ଗଛଗୁଡ଼ିକର ପତ୍ରଗାଢ଼ ସବୁଜ ପଣସପତ୍ରପରି ଦିଶେ କିନ୍ତୁ ଅଧିକ ମୋଟା ଓ ଚିକ୍କଣ । ଗ୍ରୀଷ୍ମ ଶେଷଆଡ଼କୁ ଗଛରେ ଧଳାରଙ୍ଗର ସୁବାସଯୁକ୍ତ ଫୁଲ ଏକ ଅସୀମ ସ୍ତବକରେ ଫୁଟେ । ଏଥିରେ ଗୋଲାକାର ଫଳ ଧରେ । ମଞ୍ଜିରୁ ନୂଆଗଛ ହୁଏ । ପ୍ରଶସ୍ତ ରାସ୍ତାଧାର କିମ୍ବା ବଡ଼ ବଡ଼ ଉଦ୍ୟାନର ଚତୁଃପାର୍ଶ୍ୱରେ ଏହାକୁ ଲଗାଯିବା ଉଚିତ । ଗଛକୁ କାଟି ଛୋଟ ଆକାରରେ ରଖିଲେ ବହୁତ ସୁନ୍ଦର ଦିଶେ । ଝଡ଼ରେ ଡାଳ ଭାଙ୍ଗି ଯାଏ । ମଞ୍ଜିରୁ ତେଲ ବାହାର କରି ବ୍ୟବହାର କରାଯାଏ ।

**ଲାଭେଣ୍ଡର ଚମ୍ପା** (*Canangium odoratum,* Anonaceae)- ଲାଭେଣ୍ଡର ଚମ୍ପା ବଗିଚାରେ ଖୁବ୍ କମ୍ ଦେଖାଯାଏ । ଗଛଗୁଡ଼ିକ ଚମ୍ପାଗଛ ପରି ବଢ଼ନ୍ତି । ଏଥିରେ ସୀତାଫଳର ଫୁଲ ପରି ସାମାନ୍ୟ ହଳଦିଆ ସବୁଜରଙ୍ଗର ବାସ୍ନାଭରା ଫୁଲ ଫୁଟେ । ପ୍ରବେଶଦ୍ୱାରର ଦୁଇ ପାଖରେ ଏହାକୁ ଲଗାଇଲେ ସୁନ୍ଦର ଦିଶେ । ମଞ୍ଜିରୁ ନୂଆ ଗଛ ହୁଏ ।

**କନକ ପଲାଶ** (*Cochlospermum gossypium,* Bixaceae)- କନକ ପଲାଶ ୬ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛର ଗଣ୍ଡି ଅଳ୍ପ ମୋଟ ଏବଂ ପାଉଁଶିଆ ରଙ୍ଗ । ପତ୍ରଗୁଡ଼ିକ ୩ ରୁ ୫ ଫାଳିଆ । ଫୁଲ ନ ଫୁଟିଥିଲା ବେଳେ ଗଛ ଅସୁନ୍ଦର ଦିଶେ । ଶୀତଦିନରେ ଗଛରୁ ପତ୍ର ଝଡ଼ିଯାଏ । ବସନ୍ତଋତୁ ଆରମ୍ଭରେ ନୂଆଡ଼ାଳ ଅଗରେ ସୁନା ରଙ୍ଗର ଫୁଲ ପେଣ୍ଡା ପେଣ୍ଡା ହୋଇ ଫୁଟେ । ଫୁଲ ଗୁଡ଼ିକର ବ୍ୟାସାର୍ଦ୍ଧ ୮ ସେ.ମି. । ମଞ୍ଜିରୁ ଗଛ କରାଯାଏ । ରାଜପଥର ଧାରରେ ଏହାକୁ ଲଗାଯିବା ଉଚିତ ।

**କଲଭିଲିଆ** (*Colvillea racemosa*, Leguminoseae)

କଲଭିଲିଆ ବୃକ୍ଷର କୃଷ୍ଣଚୂଡ଼ା ସହିତ ସାମଞ୍ଜସ୍ୟ ଅଛି । କାଣ୍ଡଗୁଡ଼ିକ ସାମାନ୍ୟ ଚିକ୍କଣ ଜଣାପଡ଼େ । ଦ୍ୱିପକ୍ଷକ ପତ୍ରଗୁଡ଼ିକ ଯୋଗୁଁ ବୃକ୍ଷ ସୌନ୍ଦର୍ଯ୍ୟମୟ ହୋଇଥାଏ । ସେପ୍ଟେମ୍ବର ମାସରେ ଲମ୍ବା ଲମ୍ବା ସ୍ତବକରେ କମଳାରଙ୍ଗର ଫୁଲ ଫୁଟେ । ମଞ୍ଜିରୁ ଗଛ କରାଯାଏ । ରାଜପଥ ଧାରରେ ଏହାକୁ ଲଗାଯିବା ଉଚିତ । ଓଡ଼ିଶାର ସମୁଦ୍ରକୂଳରେ ଏହା ଭଲ ବଢ଼ିପାରେ ନାହିଁ ।



(ଚିତ୍ର-୪୫) କଲଭିଲିଆ

**ମାଡ୍ରି** (*Gliricidia maculata,* Leguminosae) ଦକ୍ଷିଣ ଆମେରିକାର ଏହି କ୍ଷୁଦ୍ର ବୃକ୍ଷ ବା ବୃହତ ଗୁଳ୍ମକୁ ଆମ ଦେଶକୁ ଏକ ସବୁଜପତ୍ର ସାରବୃକ୍ଷ ରୂପେ ବ୍ୟବହାର ପାଇଁ ଅଣାଯାଇଥିଲା । କିନ୍ତୁ ଖରାଦିନରେ ଏହାର ରୂପଜ ସୌନ୍ଦର୍ଯ୍ୟ ବିଶେଷ ଭାବରେ ରମଣୀୟ ହୋଇଥିବାରୁ ଛୋଟ ଛୋଟ ରାସ୍ତାଧାରରେ ଏହି ଗଛକୁ ଲଗାଯାଉଛି । ସବୁଜ ରଙ୍ଗର ପକ୍ଷଳ ପତ୍ରଗୁଡ଼ିକ ଶୀତଦିନରେ ଝଡ଼ିଯିବା ପରେ ବସନ୍ତକାଳରେ ଗଛସାରା ଗୋଲାପୀରଙ୍ଗର ଫୁଲ ଫୁଟେ । ଡାଳର ବହୁ ଅଂଶ ଫୁଲରେ ଆଚ୍ଛାଦିତ ହୋଇଯାଉ ଥିବାରୁ ଏହା ବିଶେଷ ସୁନ୍ଦର ଦିଶେ । ମଞ୍ଜିରୁ ସହଜରେ ଗଛ ହୁଏ ।

**ତାମ୍ରଫଳା** (Peltophorum ferrugineum, Leguminosae)- ରାଜପଥ ଧାରରେ ଲଗାଯାଉଥିବା ବୃକ୍ଷମାନଙ୍କ ମଧରେ ତାମ୍ରଫଳା ଏକ ପ୍ରଧାନ ବୃକ୍ଷ । ଏହା ୧୦ ରୁ ୧୫ ମିଟର ପର୍ଯ୍ୟନ୍ତ ବଢ଼େ । ଛେଦନ ଦ୍ୱାରା ଗଛକୁ ଛୋଟ ଅବସ୍ଥାରେ ରଖାଯାଇପାରେ । ପକ୍ଷଳ ପତ୍ରଗୁଡ଼ିକ କୃଷ୍ଣଚୂଡ଼ାର ପତ୍ରର ଆକୃତିଭଳି; କିନ୍ତୁ ଗାଢ଼ ସବୁଜରଙ୍ଗ । କାଣ୍ଡଗୁଡ଼ିକ ଗାଢ଼ ବାଦାମିରଙ୍ଗ । ମଞ୍ଜିରୁ ନୂଆ ଗଛ ହୁଏ । ଖରାଦିନର ଆରମ୍ଭରୁ ବର୍ଷାଦିନର ମଧଭାଗ ପର୍ଯ୍ୟନ୍ତ ପିରାମିଡ୍ ଆକୃତିର ସ୍ତବକଗୁଡ଼ିକରେ ଗାଢ଼ ହଳଦିଆ ରଙ୍ଗର ଫୁଲ ଫୁଟେ । ଫୁଲ ଫୁଟିବା ଅବସ୍ଥାରେ ଗଛମୂଳରେ ଫୁଲ ଝଡ଼ି ଶେଯପରି ଦିଶେ । ଶୀତଦିନରେ ଗଛର ଅଗ୍ରଭାଗରେ ତାମ୍ରରଙ୍ଗର ଫଳ ଶୋଭାପାଏ । ରାଜପଥ ଧାରରୁ ଆରମ୍ଭ କରି କ୍ଷୁଦ୍ର କ୍ଷୁଦ୍ର ଉଦ୍ୟାନଗୁଡ଼ିକରେ ଏଗୁଡ଼ିକୁ ଲଗାଯାଇପାରେ । ଝଡ଼ ବତାସ ଦ୍ୱାରା ଏହା କ୍ଷତିଗ୍ରସ୍ତ ହୁଏନାହିଁ ।

**ଗୋଷ୍ପକମଳ** (*Gostavia augusta,* Myrtaceae)- ଗୋଷ୍ପକମଳ ଏକ କ୍ଷୁଦ୍ର ବୃକ୍ଷ । ପ୍ରାୟ ପାଞ୍ଚମିଟର ପର୍ଯ୍ୟନ୍ତ ବଢ଼େ । ପତ୍ରଗୁଡ଼ିକ ଗାଢ଼ ସବୁଜ ରଙ୍ଗ ଓ ମାଗ୍ନୋଲିଆ ପତ୍ରପରି । ମଞ୍ଜିରୁ ଗଛ କରାଯାଏ ଏବଂ ଗଛ ଧୀରେ ଧୀରେ ବଢ଼େ । ବର୍ଷାଦିନ ଆରମ୍ଭରେ ଫିକା ରଙ୍ଗର ପଦ୍ମଫୁଲ ଆକୃତିର ବଡ଼ ବଡ଼ ଫୁଲ ଫୁଟେ । ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ ଏବଂ ମଝି ଅଂଶରେ ପୁଂକେଶର ଚକ୍ରଗୁଡ଼ିକ ଏକତ୍ର ଶୋଭାପାଏ । କ୍ଷୁଦ୍ର ରାଜପଥ ଧାରରେ ଏଗୁଡ଼ିକ ଲଗାଇଲେ ରାସ୍ତାର ଶୋଭା ବଢ଼ିଥାଏ ।

**କୁରେଇ** (*Holarrhena antidysenterica*, Apocynaceae)- କୁରେଇ ଆମ ପ୍ରଦେଶର ଜଙ୍ଗଲରେ ବେଶୀ ଦେଖାଯାଏ । ଗଛର ଉଚ୍ଚତା ୮ ରୁ ୧୦ ମିଟର । ପତ୍ରଗୁଡ଼ିକ ବଡ଼ ବଡ଼ ପିଜୁଳି ପତ୍ରପରି । ଖରାଦିନରେ ଗଛରେ ପେଣ୍ଡା ପେଣ୍ଡା ଧଳା ସୁବାସିତ ଫୁଲ ଫୁଟେ । ଗଛ ବିଶେଷ ସୁନ୍ଦର ନ ହେଲେ ବି ଏହାର ସୁଗନ୍ଧ ଫୁଲ ଯୋଗୁ ଏହାର ଆଦର ବଢ଼ିଥାଏ । ରାସ୍ତାକଡ଼, ଛକ କିମ୍ବା ବଡ଼ ବଡ଼ ପାର୍କରେ ବସିବା ସ୍ଥାନରେ ଅଳ୍ପ ଦୂରରେ ଏହି ଗଛକୁ ଲଗାଇବା ଉଚିତ । ଗଛମୂଳରୁ ନୂଆଗଛ ବାହାରିଥାଏ । ଏହାକୁ ସଂଗ୍ରହ କରି କିମ୍ବା ମଞ୍ଜିରୁ ନୂଆଗଛ କରାଯାଏ । ଏହା ଏକ ଭେଷଜ ଉଦ୍ଭିଦ ।

**ଚାକୁଣ୍ଡା** (*Cassia* sp. Leguminosae)- ଆମ ରାଜ୍ୟରେ ବିଭିନ୍ନ ପ୍ରକାର ଚାକୁଣ୍ଡା ବୃକ୍ଷ ଦେଖାଯାଏ । ଏଗୁଡ଼ିକ ୫ ରୁ ୧୦ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । ପ୍ରତ୍ୟେକ ଚାକୁଣ୍ଡାର ଯୌଗିକ ପତ୍ରଗୁଡ଼ିକ ପକ୍ଷଳ । ଏହି ଜାତିର ଗଛଗୁଡ଼ିକ ମଞ୍ଜି ଦ୍ୱାରା ଲଗାଯାଇଥାଏ ଏବଂ ଏମାନେ ଶୀଘ୍ର ବଢ଼ିପାରନ୍ତି । ଅଧିକାଂଶ ଚାକୁଣ୍ଡା ଶୀତଦିନରେ ପତ୍ର ଝାଡ଼ନ୍ତି । ରାସ୍ତାଧାରରେ ଏହି ଗଛଗୁଡ଼ିକୁ ଲଗାଯିବା ଆବଶ୍ୟକ । ଚାକୁଣ୍ଡା ପ୍ରଜାତିରେ ସୁନାରୀ ଅନ୍ତର୍ଭୁକ୍ତ । ଅନ୍ୟାନ୍ୟ ସୌନ୍ଦର୍ଯ୍ୟମୟ ଚାକୁଣ୍ଡା ବୃକ୍ଷମାନଙ୍କ ମଧ୍ୟରେ Cassia grandris ରେ ବସନ୍ତକାଳରେ ଗୋଲାପ ରଙ୍ଗର ଫୁଲ ଫୁଟେ । Cassia marginata ରେ ଅଗଷ୍ଟମାସ ଏବଂ Cassia javanica ରେ ଖରାଦିନରେ ଫୁଲ ଫୁଟେ । ବୃକ୍ଷ ଉଦ୍ୟାନଗୁଡ଼ିକରେ ଏଗୁଡ଼ିକ ଏକାଠି ଲଗାଯାଏ । ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଅନେକ ଚାକୁଣ୍ଡାକୁ ଜାଳେଣୀ କାଠ ପାଇଁ ଲଗାଯାଇଥାଏ ।

**ନିମ** (*Azadirachta endica* Meliaceae)- ଆମ ଦେଶରେ ଅନେକ ସୌନ୍ଦର୍ଯ୍ୟବର୍ଦ୍ଧକ ନିମଜାତିର ଗଛ ଦେଖାଯାଏ । ଗଛଗୁଡ଼ିକ ଦେଖିବାକୁ ସୁନ୍ଦର । ପତ୍ରଗୁଡ଼ିକ ପକ୍ଷଳ । ବସନ୍ତ ତଥା ପହିଲି ଗ୍ରୀଷ୍ମଋତୁରେ ଧଳାରଙ୍ଗର ପେଣ୍ଡା ପେଣ୍ଡା ଫୁଲ ଗଛରେ ଫୁଟେ । Persian lilac ଏକ ନିମ୍ବ ଜାତିର ଗଛ । ଫୁଲ ନୀଳ ରଙ୍ଗ । ଏହାର ନାମ *Melia azadirach.*

**ଚିରହରିତ ବୃକ୍ଷ** (Evergreen foliage tree)- ପୁଷ୍ପଜ ସୌନ୍ଦର୍ଯ୍ୟ ପାଇଁ ଯେପରି ଅନେକ ଗଛ ଉଦ୍ୟାନମାନଙ୍କରେ ଲଗାଯାଏ, ସେହିପରି ପତ୍ରଜ ସୌନ୍ଦର୍ଯ୍ୟବର୍ଦ୍ଧକ ଅନେକ ଗଛ ଉଦ୍ୟାନମାନଙ୍କରେ ରୋପଣ କରାଯାଏ ।

ଚିରହରିତ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକ ସାଧାରଣତଃ ସବୁଜରଙ୍ଗର ପତ୍ରରେ ବିମଣ୍ଡିତ । ନିମ୍ନରେ କେତେକ ଚିରହରିତ ବୃକ୍ଷର ବର୍ଣ୍ଣନା ଦିଆଗଲା । ଏହି ଧରଣର ବୃକ୍ଷଗୁଡ଼ିକ ସାଧାରଣତଃ ସମୁଦ୍ରତଟ ରାସ୍ତା, ସ୍ୱାସ୍ଥ୍ୟନିବାସଗୁଡ଼ିକର ଚତୁଃପାର୍ଶ୍ୱ ଓ ସହରର ଓସାରିଆ ରାସ୍ତାର ଦୁଇପାର୍ଶ୍ୱରେ ଲଗାଯିବା ଉଚିତ ।

**ଛତାରି** (*Alstonia scholaris,* Apocynaceae)- ଛତାରି ଗଛର ପତ୍ରଗୁଡ଼ିକରେ ୭ଟି ଉପପତ୍ର ଥିବାରୁ ଏହାକୁ ସପ୍ତପର୍ଣ୍ଣୀ କୁହାଯାଏ । ଗଛଗୁଡ଼ିକ ୧୫ମିଟର ପର୍ଯ୍ୟନ୍ତ ବଢ଼ନ୍ତି ଓ ଡାଳଗୁଡ଼ିକ ଚାରିଆଡ଼କୁ ପ୍ରସାରିତ ହୋଇ ସର୍ବଦା ସବୁଜପତ୍ରରେ ଭରି ହୋଇଥାନ୍ତି । ପତ୍ରର ଉପରପଟ ଚିକ୍କଣ ଏବଂ ତଳପଟ ପାଉଁଶିଆ । ଫୁଲଗୁଡ଼ିକ ଇଷତ୍ ସବୁଜ ରଙ୍ଗ ଓ ସୁବାସଯୁକ୍ତ । ଉଦ୍ୟାନଗୁଡ଼ିକରେ ଏହାକୁ ପ୍ରତୀକ ବୃକ୍ଷ ରୂପେ କିମ୍ବା ରାସ୍ତାର ଦୁଇପାର୍ଶ୍ୱରେ ଲଗାଯାଇପାରେ । ଏହାଖୁବ୍ ଶୀଘ୍ର ବଢ଼ିପାରେ ।

**ଆରାକାରିଆ** (*Araucaria cooki,* Coniferae)- ଶୀତମଣ୍ଡଳର ଏହା ଏକ ଚିରହରିତ କୌତୂହଳପ୍ରଦ ବୃକ୍ଷ । ଗଛଗୁଡ଼ିକ ୨୫ ରୁ ୩୦ ମି. ପର୍ଯ୍ୟନ୍ତ ଉଚ୍ଚ ହୁଅନ୍ତି । ଗଛର ବଡ଼ ବଡ଼ ଯୌଗିକ ପତ୍ରଗୁଡ଼ିକ ଗୋଟିଏ ସ୍ଥାନରୁ ବୃତ୍ତାକାରରେ ଚାରିପଟକୁ ବାହାରିଥାଏ । ପୁରୁଣା ଗଛଗୁଡ଼ିକରେ ପତ୍ରଗୁଡ଼ିକ ୪/୫ ମିଟର ପର୍ଯ୍ୟନ୍ତ ଲମ୍ବା ହୋଇଥାନ୍ତି ଓ ଉପପତ୍ରଗୁଡ଼ିକ ଗୋଲାକାର । ମଞ୍ଜିରୁ ନୂଆଗଛ କରାଯାଏ । ଏହି ଗଛକୁ ସାଧାରଣତଃ ପ୍ରତୀକ ଗଛ ରୂପେ ବ୍ୟବହାର କରାଯାଏ । ଉର୍ବର ଓ ନିଗିଡ଼ା ମାଟିରେ ଏହାକୁ ଲଗାଯିବା ଉଚିତ । ପ୍ରଥମରୁ ଗଛକୁ ବାଉଁଶ ପୋତି ସିଧାରେ ରଖାଯାଏ । ପୁରୁଣା ଗଛଗୁଡ଼ିକର ଅଗ୍ରଭାଗ ଅଙ୍କାବଙ୍କା ହୋଇଥାଏ । ଗଛ ବଢ଼ିଲାବେଳେ ଗଛର ଅଗ୍ରଭାଗ ଯେପରି ନ ଭାଙ୍ଗେ ସେଥିପ୍ରତି ଦୃଷ୍ଟିଦେବାକୁ ହେବ । ଗୃହର ଅଭ୍ୟନ୍ତର ଓ ବାରଣ୍ଡା ସଜାଇବା ପାଇଁ ଏଗୁଡ଼ିକୁ କୁଣ୍ଡରେ ସାମୟିକ ଲଗାଯାଇପାରେ । କିନ୍ତୁ ବଗିଚା ଭିତର ଲନ୍ କିମ୍ବା ଗୃହ ସମ୍ମୁଖ ପ୍ରଶସ୍ତ ପଡ଼ିଆରେ ଏହାକୁ ଲଗାଯିବା ଉଚିତ । ଭଲ ମାଟିରେ ଏହି ଗଛ ୬୦/୭୦ ମିଟର ପର୍ଯ୍ୟନ୍ତ ବଢ଼ିବାର ଦେଖାଯାଏ । ଏହି ବୃକ୍ଷର ଅନ୍ୟାନ୍ୟ ଜାତି ହେଲା- *A. cunninghamii, A. bidwillii* । ଏଗୁଡ଼ିକ ସମତଳ ଅଞ୍ଚଳ ଅପେକ୍ଷା ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଭଲ ବଢ଼ିଥାନ୍ତି ।




(ଚିତ୍ର-୪୬) ଆରାକାରିଆ

**କର୍ପୂର** (*Cinnamomum camphora*. Lauraceae) କର୍ପୂର ଏକ କ୍ଷୁଦ୍ର ଚିରହରିତ ବୃକ୍ଷ । ଗଛଗୁଡ଼ିକ ପିରାମିଡ଼ ଭଳି ୫-୬ ମିଟର ପର୍ଯ୍ୟନ୍ତ ବଢ଼ିଥାନ୍ତି । ପତ୍ରଗୁଡ଼ିକ ବାଦାମି ସବୁଜ ରଙ୍ଗର ଓ ଦେଖିବାକୁ ଛୋଟ ଛୋଟ ତେଜପତ୍ରପରି । ଏଥିରୁ କର୍ପୂର ମିଳେ ଏବଂ ପାତନ ପ୍ରଣାଳୀରେ କର୍ପୂର ସଂଗ୍ରହ କରାଯାଇଥାଏ । ଗଛରେ ଧଳା ରଙ୍ଗର ଫୁଲ ଫୁଟେ କିନ୍ତୁ ସେଗୁଡ଼ିକ ବିଶେଷ ସୁନ୍ଦର ନୁହେଁ । ରାସ୍ତାର ଦୁଇ ଧାରିରେ ଏହାକୁ ଲଗାଯିବା ଉଚିତ । ଉଚ୍ଚପାର୍ବତୀୟ ଅଞ୍ଚଳରେ ଏହିଗଛ ଭଲବଢ଼େ । ଏଥିରେ ଟାପିଓରି କରାଯାଏ ।

**ଝାଉଁ** (*Casuarina equisetifolia*, Casurinaceae)- ଝାଉଁଗଛ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଭଲ ବଢ଼େ । ଏହାର ସରୁ ସରୁ ଚିରହରିତ ପତ୍ରଗୁଡ଼ିକ ବୃକ୍ଷର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି । ବଡ଼ ବଡ଼ ରାସ୍ତାକଡ଼ରେ ଓ ସମୁଦ୍ରକୂଳ ରାସ୍ତାରେ ଏହାକୁ ଲଗାଯାଇପାରେ । ଝାଉଁଗଛଗୁଡ଼ିକ ୪୦/୫୦ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । କିନ୍ତୁ ପ୍ରଥମାବସ୍ଥାରେ ଏଗୁଡ଼ିକ କଟାକଟି କରି ବିଭିନ୍ନ ଆକୃତିରେ ବଢ଼ା ଯାଇପାରେ । ମଞ୍ଜିରୁ ଚାରା ଉଠାରି ଗଛ କରାଯାଏ । ପବନର ଗତିରୋଧ କରିବା ପାଇଁ ଏହାକୁ ଲଗାଯାଇଥାଏ ।

**ସାଇପ୍ରସ** (Cupressus sempervirens, coniferae) ସାଇପ୍ରସ ଗଛଗୁଡ଼ିକ ସାଧାରଣତଃ ଶୀତମଣ୍ଡଳରେ ଲଗାଯାଇଥାଏ । ଉତ୍ତରଭାରତର ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ତଥା ଗ୍ରୀଷ୍ମନିବାସଗୁଡ଼ିକରେ ଏଗୁଡ଼ିକ ବେଶୀ ଦେଖାଯାଏ । ଗଛଗୁଡ଼ିକ ଖମ୍ବଭଳି ବଢ଼ି ଡାଳ ମେଲି ସବୁଜ ପତ୍ରରେ ବିମଣ୍ଡିତ ହୋଇଥାଏ । ମଞ୍ଜିରୁ ଗଛ କରାଯାଏ । ରାସ୍ତାର ଦୁଇଧାରରେ କିମ୍ବା ଗୃହର ସମ୍ମୁଖରେ ଧାଡ଼ି ଧାଡ଼ି କରି ଏହାକୁ ଲଗାଯାଇପାରେ । ଏହାର ଡାଳ ଓ ପତ୍ର ସଜ୍ଜା ଅତୀବ ରମଣୀୟ ।

**ପଣସ** (*Artocarpus intergrifolia*, Utricaceae)- ଆମ ଦେଶର ଚାରିଆଡ଼େ ପଣସଗଛ ଦେଖାଯାଇଥାଏ । ଏହାର ଅଣ୍ଡାକାର ଘନ ସବୁଜ ମୋଟା ପତ୍ର ଓ ଗମ୍ବୁଜାକାର ଆକୃତି ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ପଣସବୃକ୍ଷ ରାସ୍ତାର ଦୁଇପାଖରେ ଲଗାଯିବା ଦରକାର । ପଣସର ଅନ୍ୟ ଏକ

ଜାତି ଭ୍ରେଡ଼ଫୁଟ (A. incisa) ପଣସ ଅପେକ୍ଷା ଉଦ୍ୟାନଗୁଡ଼ିକରେ ବେଶୀ ବ୍ୟବହାର କରାଯିବା ଉଚିତ । କାରଣ ଏହା ଅପେକ୍ଷାକୃତ ଅଳ୍ପ ସ୍ଥାନରେ ବଢ଼ିପାରନ୍ତି । ଗଛ ମଞ୍ଜିରୁ ଗଛ ହୁଏ ।

**ଧଳା ପାଳଧୂଆ** (*Erythrina parcelli*, Leguminoceae)- ଗଛଗୁଡ଼ିକ ଠିକ୍ ପାଳଧୂଆ ଗଛ ପରି । କିନ୍ତୁ ପତ୍ରରେ ସବୁଜ ରଙ୍ଗ ସାଙ୍ଗକୁ ହଳଦିଆ ଦାଗ ଥାଏ । ଗଛରେ କମଳା ରଙ୍ଗର ଫୁଲ ଫୁଟେ । ରାସ୍ତାର ଦୁଇପାର୍ଶ୍ୱରେ ଏହାକୁ ଲଗାଯାଇପାରେ । ମଞ୍ଜି କିମ୍ବା ଡାଳକଲମୀ ଦ୍ୱାରା ଗଛ କରାଯାଏ ।

**ଇଉକାଲିପଟ୍‌ସ୍** (*Eucalyptus species*, Myrtaceae)- ଅଷ୍ଟ୍ରେଲିଆ ଦେଶୀୟ ଏହି ଗଛକୁ ଆଜିକାଲି ବିଭିନ୍ନ ସ୍ଥାନରେ ଲଗାଯାଉଅଛି । ଗଛଗୁଡ଼ିକର ଗଣ୍ଡି ଚିକ୍‌କଣ ଓ ପାଉଁଶିଆ ବାଦାମି ରଙ୍ଗ । ସିଧାରେ ଗଛ ୪୦ରୁ ୫୦ ମିଟର ପର୍ଯ୍ୟନ୍ତ ବଢ଼େ । ପତ୍ରଗୁଡ଼ିକ ଚିରହରିତ ଓ ସୁବାସଯୁକ୍ତ । ଗଛରେ ଧଳାରଙ୍ଗର ବହୁ କେଶରଯୁକ୍ତ ଫୁଲ ଫୁଟେ କିନ୍ତୁ ସେଗୁଡ଼ିକ ବିଶେଷ ସୁନ୍ଦର ନୁହେଁ । ପ୍ରଶସ୍ତ ରାଜପଥର ଦୁଇପାଖରେ ଏଗୁଡ଼ିକ ଲଗାଇଲେ ସୁନ୍ଦର ଦେଖାଯାଏ । ମଞ୍ଜିରୁ ଗଛ ହୁଏ । E. citriodora, E. alba, E. globulus, E. filicifolia, E. marginata ପ୍ରଭୃତି ଏହାର ବିଭିନ୍ନ କିସମ ।

**ଫର୍ଣ୍ଣ ଗଛ** (*Filicium decipiens*, Burseraceae)- ଗଛଗୁଡ଼ିକ ଫର୍ଣ୍ଣଜାତିର ନ ହେଲେ ବି ପତ୍ରଗୁଡ଼ିକ ଦେଖିବାକୁ ଫର୍ଣ୍ଣ ପତ୍ର ପରି । ଗମ୍ବୁଜାକାରରେ ଗଛଗୁଡ଼ିକ ଚାରିଆଡ଼କୁ ଶାଖା ପ୍ରଶାଖା ମେଲି ୧୫ ମିଟର ପର୍ଯ୍ୟନ୍ତ ବଢ଼େ ଓ ସବୁବେଳେ ଚିକ୍‌କର ସବୁଜ ରଙ୍ଗର ପତ୍ରରେ ମଣ୍ଡି ହୋଇଥାଏ । ଲନ୍ ମଝିରେ କିମ୍ବା ଘର ସଜାଇବା ପାଇଁ ଏଗୁଡ଼ିକ ବଡ଼ ବଡ଼ କୁଣ୍ଡରେ ଲଗାଯାଏ । ମଞ୍ଜିରୁ ଗଛ ହୁଏ ।

**ସିଲଭର ଓକ୍** (*Grivellea robusta*, Proteaceae)- ସିଲଭର ଓକ୍‌ର ପତ୍ରଗୁଡ଼ିକ ଫର୍ଣ୍ଣଗଛର ପତ୍ର ପରି । କିନ୍ତୁ ଏହାର ତଳପଟ ପାଉଁଶିଆ ଧଳା । ତେଣୁ ଦୂରରୁ ଗଛଗୁଡ଼ିକ ପାଉଁଶିଆ ଧଳା ଦିଶେ । ମଞ୍ଜିରୁ ଗଛ ହୁଏ ଓ ଗଛଗୁଡ଼ିକ ୧୫ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । ଶୀତଦିନର ଶେଷବେଳକୁ

ଗଛରେ ହଳଦିଆ ରଙ୍ଗର ଫୁଲ ଫୁଟେ । ଏଗୁଡ଼ିକୁ ରାସ୍ତାର ଦୁଇଧାରରେ ଓ ପବନ ରୋକିବା ପାଇଁ ଲଗାଯିବା ଉଚିତ ।

**ମହମବତୀ ବୃକ୍ଷ** (*Parmentiera cerifera*, Bignoniaceae)- ଏହି ବୃକ୍ଷର ଫଳଗୁଡ଼ିକ ମହମବତୀ ପରି । ଫଳ ଗୁଡ଼ିକ କାଣ୍ଡ ଓ ଛୋଟ ଛୋଟ ଡାଳରେ ଝୁଲିଥାନ୍ତି । ପତ୍ରଗୁଡ଼ିକ ଇଷତ୍ ସବୁଜ ଏବଂ ତ୍ରିପକ୍ଷ । ଗଛଗୁଡ଼ିକ କ୍ଷୁଦ୍ରାକାର । ଏଗୁଡ଼ିକୁ କଟାକଟିକରି ବିଭିନ୍ନ ଆକୃତିରେ ବଢ଼ାଯାଇପାରେ । ଡାଳକଲମୀ ଦ୍ୱାରା ନୂଆଗଛ କରାଯାଇଥାଏ ।

**ପାଇନ୍** (*Pinus longifolia*, Coniferae)- ପାଇନ୍ ଗଛଗୁଡ଼ିକ ୧୦୦୦ ରୁ ଅଧିକ ମିଟର ଉଚ୍ଚରେ ଥିବା ସ୍ଥାନମାନଙ୍କରେ ଲଗାଯାଇ ପାରିବ । ସମତଳ ଅଞ୍ଚଳରେ ଲଗାଇଲେ ଏଗୁଡ଼ିକ ଧୀରେ ଧୀରେ ବଢ଼ିଥାନ୍ତି ଓ ବେଶୀଦିନ ବଞ୍ଚିପାରନ୍ତି ନାହିଁ । ଗଛଗୁଡ଼ିକର ପତ୍ର ସୂଚୀପରି ଓ କାଣ୍ଡଗୁଡ଼ିକ ଆବୁଡ଼ା ଖାବୁଡ଼ା ଦିଶେ । ମଞ୍ଜିରୁ ଗଛ ହୁଏ । ଉଦ୍ୟାନଗୁଡ଼ିକରେ ଏହାର ରୋପଣ ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ ।

**ପୋଡ଼ୋକାରପସ୍** (*Podocarpus chinensis*, Coniferae)- ପୋଡ଼ୋକାରପସ୍ ଗଛଗୁଡ଼ିକର ପତ୍ର ସରୁ ଖଣ୍ଡାପରି ଓ ଚିରସବୁଜ । ଗଛ ଧୀରେ ଧୀରେ ବଢ଼େ ଓ ୧୦ ମିଟର ଉଚ୍ଚ ହୁଏ । ମଞ୍ଜିରୁ ଗଛ କରାଯାଏ । ପାଇନ୍ ଗଛ ସହିତ ଏହାର ଅନେକ ସାମଞ୍ଜସ୍ୟ ଅଛି ।

**ଜଳପତ୍ରୀ** (Putranjiva roxburghii, Euphorbiaceae)- ପତ୍ରବାହୀ ସୌନ୍ଦର୍ଯ୍ୟଯୁକ୍ତ ବୃକ୍ଷମାନଙ୍କ ମଧ୍ୟରେ ଏହା ଏକ ପ୍ରଧାନ ବୃକ୍ଷ । ଗମ୍ବୁଜାକାର ଆକୃତିରେ ଏହି ବୃକ୍ଷ ପାଞ୍ଚ ଛଅ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛଟି ଘନ ସବୁଜ ପତ୍ରରେ ବର୍ଷସାରା ଭର୍ତ୍ତି ହୋଇଥାଏ । ଡାଳଗୁଡ଼ିକ ତଳକୁ ଓହଳି ରହିଥାନ୍ତି । ରାସ୍ତାଧାର କେନାଲକୂଳ, ଲନ ମଝି କିମ୍ବା କାନ୍ଥ କଡ଼େ କଡ଼େ ଏଗୁଡ଼ିକୁ ଲଗାଯାଇପାରେ । ମଞ୍ଜିରୁ ଗଛ ହୁଏ ।

**କାଠ ବାଦାମଗଛ** (*Terminalia catapa* Combretaceae)- କାଠ ବାଦାମଗଛ ଗୁଡ଼ିକ ୧୫ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । ଗୋଲାକାର

ପତ୍ରଗୁଡ଼ିକର ଉପରପଟ ସବୁଜ ଓ ତଳପଟ ସାମାନ୍ୟ ଲାଲ ରଙ୍ଗ । ଗଛର ଗୋଟିଏ ସ୍ଥାନରୁ ବୃତ୍ତାକାରରେ ଚାରିଆଡ଼କୁ ଡାଳ ବାହାରିଥାଏ । ବଗିଚାରେ ପ୍ରତୀକ ଗଛରୂପେ ଏହାକୁ ଲଗାଯିବା ଉଚିତ । ମଞ୍ଜିରୁ ଗଛ ହୁଏ । ଏହାର ଫଳର ଶସକୁ ଚିନାବାଦାମ ପରି ଖାଇହୁଏ ।

**ମହୁଲ** (*Bassia latifolia*, Sapotaceae )- ମହୁଲ ଆମ ଓଡ଼ିଶାର ଜଙ୍ଗଲରେ ଚାରିଆଡ଼େ ଦେଖାଯାଏ । ଗଛଗୁଡ଼ିକର ଆକୃତି ବିଶେଷ ସୁନ୍ଦର । ଏଗୁଡ଼ିକୁ ରାସ୍ତାକଡ଼ରେ ଲଗାଯାଇପାରେ । ମଞ୍ଜିରୁ ଗଛ କରାଯାଏ । ମଞ୍ଜିରୁ ଖାଇବାତେଲ ବାହାର କରିହୁଏ ।

**ଡିବିଡିବି** (*Caesalpinia coriaria*, Leguminoceae)- ଗଛଗୁଡ଼ିକ ଖର୍ବାକୃତି ଓ ଦେଖିବାକୁ ତେନ୍ତୁଳି ଗଛ ପରି । ବର୍ଷସାରା ସବୁଜ ପତ୍ରରେ ଭରପୂର ହୋଇଥାଏ ଓ ବସନ୍ତକାଳରେ ସୁବାସିତ ଗୋଲାକାର ଧଳାଫୁଲ ଫୁଟେ । ମଞ୍ଜିରୁ ଗଛ ହୁଏ । ଛୋଟ ଛୋଟ ରାସ୍ତାର ଦୁଇଧାରରେ ଏହାକୁ ଲଗାଯାଇ ପାରିବ ।

**କେନ୍ଦୁ** (*Diospyros embryopteris*, Ebenaceae)- କେନ୍ଦୁଗଛଗୁଡ଼ିକ ଖର୍ବାକୃତି । ନୂଆ ପତ୍ର କଅଁଳିଲା ବେଳେ ଲାଲ ରଙ୍ଗରେ ମଣ୍ଡି ହୋଇଥାଏ । ରାସ୍ତାକଡ଼ରେ ଏଗୁଡ଼ିକ ଲଗାଯିବା ଦରକାର । ମଞ୍ଜିରୁ ଗଛ ହୁଏ । ଫଳ ଖାଇହୁଏ ।

**ବର** (Ficus sps. Urticaceae)- ସାଧାରଣ ବରଗଛ (*Ficus bengalensis*) ଓସାରିଆ ରାଜପଥ ରାସ୍ତାକଡ଼ରେ ଲଗାଯିବା ଦରକାର । କିନ୍ତୁ ଭାରତୀୟ ରବରଗଛ (*F.elastica*) ରାସ୍ତାଧାର କିମ୍ବା ଲନ ମଝିରେ ଲଗାଯିବା ଦରକାର । ଏହାକୁ କୁଣ୍ଡରେ ଲଗାଯାଇ ଗୃହ ସଜାଇବାରେ ବ୍ୟବହାର କରାଯାଏ । ଅଶ୍ୱତ୍ଥ ଗଛ (*F.religiosa*) ଓସାରିଆ ରାଜପଥ କଡ଼ରେ ଲଗାଇଲେ ସୁନ୍ଦର ଦିଶେ ଓ ଛାୟା ପ୍ରଦାନରେ ସହାୟକ ହୋଇଥାଏ । ଗୋକର୍ଣ୍ଣ ବଟର (F. Krishnae) ପତ୍ରଗୁଡ଼ିକ ଦେଖିବାକୁ ଗୋରୁ କାନ ପରି ଓ ସୁନ୍ଦର । ଡିମ୍ବିର (F.carica) ଏକ ଫଳଗଛ । F. glummarata କୁ ରାସ୍ତାକଡ଼ରେ ଲଗାଯାଇ ପାରିବ । ଏହା ଜଙ୍ଗଲ ଡିମିରି ।

॥ ଦଶମ ପରିଛେଦ ॥

# ଗୁଳ୍ମ

## (Shrub)

ଗୁଳ୍ମଜାତୀୟ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକ ବଗିଚାର ଋତୁଜ ପୁଷ୍ପ ଓ ବୃକ୍ଷମାନଙ୍କ ମଧ୍ୟରେ ଭାରସାମ୍ୟ ରକ୍ଷାକରିଥାନ୍ତି । ଗୁଳ୍ମମାନଙ୍କର ଆବେଷ୍ଟନୀ ଉଦ୍ୟାନର ସୌନ୍ଦର୍ଯ୍ୟକୁ ପରିସ୍ଫୁଟ କରିଥାଏ । ପ୍ରକୃତ ଗୁଳ୍ମ ବ୍ୟତୀତ କେତେକ ବହୁ ବାର୍ଷିକ ଶାକୀୟ ଉଦ୍ଭିଦକୁ ଗୁଳ୍ମ ରୂପେ ବ୍ୟବହାର କରାଯାଇଥାଏ । ଏଗୁଡ଼ିକ ବହୁବାର୍ଷିକ ଉଦ୍ଭିଦ ଅଟନ୍ତି । ଗୁଳ୍ମଗୁଡ଼ିକର ଶ୍ରେଣୀବିଭାଗ ବିଭିନ୍ନ ଦୃଷ୍ଟିକୋଣରୁ କରାଯାଇଥାଏ । ଯଥା ପୁଷ୍ପବାହୀ(Flowofinar), ଚିରହରିତ (Ever-green) ଓ ଋତୁପାତୀ (deciduous) । ସେହିପରି ଗୁଳ୍ମମାନଙ୍କୁ ସେମାନଙ୍କ ଫୁଲଫୁଟିବାର ସମୟ ଏବଂ ଉଚ୍ଚତା ଅନୁସାରେ ମଧ୍ୟ ବିଭିନ୍ନ ଗୋଷ୍ଠୀଭୁକ୍ତ କରାଯାଇଥାଏ । ମଞ୍ଜି, ଡାଳକଲମି ଏବଂ ଗୁଟିଦ୍ୱାରା ଗୁଳ୍ମଗୁଡ଼ିକର ବଂଶବିସ୍ତାର କରାଯାଇଥାଏ । କେତେକ କ୍ଷେତ୍ରରେ ଯୋଡ଼କଲମି ମଧ୍ୟ ବ୍ୟବହାର କରାଯାଏ । ଗୁଳ୍ମର ମଞ୍ଜିଗୁଡ଼ିକୁ ମଞ୍ଜିପଟାଳି କିମ୍ବା ପଲିଥିନ୍ ପାକେଟରେ ଲଗାଯାଇ ଚାରା ଉତୁରାଯାଏ ଓ ବର୍ଷାଋତୁରେ ଲଗାଯାଏ । ବଗିଚାର ଉନ୍ମୁକ୍ତ ସ୍ଥାନରେ କିମ୍ବା କମ୍ ଛାଇ ହେଉଥିବା ସ୍ଥାନମାନଙ୍କରେ ଗୁଳ୍ମ ଗୁଡ଼ିକୁ ଲଗାଯାଏ । ଏହା ବ୍ୟତୀତ ଅନେକ ଗୁଳ୍ମକୁ କୁଣ୍ଡରେ ଲଗାଯାଇଥାଏ । ଅନେକ ଗୁଳ୍ମ ଲତାପରି ବଢୁଥିବାରୁ ସେଗୁଡ଼ିକୁ ବିଭିନ୍ନ ଆଶ୍ରୟ ଦିଆଯାଇ ଲତାପରି ବ୍ୟବହାର କରାଯାଏ । କେତେକ ଗୁଳ୍ମକୁ ପ୍ରତୀକ ଉଦ୍ଭିଦ (Specimen plant) ରୂପେ ବଗିଚାରେ ଲଗାଯାଏ । ସେହିପରି ଗୁଳ୍ମମାନଙ୍କର ଏକତ୍ର ରୋପଣ କରି ବଗିଚାର ସୌନ୍ଦର୍ଯ୍ୟବୃଦ୍ଧି କରାଯାଇଥାଏ । ପୁଷ୍ପର ସୁଗନ୍ଧ ଦୃଷ୍ଟିକୋଣରୁ କେତେକ ଗୁଳ୍ମ ବଗିଚାରେ ଲଗାଯାଇଥାଏ । ଗୁଳ୍ମଗୁଡ଼ିକ ଯେ କେବଳ ମନୁଷ୍ୟର ମାନସିକ ରୁଚିର ସନ୍ତୋଷ ପାଇଁ ସୌନ୍ଦର୍ଯ୍ୟ ପରିପ୍ରକାଶ କରନ୍ତି ତାହାନୁହେଁ, କେତେକ ଗୁଳ୍ମ ମଧ୍ୟ ଔଷଧ

ତିଆରି ପାଇଁ ଚାଷ କରାଯାଇଥାଏ । ଗୁଳ୍ମଗୁଡ଼ିକର ପ୍ରକୃତ ଅଭିବୃଦ୍ଧି ପାଇଁ ଉପଯୁକ୍ତ ସ୍ଥାନରେ ଲଗାଯିବା ଉଚିତ । ଗୁଳ୍ମ ଦଶ ଫୁଟରୁ କମ୍ ଉଚ୍ଚ ହୁଏ । ଏହାର ମୂଳରୁ ଅନେକ କାଣ୍ଡ ବାହାରିଥାଏ ଓ ଏହାର ଉପରିଭାଗ ବୃକ୍ଷପରି ଏକ ନିର୍ଦ୍ଦିଷ୍ଟ ଆକାର ହୋଇ ନଥାଏ । ନିମ୍ନରେ କେତେକ ସୌନ୍ଦର୍ଯ୍ୟବର୍ଦ୍ଧକ ଗୁଳ୍ମର ବର୍ଣ୍ଣନା ଦିଆଗଲା ।

**ହେନା** (*Cestrum nocturnum*, Solanaceae)- ହେନା ଆମ ଉଦ୍ୟାନର ଏକ ପ୍ରଧାନ ସୁଗନ୍ଧ ପୁଷ୍ପପୂର୍ଣ୍ଣ ଗୁଳ୍ମ । ଏହା ୩/୪ ମିଟର ଉଚ୍ଚକୁ ବଢ଼ିପାରେ । ପତ୍ରଗୁଡ଼ିକ ବର୍ଚ୍ଛାକାର ଓ ଫିକା ସବୁଜ ରଙ୍ଗ । ବର୍ଷକରେ ୨/୩ ମୁଠ ଫୁଲ ଖରା, ଶୀତ ଓ ବସନ୍ତକାଳରେ ଫୁଟିଥାଏ । ଫୁଲଗୁଡ଼ିକ କ୍ଷୁଦ୍ରନଳୀ ପରି ଓ ହଳଦିଆ ସବୁଜ ରଙ୍ଗର । ଦିନସାରା ଫୁଲଗୁଡ଼ିକର ସୁବାସ ନଥାଏ କିନ୍ତୁ ସଂଧ୍ୟା ହେଲେ ସୁବାସରେ ମହକାଇଦିଏ । ତେଣୁ ଏହି ଗୁଳ୍ମକୁ ରାତ୍ରିର ରାଣୀ (Night Queen) ବୋଲି କୁହାଯାଏ । ରାତ୍ରିରେ ଫୁଟିଥିବା ଫୁଲଗୁଡ଼ିକ ସକାଳକୁ ଝଡ଼ିପଡ଼ନ୍ତି । ନିଗିଡ଼ା ବାଲିଆ ମାଟିରେ ଗଛ ଭଲ ବଢ଼େ । ସାମାନ୍ୟ ଛାଇ ସ୍ଥାନରେ ମଧ୍ୟ ଗଛ ଭଲ ବଢ଼ିପାରେ । ପ୍ରତିବର୍ଷ ବର୍ଷା ଦିନରେ ଏହାର ଡାଳକୁ କାଟିଦେବା ଉଚିତ । ଝରକା ପାଖ କିମ୍ବା ପୋର୍ଟିକୋ ପାଖରେ ଏହାକୁ ଲଗାଯିବା ଆବଶ୍ୟକ । ଏହି ଗଛରେ ବେଳେ ବେଳେ ପରାଶ୍ରୟୀ ଉଦ୍ଭିଦ କସ୍‌କୁଟା ଲାଗିଥାନ୍ତି । କସ୍‌କୁଟା ଲାଗିଥିବା ଡାଳକୁ ହାଣିଦେବା ଉଚିତ । ଏହି ବର୍ଗର ଦିବସଗନ୍ଧା (*Cestrum diurnum*) ୨ ରୁ ୩ ମିଟର ଉଚ୍ଚକୁ ବଢ଼େ । ଏହାର ଫୁଲଗୁଡ଼ିକ ହେନାର ଫୁଲ ଭଳି । ନଭେମ୍ବର ମାସରେ ଫୁଲ ଫୁଟେ ଓ ଫୁଲଗୁଡ଼ିକ ଦିନବେଳେ ସୁବାସ ବିତରଣ କରେ । ହେନାର ମୂଳରେ ପାଣି ଜମିଲେ ଗଛ ମରିଯାଏ ।

**ସେରବେରା** (*Cerbera fruiticosa*, Apocynanceae) ଏହା ଟଗର ଜାତୀୟ ଗଛ । ଏହି ପ୍ରଜାତିର ଛଅଟି ଜାତି ଅଛି । ଏହା ୨ରୁ ୩ ମିଟର ପର୍ଯ୍ୟନ୍ତ ଉଚ୍ଚା ହୁଏ । ପତ୍ରଗୁଡ଼ିକ ସମପାର୍ଶ୍ୱୀ, ବର୍ଚ୍ଛାକାର ଏବଂ ଫିକା ସବୁଜରଙ୍ଗ । ବର୍ଷସାରା ଏଥିରେ ଟଗର ପରି ଫୁଲ ଫୁଟେ । ଫୁଲର ମଝି ଗାଢ଼

ଗୋଲାପି ଓ ଅନ୍ୟ ଅଂଶଗୁଡ଼ିକ ଧଳା । ଡାଳ କଲମି ଦ୍ୱାରା ନୂଆଗଛ କରାଯାଏ । ରାସ୍ତାର ଦୁଇ ପାର୍ଶ୍ୱ କିମ୍ବା ବଗିଚା ମଧ୍ୟରେ ଏହାକୁ ଲଗାଯିବା ଉଚିତ । କୁଣ୍ଡରେ ଏହାକୁ ଲଗାଯାଇପାରେ । ଟଗର ମରି ଏଥିରେ ସାଂବାଲୁଆ ପୋକ ଲାଗିଥାନ୍ତି । ତେଣୁ ପୋକମରା ଔଷଧ ଛିଞ୍ଚିବା ଆବଶ୍ୟକ ।

**ଇଟିମଲ୍ଲୀ** (*Cròssandra flava,* Acanthaceae)- ଇଟିମଲ୍ଲୀ ଓଡ଼ିଶାର ପ୍ରତ୍ୟେକ ବାଡ଼ିବଗିଚାରେ ଦେଖାଯାଏ । ଆନ୍ଧ୍ର, ତାମିଲନାଡୁ ପ୍ରଭୃତି ରାଜ୍ୟରେ ଏହାକୁ ବ୍ୟବସାୟିକ ଭିତ୍ତିରେ ଚାଷ କରାଯାଉଛି । ଇଟିମଳୀ ୫୦ ରୁ ୬୦ ସେ.ମି. ପର୍ଯ୍ୟନ୍ତ ବଢ଼େ । କାଣ୍ଡ ଅଗରେ ଥିବା ପ୍ରତ୍ୟେକ ବୃନ୍ତି ଖୋପରେ କମଳା ବା ହଳଦିଆ ରଙ୍ଗର ଫୁଲ ଫୁଟେ । ଇଟିମଳୀରେ ବର୍ଷସାରା ଫୁଲଫୁଟେ । ମଞ୍ଜିଦ୍ୱାରା ଏହାର ବଂଶବିସ୍ତାର କରାଯାଏ । କାଛଧାର କିମ୍ବା ଘରଠାରୁ କିଛି ଦୂର ପ୍ରାଚୀର କଡ଼େ କଡ଼େ ଏହାକୁ ଲଗାଇବା ଉଚିତ । ଅରଣ୍ୟ ଉଦ୍ୟାନରେ ଏଗୁଡ଼ିକ ମଧ୍ୟ ଲଗାଯାଇପାରେ । ଇଟିମଳୀର ଫୁଲଗୁଡ଼ିକ ବହୁଦିନ ପର୍ଯ୍ୟନ୍ତ ସତେଜ ରହୁଥିବା ହେତୁ ବିବାହ ବ୍ରତ ଆଦି ନାନା ଶୁଭକାର୍ଯ୍ୟରେ ଏହାକୁ ମାଳକରି ବ୍ୟବହାର କରାଯାଏ । ମଂଜି ହେଉନଥିବା ଏକ triploid ଗେଡ଼ା କିସମକୁ ଆଜିକାଲି ବହୁଳ ଭାବରେ ଚାଷ କରାଯାଉଛି ।

**ସ୍ୱର୍ଣ୍ଣସ୍ତମ୍ଭ** (*Solldago canadensis,* Compositae)- ଏହି ଶାକୀୟ ଗୁଳ୍ମର ଉଚ୍ଚତା ୧୦ ରୁ ୧୫ ସେ.ମି. ହୋଇଥାଏ । କିନ୍ତୁ ଫୁଲଷଣ୍ଡା ୫୦ ସେ.ମି. ଉଚ୍ଚ ହୁଏ । ଗଛମୂଳରୁ ଅନେକ ଭୂସ୍ତାରୀ ବାହାରେ ଓ ସେଗୁଡ଼ିକରେ ସୁନାହଳଦିଆ ରଙ୍ଗର ଫୁଲ ଫୁଟେ । ଏହାର ବଂଶ ବିସ୍ତାର ମଞ୍ଜି ଓ ଭୂସ୍ତାରୀ ଦ୍ୱାରା ହୋଇଥାଏ । ଫୁଲପଟାଳିରେ ଏବଂ କୁଣ୍ଡରେ ଏହାକୁ ଲଗାଯାଇପାରେ । ଆଜିକାଲି ଫୁଲ ବ୍ୟବସାୟ ପାଇଁ ଏହାକୁ ବ୍ୟବସାୟିକ ଭିତ୍ତିରେ ଚାଷ କରାଯାଉଛି ।

**ହଂସ ପଦି** ( *Thunbergia erecta,* Acanthaceae)- ହଂସପଦି ଗୁଳ୍ମଗୁଡ଼ିକ ୨ ମିଟର ଉଚ୍ଚ ହୁଅନ୍ତି । ପତ୍ରଗୁଡ଼ିକ ଛୋଟ ଏବଂ ଗାଢ଼ ସବୁଜରଙ୍ଗ । ଗଛ ମୂଳରୁ ମେଞ୍ଚା ମେଞ୍ଚା ନୂଆ ଗଛ ବାହାରିଥାଏ । ଡାଳଗୁଡ଼ିକ ସରୁ, କଳାରଙ୍ଗ

ଓ ସହଜରେ ଭାଙ୍ଗିଯାଏ । ଫୁଲର ରଙ୍ଗ ବାଇଗଣି ଓ ବେକ ପାଖରେ ହଳଦିଆରଙ୍ଗ ଥାଏ । ଫୁଲଗୁଡ଼ିକର ପାଖୁଡ଼ା ଏକତ୍ରିତ ହୋଇ ନଳୀ ଆକାରରେ ହୋଇଥାଏ ଓ ତଳକୁ ଝୁଲିଥାଏ । ଏହାର alba କିସମରେ ଧଳା ଫୁଲଫୁଟେ । ଡାଳରୁ ନୂଆଗଛ କରାଯାଏ । ଗୁଳ୍ମୋଦ୍ୟାନର ମଝି କିମ୍ବା ଶେଷ ଧାଡ଼ିରେ ଏହାକୁ ଲଗାଯିବା ଉଚିତ । ଟୋପିଓରି କାର୍ଯ୍ୟ ପାଇଁ ଏଗୁଡ଼ିକ ଉପଯୁକ୍ତ । ଫେବୃୟାରୀ ମାସଠାରୁ ମେ ମାସ ଭିତରେ ଗଛରେ ବହୁତ ଫୁଲ ଫୁଟେ ।

**କାମିନି** (*Murraya exotica,* Rutaceae)- କାମିନୀ ଏକ ଚିରହରିତ ଗୁଳ୍ମ । ଏହା ୨/୩ ମିଟର ପର୍ଯ୍ୟନ୍ତ ବଢ଼େ । କିନ୍ତୁ କଟାକଟି କରି ଏହାକୁ କମ୍ ଉଚ୍ଚ କରାଯାଇପାରେ । ପତ୍ର ପକ୍ଷଳ ଓ ଗାଢ଼ ସବୁଜରଙ୍ଗ । କାଣ୍ଡଗୁଡ଼ିକ ଧଳା ଓ ଶକ୍ତ । ଡାଳରେ ବସନ୍ତ ଓ ବର୍ଷାକାଳରେ ବାସ୍ନାଭରା ଧଳାରଙ୍ଗର ଫୁଲ ଫୁଟେ । ରାତ୍ରିରେ ଫୁଟିଥିବା ଫୁଲ ସକାଳୁ ଝଡ଼ି ଗଛମୂଳେ ଜମିଯାଏ । ଡାଳକଲମି ଦ୍ୱାରା ନୂଆଗଛ କରାଯାଏ । ଗୁଳ୍ମୋଦ୍ୟାନ କିମ୍ବା ଉଚ୍ଚ ବାରଣ୍ଡା ତଳ ଏବଂ ରାସ୍ତାର ଦୁଇଧାରରେ ଏହାକୁ ଲଗାଯାଇପାରେ । ଏହି ଗଛରେ ଟୋପିଆରି କରାଯାଏ । ଫୁଲ ଫୁଟି ସାରିବା ପରେ ଛୋଟ ଛୋଟ ଲାଲ ରଙ୍ଗର ଲଙ୍କାମରିଚ ଫଳ ଗଛରେ ଶୋଭାପାଏ । ଏହି ପ୍ରଜାତିର ୬ଟି ଜାତି ଥିବା ଅନୁମାନ କରାଯାଏ । ଏହା ମଧ୍ୟରୁ ଭୃସୁଙ୍ଗାପତ୍ର (Murraya Koenigii) ଅନ୍ୟତମ ।

**ମୁସେଣ୍ଡା**(Mussaenda sps. Rubiaceae)- ଏହି ଗୁଳ୍ମର ସୌନ୍ଦର୍ଯ୍ୟବର୍ଦ୍ଧକ ଅଂଶ ଏକ ରୂପାନ୍ତରିତ ବୃନ୍ତି ଅଟେ । ଦୂରରୁ ଏହାର ବୃନ୍ତି ବହୁ ସୁନ୍ଦର ଦିଶେ । ଏହାର ୪୦ ପ୍ରକାର ଜାତି ଦେଖିବାକୁ ମିଳେ । ଗଛଗୁଡ଼ିକ ୨-୩ ମିଟର ପର୍ଯ୍ୟନ୍ତ ବଢ଼ିଥାନ୍ତି । ପତ୍ରଗୁଡ଼ିକ ସାମାନ୍ୟ ହରିତ୍ ଓ ସମପାର୍ଶ୍ୱୀ । ଡାଳକଲମି ଦ୍ୱାରା ନୂଆ ଗଛ କରାଯାଏ । ସାମନ୍ୟ ଛାଇ ସ୍ଥାନରେ ଏହା ଭଲ ବଢ଼ିପାରେ । ବଗିଚାରେ ଲଗାଯାଉଥିବା ସିଙ୍ଗଲ ମୁସେଣ୍ଡାଗୁଡ଼ିକର ୫ଟି ବୃନ୍ତିରୁ ଗୋଟିଏ ବୃନ୍ତି ସୌନ୍ଦର୍ଯ୍ୟଯୁକ୍ତ । ପ୍ରକାର ଭେଦରେ ହଳଦିଆ କିମ୍ବା ଲାଲ ରଙ୍ଗର ବୃନ୍ତି ଥିବା ମୁସେଣ୍ଡା ଦେଖିବାକୁ ମିଳେ । ଏହି ଗୁଳ୍ମକୁ ଗୃହ ନିକଟ କିମ୍ବା ଲନର



(ଚିତ୍ର-୪୭) ମୁସେଣ୍ଡା

ଚାରିପାଖ, ଗୁଳ୍ମୋଦ୍ୟାନର ମଝି ଧାଡ଼ିରେ ଲଗାଯାଇପାରେ । *M. pubescence* ର ରୂପାନ୍ତରିତ ବୃତି ଧଳା ଓ ଫୁଲ ହଳଦିଆ । *M. coccinea* ର ଫୁଲ ଲାଲ ଓ ବୃନ୍ତ ହଳଦିଆ । *M. phillipica* ମୁସେଣ୍ଡା ମଧ୍ୟରେ ସର୍ବୋତ୍କୃଷ୍ଟ । ଏହାର ସବୁ ବୃତି ପାଖୁଡ଼ାପରି ବଢୁଥିବା ହେତୁ ଏହା ଖୁବ୍ ରମଣୀୟ ଦିଶେ । ଏହି କିସମରେ ଧଳା, ଗୋଲାପୀ ଓ ଫିକା ଗୋଲାପୀର ବ୍ୟବହାର ବଗିଚାରେ ବହୁଳ ଭାବରେ କରାଯାଏ । ଏହାର ଏକ ଗାଢ଼ ଲାଲ କିସମ ଅତୀବ ରମଣୀୟ ।

**ନନ୍ଦିନା** (*Nandina domestica*, Berberidaceae) - ନନ୍ଦିନାର ପତ୍ରଜ ସୌନ୍ଦର୍ଯ୍ୟ ମନୋମୁଗ୍ଧକର । ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଏହି ଗୁଳ୍ମରେ

ଫୁଲ ଫୁଟିଥାଏ । ଏହା ୩ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ପତ୍ରଗୁଡ଼ିକ ଦ୍ୱିପକ୍ଷକ ଅଟନ୍ତି । ଛୋଟ ବେଳେ ଏହା ଗୋଟିଏ ସଜନା ଗଛଭଳି ଦିଶେ । ଏହାର ଫୁଲ ଧଳା ଓ ଏହା ଗ୍ରୀଷ୍ମ ଋତୁରେ ଫୁଟେ । ଶୀତଦିନେ ପତ୍ରଗୁଡ଼ିକ ବାଇଗଣି ରଙ୍ଗ ଦିଶନ୍ତି । ମୂଳରୁ ବାହାରିଥିବା ଭୂସ୍ତାରୀଦ୍ୱାରା ନୂଆ ଗଛ ଲଗାଯାଏ । ଏହାକୁ କୁଣ୍ଡରେ କିମ୍ବା ଛାଇ ସ୍ଥାନରେ ଲଗାଯାଏ ।

**ହୋମସ୍ କୋଲଡ଼ିଆ** (*Holmskioldia, sanguinea,* Verbenaceae) ଏହି ଗୁଳ୍ମ ଏକା ସମୟରେ ବହୁତ ଫୁଲରେ ମଣ୍ଡିହୋଇ ବଗନଭିଲାପରି ରମଣୀୟ ଦିଶେ । ଗଛଗୁଡ଼ିକ ୨ ରୁ ୩ ମିଟର ବଢ଼େ । କାଣ୍ଡଗୁଡ଼ିକ ମଟକା ଓ ଚାରିକୋଣିଆ । ଗଣ୍ଠିରୁ ଡାଳ ବାହାରିଥାଏ । ବର୍ଷାଦିନେ ଏଥିରୁ ଲମ୍ବା ଲମ୍ବା ଛଡ଼ ବାହାରେ । ଶୀତଦିନ ଆରମ୍ଭରେ ଫୁଲ ଫୁଟେ । ପତ୍ରଗୁଡ଼ିକ ଫିକା ସବୁଜ ଓ ଲୋମଶ । ଫୁଲ ଗାଢ଼ ଇଟାରଙ୍ଗ । ଫୁଲଗୁଡ଼ିକର ଆକୃତି କପ ପିଆଲାପରି । ଅତି ସହଜରେ ଡାଳକଲମିରୁ ନୂଆ ଗଛ କରାଯାଏ । ବର୍ଷା ଆରମ୍ଭରୁ ଗଛଗୁଡ଼ିକୁ କଟାକଟି କରିଦେବା ଉଚିତ । ଏହାକୁ କାଣ୍ଡଛାଣ୍ଟ କରି ବିଭିନ୍ନ ଆକୃତିରେ ବଢ଼ାଯାଇପାରେ । ରାସ୍ତା ଧାର, ଗୁଳ୍ମୋଦ୍ୟାନ ଓ ଲନ ଚାରିପାଖରେ ଏହାକୁ ଲଗାଇବା ଭଲ ।

**ରାଧାଚୂଡ଼ା** (*Caesalpinia pulcherrima,* Leguminosae) - ରାଧାଚୂଡ଼ା ଆମ ଦେଶର ଉଦ୍ୟାନମାନଙ୍କର ଏକ ପରିଚିତ ଗୁଳ୍ମ । ଏହା ତିନି ମିଟର ପର୍ଯ୍ୟନ୍ତ ବଢ଼େ । କାଣ୍ଡଗୁଡ଼ିକ ମଟକା । ବର୍ଷା ଓ ଗ୍ରୀଷ୍ମ ଦିନରେ ନୂଆ ଡାଳ ଅଗରେ ମୟୂରପୁଚ୍ଛଭଳି ପେଣ୍ଠା ପେଣ୍ଠା ହଳଦିଆ ଓ ଲାଲ ରଙ୍ଗର ଫୁଲ ଫୁଟେ । ପତ୍ରଗୁଡ଼ିକ ଦ୍ୱିପକ୍ଷକ । ଗୋଟିଏ ପକ୍ଷକ ପତ୍ରରେ ୨୦ ରୁ ୨୪ଟି ପତ୍ର ଥାଏ । ଗଛ ଗୁମ୍ଫା ହୋଇ ବଢ଼େ । ତେଣୁ ଫୁଲ ଫୁଟିବା ବେଳେ ବଡ଼ ରମଣୀୟ ଦିଶେ । ଶୀତଦିନେ ଗଛରୁ ଅଳ୍ପ ପତ୍ର ଝଡ଼ିପଡ଼େ । ଫଳଗୁଡ଼ିକ ଗଛରେ ଅଧାଫଟା ଅବସ୍ଥାରେ ଝୁଲୁଥାଏ । ମଞ୍ଜିରୁ ନୂଆଗଛ କରାଯାଏ । ପ୍ରାଚୀର ଧାର, ଗୁଳ୍ମୋଦ୍ୟାନର ଶେଷଧାଡ଼ି ତଥା ଉଚ୍ଚ ବାରଣ୍ଡା ତଳେ ଏହାକୁ ଲଗା ଯାଇପାରେ ।




(ଚିତ୍ର-୪୮) ରାଧାଚୂଡ଼ା

**କରବୀର** (*Nerium oleander,* Apocynaceae)
ଗ୍ରୀଷ୍ମଋତୁରେ ଉଦ୍ୟାନର ଗୁଳ୍ମଗୁଡ଼ିକରେ ଫୁଲ କମିଆସିବା ବେଳକୁ କରବୀର ଗଛରେ ଫୁଲ ଫୁଟିବା ଆରମ୍ଭ ହୁଏ । ଏହି ଗୁଳ୍ମ ୪ ମିଟରରୁ ଅଧିକ ଉଚ୍ଚ ହୁଏ । କାଣ୍ଡଗୁଡ଼ିକ ଗୋଲାକାର ଏବଂ ସୁନ୍ଦର । ଏହାର ମୋଟା ପତ୍ରଗୁଡ଼ିକ ବର୍ଚ୍ଛାକାର ଓ ଚିକ୍‌କଣ । ବେତଭଳି କାଣ୍ଡରେ ପତ୍ରସଜ୍ଜା ବଡ଼ ମନୋହର ଦିଶେ । ନୂଆ ଡାଳର ଅଗରେ ପେଣ୍ଡା ପେଣ୍ଡା ଫୁଲ ଫୁଟିଥାଏ । କମଳା, ଧଳା, ଗୋଲାପି ରଙ୍ଗର ଏକ ଦଳାବରଣ ଓ ବହୁ ଦଳାବରଣରେ ମଣ୍ଡିତ ଫୁଲ ଦେଖିବାକୁ ମିଳେ । ଡାଳକଲମି ଓ ଭୂସ୍ତାରୀ ଦ୍ୱାରା ନୂଆ ଗଛ କରାଯାଏ । ବର୍ଷାଦିନର ଆରମ୍ଭରେ ଡାଳଗୁଡ଼ିକୁ ମୂଳରୁ ଫୁଟେ ଉପରେ କାଟିଦେବା ଉଚିତ । ପ୍ରାଚୀର ପାର୍ଶ୍ୱ କିମ୍ବା ପଥ ଧାରରେ ଏହାକୁ ଲଗାଯାଏ । ବାଲିଆ, ନିଗିଡ଼ା ମାଟିରେ ଏବଂ ସମୁଦ୍ରକୂଳିଆ ଅଞ୍ଚଳରେ ଏହା ଭଲ ବଢ଼ିଥାଏ ।

**ଗଙ୍ଗଶିଉଳି** (*Nyctanthus arbortristis,* Oleaceae)
ଗଙ୍ଗଶିଉଳି ବା ଶେଫାଳୀ ୪/୫ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛର ଗଣ୍ଡି ଫିକା ବାଦାମି ଧଳା । ପତ୍ରଗୁଡ଼ିକର ଧାର ଦନ୍ତୁରିତ ଓ ଟାଆଁସିଆ । ନୂଆ ଡାଳଗୁଡ଼ିକ ପ୍ରାୟ ଚାରିକୋଣିଆ । ଏଥିରେ ଶରତ କାଳରେ ଫୁଲ ଫୁଟେ । ଫୁଲଗୁଡ଼ିକର ପାଖୁଡ଼ା ଉଜ୍ଜ୍ୱଳ ଧଳା କିନ୍ତୁ ପାଖୁଡ଼ାର ନିମ୍ନାଂଶରେ ଥିବା ନଳୀଗୁଡ଼ିକ (corolla tube) କମଳା ରଙ୍ଗ । ଫୁଲ ସୁବାସିତ ଓ ରାତ୍ରିରେ ଫୁଟେ ସକାଳୁ ଧୀରେ ଧୀରେ ଝଡ଼ିପଡ଼େ । ଫୁଲଗୁଡ଼ିକ ଗଛ ତଳେ ବିଛାଇହୋଇ ପଡ଼ିଥାଏ । ଫଳଗୁଡ଼ିକ ଚେପଟା ଓ ଗୋଲାକାର ମଞ୍ଜିରୁ ଗଛ ହୁଏ । ଏହାକୁ ଲନର ମଝିରେ ପ୍ରତୀକ ଗଛରୂପେ କିମ୍ବା ଘରପାଖରେ ଲଗାଇବା ଉଚିତ । ଫଳ ହେବାପରେ ଗଛଗୁଡ଼ିକ ଅସୁନ୍ଦର ଦିଶେ । ତେଣୁ ଫଳ ଲାଗିଥିବା ଡାଳଗୁଡ଼ିକୁ କାଟିଦେବା ଦରକାର । ନିଗିଡ଼ା ବାଲିଆ ମାଟିରେ ସାମାନ୍ୟ ଛାଇ ପଡୁଥିବା ସ୍ଥାନରେ ଏହା ଭଲ ବଢ଼େ ।

**ମାଲପିଜିଆ** (*Malpighia coccigera,* Malpighiaceae)
ଏହା ଏକ କ୍ଷୁଦ୍ର ଗୁଳ୍ମ । ୫୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ । ଡାଳଗୁଡ଼ିକ ସରୁ, ବାଦାମି ରଙ୍ଗ, ପତ୍ର ଗାଢ଼ ସବୁଜ, ଦନ୍ତୁରିତ ଓ ଗୋଲାକାର । ବର୍ଷରେ




(ଚିତ୍ର-୪୯) କରବୀର

୩/୪ ମୁଠ ଫୁଲ ଫୁଟେ । ଏହାର ଫୁଲ ବାନିଷ୍ଟେରିଆ ଫୁଲ କିମ୍ବା ଓନସିଡ଼ିୟମ ଅର୍କିଡ଼ର ଫୁଲପରି ଦିଶେ । ପାଖୁଡ଼ାଗୁଡ଼ିକ ବରଫ ପରି ଧଳାରଙ୍ଗ । ଟାଣ ଡାଳଗୁଡ଼ିକୁ କଲମି କରି ଗଛ ତିଆରି କରାଯାଏ ।

**କାଲିଆଣ୍ଡା** (Calliandra sps. Leguminosae)- କାଲିଆଣ୍ଡ୍ରା ଏକ ବ୍ରାଜିଲ ଦେଶୀୟ ଗୁଳ୍ମ । ଏହା ଦୁଇ ମିଟରରୁ ଅଧିକ ଉଚ୍ଚା ହୁଏ । ଗଛଗୁଡ଼ିକ ଦେଖିବାକୁ ତେନ୍ତୁଳି ଗଛପରି । ପତ୍ରଗୁଡ଼ିକ ପକ୍ଷଳ ଏବଂ ଚିରହରିତ ଓ ଏଗୁଡ଼ିକ ଗଛର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି । ଶୀତଦିଗରେ ଏବଂ ବସନ୍ତକାଳରେ ଗଛରେ ପ୍ରଚୁର ଫୁଲ ଫୁଟେ । ଫୁଲଗୁଡ଼ିକ ପ୍ରାୟ ଗୋଲାକାର ଓ କେଶର ସମ୍ମିଶ୍ରଣରେ ତିଆରି । ମଞ୍ଜି ଏବଂ ଡାଳକଲମି ଦ୍ୱାରା ନୂଆଗଛ କରାଯାଏ । ଏହି ପ୍ରଜାତିରେ ୧୨୦ ଜାତି ଅଛି । ବଗିଚାର ଉନ୍ମୁକ୍ତ ପ୍ରାଙ୍ଗଣରେ ଏକ ପ୍ରତୀକ ଗୁଳ୍ମ (Specimen shurb) ରୂପେ କିମ୍ବା ରାସ୍ତାର ଦୁଇଧାର ବା ଗୁଳ୍ମୋଦ୍ୟାନର ଅଗ୍ରଧାଡ଼ିରେ ଏହାକୁ ଲଗାଯିବା ଉଚିତ । *C. haematocephala* ର ଫୁଲଗୁଡ଼ିକ ରକ୍ତବର୍ଣ୍ଣ ଏବଂ ସମ୍ପୂର୍ଣ୍ଣ ଗୋଲାକାର । କିନ୍ତୁ *C. brevipes* ର ଫୁଲଗୁଡ଼ିକ ଦୁଇରଙ୍ଗର ଅଟେ । କେଶରର ତଳ ହଳଦିଆ ମିଶା ଧଳାରଙ୍ଗ ଓ ଉପର ରଙ୍ଗ ଗୋଲାପି । ଏହିପରି ଫୁଲ ବେଶୀଦିନ ରହିପାରେ । C. inaequilatera ର ଫୁଲ ନାଲି ଏବଂ ବଡ଼ ମନମୁଗ୍ଧକର ।

**ବେଲୋପର୍ଣ୍ଣୀ** (*Beloperone oblongata* Acanthaceae) - ଏହା ଏକ ଶାକୀୟ ଗୁଳ୍ମ (herbaceous shurb) ୫୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ । ବାସଙ୍ଗ କିମ୍ବା କଳାବାସଙ୍ଗ ଗଛପରି ଗଣ୍ଠିଗୁଡ଼ିକ ସାମାନ୍ୟ ଷ୍ଫୀତ । ଏହି ପ୍ରଜାପତିର ୩୦ ପ୍ରକାର ଜାତି ଅଛି । କଅଁଳଡାଳ କଲମି କରି ଗଛ କରାଯାଏ । ବଗିଚା ଭିତର ରାସ୍ତାର ଦୁଇଧାରରେ ଏହାକୁ ଲଗାଯାଏ । ଜାତି ଅନୁସାରେ ବିଭିନ୍ନ ଉଚ୍ଚତାର ଓ ହଳଦିଆ ବାଇଗଣି ଓ ଗୋଲାପି ରଙ୍ଗର ବେଲୋପର୍ଣ୍ଣୀ ଫୁଲ ଦେଖିବାକୁ ମିଳେ । ଶୀତ ଋତୁର ଶେଷ ଆଡ଼କୁ ଗଛରେ ଫୁଲ ଫୁଟେ । ଏହାର ଉପପତ୍ରଗୁଡ଼ିକ ସଜାହୋଇ ଜଟପରି ବଢ଼ନ୍ତି । ଫୁଲ ଶୀଘ୍ର ଝଡ଼ିଗଲେବି ଉପପତ୍ର ବହୁତ ଦିନ ରହେ ।

**ଆକାଲିଫା** (Acalypha sps. Euphorbiaceae)- ଆକାଲଫାର ପତ୍ରଗୁଡ଼ିକ ସୁନ୍ଦର ଓ ବିଭିନ୍ନ ରଙ୍ଗବେରଙ୍ଗ । ଏହା ୧ ରୁ ୨ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । କାଣ୍ଡଗୁଡ଼ିକ ଗୋଲାକାର । ଡାଳକଲମିରୁ ଗଛ କରାଯାଏ । ପୁଷ୍ପକୁଣ୍ଡ, ବାଡ଼କର୍ଡ଼, ପ୍ରାଚୀର ପାଖେ ପାଖେ ଏଗୁଡ଼ିକ ଲଗାଯାଇପାରେ । ଏହାର ବିଭିନ୍ନ ପ୍ରକାର ମଧ୍ୟରେ A. hispida ର ପତ୍ର ସୁନ୍ଦର କିନ୍ତୁ A.Sanderi ର ଲାଲ ପତ୍ର ସାଙ୍ଗକୁ ଫୁଲଗୁଡ଼ିକ ଲାଲ ଜଟପରି ଦିଶେ ଓ A. tricolour ର ପତ୍ର ତିନିରଙ୍ଗୀ ଅଟେ ଏବଂ ବାଡ଼ ପାଇଁ ଭଲ । ଆକାଲିଫା ପ୍ରଜାପତିରେ ୨୦୦ ଜାତି ଦେଖାଯାଏ । ନାକ ଚଣା ଗଛ *A. indica* ବାଡ଼ିରେ ଅନାବନା ଗଛ ରୂପେ ବଢ଼େ ।



(ଚିତ୍ର-୫୦) ଆକାଲିଫା

**ହରଚମ୍ପା** (*Artabotrys odoratissimus,* Annonaceae)- ହରଚମ୍ପା ଏକ ବିରାଟକାୟ ଗୁଳ୍ମ । ଏହାର ଡାଳଗୁଡ଼ିକ ଲତାପରି ଲମ୍ବାରେ ବଢ଼େ । କାଣ୍ଡ ବାଦାମି ରଙ୍ଗ ଓ ଟାଣ । ପତ୍ର ଘନସବୁଜ ଓ ଚିକ୍କଣ ଓ ଦେଖିବାକୁ ଆତ ପତ୍ରପରି । ବର୍ଷାଦିନରେ ଗଛରେ ସୁଗନ୍ଧିତ ଫୁଲ ଫୁଟେ । ଫୁଲଗୁଡ଼ିକ ଅଣ୍ଡା ଆକାରର ଓ ପାଖୁଡ଼ାଗୁଡ଼ିକ ଫିକା ସବୁଜ ରଙ୍ଗର । ତେଣୁ ଫୁଲ ଦୂରକୁ ଦିଶେ

ନାହିଁ । ଫୁଲଗୁଡ଼ିକ ଫୋଟିଲା ସେଓର ବାମ୍ଭାରେ ଧଳା ମାଞ୍ଜି ଓ ଗୁଟି ଦ୍ୱାରା ନୂଆ ଗଛ କରାଯାଏ । ଏହାକୁ ଲନ ମଝିରେ ଲଗାଯାଇପାରେ କିମ୍ୱା କଟାକଟି କରି ଗୋଲାକାର କରି ରଖାଯାଇପାରେ ।

**କଞ୍ଚଣ** (Bauhinia sps. Leguminosae) ଗୁଳ୍ମ କଞ୍ଚଣ ଆମ ଉଦ୍ୟାନଗୁଡ଼ିକର ଏକ ପ୍ରଧାନ ଶୋଭାବର୍ଦ୍ଧକ ଗୁଳ୍ମ । ଏହି ପ୍ରଜାତିରେ ବଡ଼ ବଡ଼ ଦ୍ରୁମଠାରୁ ଆରମ୍ଭ କରି ଛୋଟ ଗୁଳ୍ମ ପର୍ଯ୍ୟନ୍ତ ୧୫୦ଟି ଜାତି ଥିବାର ଅନୁମାନ କରାଯାଏ । ଗୁଳ୍ମ କଞ୍ଚଣଗୁଡ଼ିକ ୩ ମିଟର ଯାଏଁ ବଢ଼ିଥାନ୍ତି । ସବୁଜ ପତ୍ରଗୁଡ଼ିକ ଦୁଇଫାଳ ଓ ସାମାନ୍ୟ ଲୋମଶ, ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ । ଖୋଲାସ୍ଥାନରେ ଏଗୁଡ଼ିକୁ ଲଗାଯାଏ । B. galpinii ରେ ଇଟା ରଙ୍ଗର ପୁଷ୍ପ ଧରେ ଓ B. **acuminata**ରେ ଧଳା ରଙ୍ଗର ଫୁଲ ଫୁଟେ ।

**ସ୍ଫଟିକ** (*Barleria sps. Acanthaceae*) ଏହା କୋଇଲିଖିଆ ଜାତିର ଶାକୀୟ ଗୁଳ୍ମ । ୫୦ ସେ.ମି. ରୁ ୧ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଅନ୍ତି । ଏହି ପ୍ରଜାତିରେ ୧୫୦ରୁ ଅଧିକ ଜାତି ରହିଅଛି । କାଣ୍ଡଗୁଡ଼ିକ ଚାରିକୋଣିଆ ଓ ପତ୍ରଗୁଡ଼ିକ ସାମାନ୍ୟ ଲୋମଶ । ଶୀତଦିନରେ ଫୁଲ ଫୁଟେ । ବଗିଚା ଭିତର ରାସ୍ତାର ଦୁଇଧାରରେ ଏହାକୁ ଲଗାଯିବା ଉଚିତ । *B. cristata* ର ଫୁଲ ବାଇଗଣି ଓ *B. gibsonii* ର ଫୁଲ ଫିକା ବାଇଗଣି ଓ ବଡ଼ । *B.tomentosa* ର ଫୁଲ ଗୋଲାପି ଓ ପତ୍ର ଗୋଲାକାର ।

**ଛେନାଫୁଲ** (*Lagerstroemia indica*, Lythraceae)- ଏହାର ଫୁଲଗୁଡ଼ିକ ଏକାଠି ରଖିଲେ ଛେନାପରି ଦିଶେ । ଏହି ପ୍ରଜାତିରେ ୩୦ ପ୍ରକାର ଜାତି ଅଛି । ପତ୍ରଗୁଡ଼ିକ ଅଣ୍ଡାକୃତି, ସମପାର୍ଶ୍ୱୀ ଓ ଚିକ୍କଣ । କାଣ୍ଡଗୁଡ଼ିକ ବାଦାମିରଙ୍ଗ । ପୁରୁଣା ପାକଳ ଡାଳକୁ କାଟି ଲଗାଇଲେ ନୂଆଗଛ ହୁଏ । ଗଛ ଲଗାଇବାର ୨ ବର୍ଷ ପରେ ଫୁଲ ଫୁଟେ । ନୂଆ ଗଛ ଲଗାଇଲା ବେଳେ ମୂଳରେ ଦୁଇ ଗାଣ୍ଡୁଆ ଖତ ଓ କିଛି ପାଉଁଶ ଦେବା ଆବଶ୍ୟକ । ବର୍ଷାଋତୁର ଅବ୍ୟବହିତ ପୂର୍ବରୁ ନୂଆ ଡାଳରେ ପେଣ୍ଡା ପେଣ୍ଡା ହୋଇ ଫୁଲ ଫୁଟିଥାଏ । ସ୍ତବକଟିର ଦୈର୍ଘ୍ୟ ୨୫ ସେ.ମି ଓ ଫୁଲଗୁଡ଼ିକ ୨ / ସେ.ମି. ହୁଏ । ପ୍ରତ୍ୟେକ ଫୁଲରେ

୬ଟି ପରଭଳି ପାଖୁଡ଼ା ଥାଏ । ପାଖୁଡ଼ାଗୁଡ଼ିକ ମୋଟା ମୋଟା ଓ ହାତକୁ କଅଁଳିଆ ଲାଗେ । ଶୀତ ଋତୁରେ ଗଛରୁ ପତ୍ର ଝଡ଼ିପଡ଼େ । ଫୁଲ ସରିଗଲା ପରେ ଗଛଗୁଡ଼ିକୁ ମାଟିରୁ ୫୦ ସେ.ମି. ଉପରୁ କାଟିଦେବା ଉଚିତ । ଗୁଳ୍ମୋଦ୍ୟାନର ପ୍ରଥମ ଧାଡ଼ି, ରାସ୍ତାର ଦୁଇପାଖ, ଗୃହ ସାମ୍ନାର କିମ୍ବା ପ୍ରାଚୀର ପାର୍ଶ୍ୱରେ ଏହାକୁ ଲଗାଯାଏ । ଉର୍ବରା ମାଟି ଓ ଉନ୍ମୁକ୍ତ ସ୍ଥାନମାନଙ୍କରେ ଏହି ଗଛ ଭଲ ବଢ଼େ । ବର୍ଷାଦିନ ଶେଷ ପର୍ଯ୍ୟନ୍ତ ଫୁଲ ଫୁଟେ । ଏହି ଗୁଳ୍ମର alba କିସମରେ ଧଳା, purpurea କିସମରେ ବାଇଗଣି, rubra କିସମରେ ଲାଲ ଓ Rosea ରେ ଗୋଲାପି ଫୁଲ ଫୁଟିଥାଏ । L. lancasteri ଜାତି ଲନ୍ ମଝିରେ ଲଗାଇବା ପାଇଁ ଏକ ଉପଯୁକ୍ତ ଗୁଳ୍ମ ଅଟେ ।

**ଲାଣ୍ଟାନା** (Lantana sps. Verbenaceae) ଲାଣ୍ଟାନା ବଗିଚାର ଏକ ସାଧାରଣ ଗୁଳ୍ମ ହେଲେ ବି ଏହାର ଆବଶ୍ୟକତା ଯଥେଷ୍ଟ ବେଶି । ଏଥିରେ ୫୦ ପ୍ରକାର ଜାତି ଦେଖାଯାଏ । ଏହା ଦୁଇରୁ ତିନି ମିଟର ଯାଏ ବଢ଼େ । କଣ୍ଡଗୁଡ଼ିକ ବାଦାମି ରଙ୍ଗ । ପତ୍ରଗୁଡ଼ିକ ଅଣ୍ଡାକୃତି ଘନସବୁଜରଙ୍ଗ ଓ ଦୁର୍ଗନ୍ଧଯୁକ୍ତ । ହାତକୁ ଟାଆଁସିଆ ଲାଗେ । ଗଛଗୁଡ଼ିକ ବୁଦାଳିଆ ହୋଇ ବଢ଼େ । ମଞ୍ଜିରୁ ଗଛ କରିହୁଏ । ବାଡ଼ କରିବା ପାଇଁ ଏହାକୁ ବ୍ୟବହାର କରାଯାଇଥାଏ । *L. camara* ର ଫୁଲ ହଗରଙ୍ଗୀ କମଳା ଓ ବାଇଗଣିରଙ୍ଗର ଫୁଲ ଏକାଠି ଗୋଟିଏ ପେଣ୍ଡାରେ ଫୁଟିଥାଏ । ଫୁଲ ଫୁଟି ସାରିବା ପରେ ଫଳ ପେଣ୍ଡା ପେଣ୍ଡା ହୋଇ ଗଛରେ ଝୁଲୁଥାଏ । *L. sellowina* ରେ ନୀଳ ଗୋଲାପି ରଙ୍ଗର ଓ L. trifolia ରେ ବରଫ ରଙ୍ଗର ଧଳା ଫୁଲ ଫୁଟେ । ଏହି ସବୁ ଜାତିଗୁଡ଼ିକ ଡେଙ୍ଗା । କିନ୍ତୁ L. Draph-D-or ଏକ ଖର୍ବାକାୟ ଗୁଳ୍ମ । ଏଥିରେ ହଳଦିଆ ଫୁଲ ଫୁଟେ । ସେହିପରି L. dipressaରେ ବର୍ଷସାରା ହଳଦିଆ ଫୁଲ ଫୁଟେ । L. crosia ରେ ବଡ଼ ବଡ଼ ଡେମ୍ପରେ ଫୁଲ ଆସେ । ଫୁଲ ପେଣ୍ଡାର ବାହାରେ ଲାଲ ଓ ଭିତରେ ହଳଦିଆ ଫୁଲ ଫୁଟେ ।

**ସଦାବାହୀ** (*Vinca rosea,* Apocynaceae) - ସଦାବାହୀ ଏକ ଗ୍ରୀଷ୍ମମଣ୍ଡଳୀୟ ଗୁଳ୍ମ । ଏହା ଏକ ମିଟରରୁ କମ୍ ଉଚ୍ଚ ହୁଏ । କାଣ୍ଡଗୁଡ଼ିକ ସାମାନ୍ୟ

ବାଦାମି ଲାଲ । ପତ୍ର ଅଣ୍ଡାକୃତି ଓ ଚିକ୍କଣ । ପତ୍ରର ଶିରାଗୁଡ଼ିକ ସ୍ପଷ୍ଟ । ମଞ୍ଜିଦ୍ୱାରା ଏହାର ବଂଶ ବିସ୍ତାର ହୋଇଥାଏ । ଏହି ପ୍ରଜାତିରେ ୧୦ ପ୍ରକାର ଜାତି ଥିବାର ଅନୁମାନ କରାଯାଏ । ଏହି ସବୁ ଗୁଳ୍ମ ଶୁଷ୍କ ଓ ପଥୁରିଆ ଅଞ୍ଚଳରେ ବିନା ଯତ୍ନରେ ବଢ଼ି ପାରନ୍ତି । ଏହାର ପତ୍ର ଦୁର୍ଗନ୍ଧ ହୋଇଥିବାରୁ ଗୋରୁ ଗାଈ ଖାଆନ୍ତି ନାହିଁ । ଏଥିରେ ଗୋଲାପି, ବାଇଗଣି ଓ ଧଳା ଫୁଲ ଫୁଟେ । ବିଭିନ୍ନ ଜାତିର ସଦାବାହୀକୁ ଲମ୍ବା ଫୁଲ ପଟାଳି କରି ଲଗାଇଲେ ସୁନ୍ଦର ଦିଶେ । ଆଜିକାଲି Blood cancer ଔଷଧ ତିଆରି ପାଇଁ ଏହାକୁ ଚାଷ କରାଯାଉଅଛି ।

**କନିଅର** (*Thevetia nereifolia*, Apocynaceae) - କନିଅର ଏକ ଭାରତୀୟ ଉଦ୍ଭିଦ । ଏଗୁଡ଼ିକ ଛୋଟ ଛୋଟ ବୃକ୍ଷ ପରି ଦିଶେ । ୫ ରୁ ୭ ମିଟର ଯାଏଁ ଉଚ୍ଚ ହୁଏ । ପତ୍ରଗୁଡ଼ିକ ଅଣଓସାରିଆ ଓ ବର୍ଚ୍ଛାକୃତି । ଏହା ଚିକ୍କଣ ଓ ସବୁଜ ରଙ୍ଗ । ଫୁଲଗୁଡ଼ିକ ଏକ ଅସୀମ ସ୍ତବକରେ ଫୁଟେ ଓ କାହାଳୀ ଆକୃତିର ଦିଶେ । ଫୁଲଗୁଡ଼ିକ ସୁବାସଯୁକ୍ତ ଓ ବିଭିନ୍ନ ରଙ୍ଗ ବିଶିଷ୍ଟ । ବଗିଚାମାନଙ୍କରେ ସାଧାରଣତଃ ଧଳା କମଳା, ଗେରୁଆ, ହଳଦିଆ ଓ ଫିକା ହଳଦିଆ ରଙ୍ଗର ଫୁଲ କିସମ ଦେଖାଯାଏ । ଗଛରେ ବର୍ଷସାରା ଫୁଲ ଆସେ । ମଞ୍ଜି ଓ ଡାଳରୁ ନୂଆଗଛ କରାଯାଏ । ଏହାକୁ ସାଧାରଣତଃ ମନ୍ଦିର ଉଦ୍ୟାନମାନଙ୍କରେ ଲଗାଯାଇଥାଏ । ମଞ୍ଜିଗୁଡ଼ିକ ବିଷାକ୍ତ । ରାସ୍ତା ଧାରରେ ଏହାକୁ ଲଗାଯାଇପାରେ ।

**ଟିକୋମା** (*Tecoma stans*, Bignoniaceae) - ଟିକୋମା ଏକ ଚିରହରିତ ଗୁଳ୍ମ । ଏହା ୩/୪ ମିଟର ପର୍ଯ୍ୟନ୍ତ ବଢ଼େ । କାଣ୍ଡଗୁଡ଼ିକ ବାଦାମି ଧଳା । ପତ୍ରର ରଙ୍ଗ ସବୁଜ ଓ ଧାର ଦନ୍ତୁରିତ । ପତ୍ରଗୁଡ଼ିକ ଗଛରେ ବଡ଼ ସୁନ୍ଦର ଦିଶେ । ଶୀତଦିନେ ଫୁଲ ଫୁଟେ । ଫୁଲଗୁଡ଼ିକ ଗାଢ଼ ହଳଦିଆ ରଙ୍ଗ ଓ ଘଣ୍ଟି ଆକୃତିର । ପକ୍ଷଳ ପତ୍ର ଭିତରେ ହଳଦିଆ ଫୁଲଗୁଡ଼ିକ ଦୂରକୁ ଅତି ସୁନ୍ଦର ଦେଖାଯାଏ । ଖରାଦିନେ ଫୁଲ କମିଯାଏ । ଚେପ୍ଟା ଲମ୍ବା ଫଳ ଭର୍ତ୍ତି ହୋଇଥାଏ । ମଞ୍ଜି ଓ ଡାଳକଲମି ଦ୍ୱାରା ଏହାର ବଂଶବିସ୍ତାର କରାଯାଏ । ଏଗୁଡ଼ିକୁ ହତାର ଚାରିପଟେ ଏବଂ ଗୁଳ୍ମୋଦ୍ୟାନର ମଝିରେ ଲଗାଇଲେ ସୁନ୍ଦର




(ଚିତ୍ର-୫୧) କନିଅର

ଦେଖାଯାଏ । ଅନ୍ୟ ମାନଙ୍କ ଭଳି ବଢ଼ିପାରୁଥିବା ହେତୁ ବାଡ଼ ପାଇଁ ଏହାକୁ ବ୍ୟବହାର କରାଯାଇ ପାରେ । T. crysantha ର ପତ୍ରଗୁଡ଼ିକ ବେଶୀ ଦନ୍ତୁରିତ ଓ ଫୁଲଗୁଡ଼ିକ ବଡ଼. T smithii ରେ କମଳାରଙ୍ଗର ଫୁଲ ଫୁଟେ କିନ୍ତୁ T. capensis ରେ ବର୍ଷସାରା ଗାଢ଼ କମଳାରଙ୍ଗର ଫୁଲ ଫୁଟେ ।



(ଚିତ୍ର-୫୨) ଟିକୋମା

**ଟଗର** ( *Tabernaemontana coronaria*, Apocynacea ) - ଟଗର ଏକ ଭାରତୀୟ ଗୁଳ୍ମ । ପ୍ରତ୍ୟେକ ମନ୍ଦିରଉଦ୍ୟାନରେ ଟଗରଗଛ ଦେଖିବାକୁ ମିଳିଥାଏ । ଏହି ଗଛଗୁଡ଼ିକ ଛତାପରି ବଢ଼େ ଓ ୨ -୩ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ପୁରୁଣା ଡାଳଗୁଡ଼ିକ ବାଦାମି ଓ ପତ୍ରଗୁଡ଼ିକ ଘନ ସବୁଜ ରଙ୍ଗ । ଏହି ପ୍ରଜାତିରେ ୧୨୦ଟି ଜାତି ଅଛି । ଡାଳ କଲମି ଦ୍ୱାରା ବଂଶାଗଛ କରାଯାଏ ।



(ଚିତ୍ର-୫୩) ଟଗର

ଗଛ ଲଗାଇବାର ବର୍ଷକ ଭିତରେ ଫୁଲ ଫୁଟେ । ଫୁଲଗୁଡ଼ିକ ଧଳା ଓ ମୃଦୁଗନ୍ଧଯୁକ୍ତ । ଏକ ସସୀମ ସ୍ତବକରେ ୬ ରୁ ୮ ଟି ଫୁଲ ଆସେ । ଏହାର ପତ୍ର ଓ ଡାଳଗୁଡ଼ିକରୁ ଦୁଧ ଭଳି ଏକ କ୍ଷୀର ବାହାରେ । ଗଛରେ ଶୀତଦିନ ଛଡ଼ା ଅନ୍ୟ ସମୟରେ ଯଥେଷ୍ଟ ଫୁଲ ଆସେ । ଏହି ଗୁଳ୍ମକୁ ଏକ ପ୍ରତୀକ ଗୁଳ୍ମ ରୂପେ ଲନ ମଝିରେ କିମ୍ବା ପିଚୁଦ୍ରୁମରେ ଲଗାଯାଇ ପାରେ । ଏହାର ଫୁଲଗୁଡ଼ିକ ମାଳ ତିଆରି ଓ ଫୁଲ ସଜାରେ ବ୍ୟବହାର କରାଯାଇଥାଏ । T. coronaria flora plano ର ପତ୍ର ଫିକା ସବୁଜ ରଙ୍ଗ ଓ ଏହା ସୁବାସିତ । ଏଥିରେ ବହୁ ଦଳାବରଣ ବିଶିଷ୍ଟ ଫୁଲ ଫୁଟେ ।

**ରସେଲିଆ** (Russelia juncea, Scrophulariaceae)- ରସେଲିଆ ଏକ ମେକ୍ସିକୋ ଦେଶୀୟ ଗୁଳ୍ମ । ଏହି ପ୍ରଜାତିରେ ୨୦ ପ୍ରକାର ଚିରସବୁଜ ଗୁଳ୍ମ ଦେଖାଯାଏ । ଏହା ୧ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛର ଦୁର୍ବଳ କାଣ୍ଡଗୁଡ଼ିକ ଚାରିପଟକୁ ଝୁଲିକରି ବଢ଼େ । ସେଥିରେ ଗାଢ଼ ଲାଲ ବର୍ଣ୍ଣର ନଳୀ ଆକୃତିର ଫୁଲ ଫୁଟେ । ତଳୁ ବହାରିଥିବା ଭୂସ୍ତାରୀ ଦ୍ୱାରା ଏହାର ବଂଶ ବିସ୍ତାର ହୋଇଥାଏ । ଉନ୍ମୁକ୍ତ ପ୍ରାଙ୍ଗଣରେ ଉର୍ବର ମାଟିରେ ଏହା ଭଲ ବଢ଼େ । ଗଛମୂଳକୁ ସର୍ବଦା ଓଦା ରଖିବା ଉଚିତ । ଏହାର କାଣ୍ଡଗୁଡ଼ିକ ଦୁର୍ବଳ ହୋଇଥିବାରୁ ମଝିରେ

ବାଉଁଶ ପୋତି ଏହାକୁ ବାନ୍ଧିବା ଉଚିତ । ଟେରାସ ଉଦ୍ୟାନର (Terrace garden) ଲନ୍ ଚତୁଃପାର୍ଶ୍ୱ, ଗୁଳ୍ମୋଦ୍ୟାନର ଶେଷ ଧାଡ଼ିରେ ଏହାକୁ ଲଗାଯାଇ ପାରେ । ଏହା ବ୍ୟତୀତ ଦୋଳାୟମାନ କୁଣ୍ଡରେ (Hanging basket) ଏହାକୁ ଲଗାଇଲେ ଖୁବ୍ ସୁନ୍ଦର ଦିଶେ । ଫୁଲ ଫୁଟି ସାରିଲା ପରେ ଗଛଗୁଡ଼ିକୁ ସାମାନ୍ୟ କଟାକଟି କରିଦେବା ଉଚିତ ।

**ଡାଳିମ୍ବ** (Punica granatum, Punicaceae) - ଡାଳିମ୍ବ ଏକ ଫଳଗଛ ହେଲେ ବି ଉଦ୍ୟାନର ଶୋଭାପାଇଁ ଏହାକୁ ବଗିଚାରେ ଲଗାଯାଇଥାଏ । ଏହା ଏକ ଇରାନ୍ ଦେଶୀୟ ଗୁଳ୍ମ । ୨ ରୁ ୩ ମିଟର ଉଚ୍ଚ ହୁଏ । ଡାଳଗୁଡ଼ିକ ହାତକୁ କଣ୍ଟା କଣ୍ଟା ଲାଗେ । ପତ୍ରଗୁଡ଼ିକ ଦୀର୍ଘାକାର, ସମପାର୍ଶ୍ୱୀ ଏବଂ ବସନ୍ତ କାଳରେ ପତ୍ର କଅଁଳି ଫୁଲ ଫୁଟେ । ଫୁଲଗୁଡ଼ିକ ଗାଢ଼ ଲାଲ ରଙ୍ଗର । ଗଛଗୁଡ଼ିକ କଟାକଟି କରି ରଖିବା ପ୍ରୟୋଜନ । P. nana ରେ ବହୁ ଦଳାବରଣ ବିଶିଷ୍ଟ ଫୁଲ ଫୁଟେ । ଜାପାନୀ ଉଦ୍ୟାନଗୁଡ଼ିକରେ ଏହାର ଆଦର ବେଶୀ । ଗୁଳ୍ମ ଉଦ୍ୟାନର ସମ୍ମୁଖ ଧାଡ଼ିରେ କିମ୍ବା ଲନ୍ ମଝିରେ ଏହାକୁ ପ୍ରତୀକ ଗଛରୂପେ ଲଗାଯାଇ ପାରେ । ଖର୍ବାକାୟ କିସମର ଡାଳିମ୍ବକୁ କେବଳ ବଗିଚାରେ ଲଗାଯିବା ଉଚିତ ।

**ରକ୍ତଚିତା ଓ ଶ୍ୱେତଚିତା** (*Plumbago capensis,* Plumbaginaceae) ଉଷ୍ଣମଣ୍ଡଳୀୟ ଅଞ୍ଚଳମାନଙ୍କରେ ପ୍ଲମ୍ବାଗୋ ଏକ ପ୍ରଧାନ ଶାକୀୟ ଗୁଳ୍ମ । ଏହା ଲତାପରି ବଢ଼େ । ଗଛଗୁଡ଼ିକ ଚିରହରିତ ଓ ଲୋମଶ । ଏହା ୫୦ ସେ.ମି. ରୁ ଦୁଇମିଟର ଯାଏ ଉଚ୍ଚ ହୁଏ । ପତ୍ରଗୁଡ଼ିକ କ୍ଷୁଦ୍ର, ଘନ ସବୁଜ ଓ ଅଣ୍ଡାକୃତି । ଡାଳର ଅଗ୍ରଭାଗରେ ଫୁଲ ଫୁଟେ । ସାମାନ୍ୟ ଛାଇ ପଡୁଥିବା ସ୍ଥାନରେ ଏହା ଲଗାଯାଇପାରେ । ମଞ୍ଜି ଓ ଡାଳକଲମି ଦ୍ୱାରା ନୂଆ ଗଛ କରାଯାଏ । ଗ୍ରୀଷ୍ମ ଓ ବର୍ଷାକାଳରେ ଗଛରେ ଫୁଲ ଫୁଟେ । ରକ୍ତଚିତା (*Plumbago rosea*) ଫୁଲ ଆକର୍ଷଣୀୟ ଗୋଲାପି ଲାଲ ଏବଂ p. alba ର ଫୁଲ ଧଳା ଅଟେ । *P. zeylanica* ର ଫୁଲ ନୀଳରଙ୍ଗର ।

**ପେଣ୍ଟାସ** (Pentas lanceolata, Rubiaceae) - ପେଣ୍ଟାସ ଏକ ଶାକୀୟ ଗୁଳ୍ମ ଓ ଉଷ୍ଣମଣ୍ଡଳୀୟ ଆଫ୍ରିକୀୟ ଉଦ୍ଭିଦ । ଏହା ୫୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛଗୁଡ଼ିକ ଗୁମ୍ଫା ହୋଇ ବଢ଼େ । ପତ୍ରଗୁଡ଼ିକ ଲୋମଶ ଓ ଘନ ସବୁଜରଙ୍ଗ । ଡାଳକଲମି ଦ୍ୱାରା ଏହାର ବଂଶ ବିସ୍ତାର କରାଯାଏ । ସାମାନ୍ୟ ଛାଇ ପଡୁଥିବା ସ୍ଥାନରେ ଏହା ଭଲ ବଢ଼େ । ବର୍ଷକ ମଧ୍ୟରେ ଥରେ ଫୁଲ ଫୁଟେ । ଫୁଲ ଡେମ୍ଫବିହିନ ଓ ପ୍ରତ୍ୟେକ ପେଛାରେ ୬୦ଟି କରି ଫୁଲ ଥାଏ । *P. alba* କିସମରେ ଧଳା, P. **purpurea** କିସମରେ ବାଇଗଣି ଏବଂ P. **kermeciana** ରେ ଗାଢ଼ ଲାଲ ଫୁଲ ଫୁଟେ । ଏଗୁଡ଼ିକରେ ବର୍ଷକୁ ଅନେକ ମୁଥ ଫୁଲ ଆସେ ।

**ସୁଗନ୍ଧରାଜ** (Gardenia sp. Rubiaceae) ସୁଗନ୍ଧଭରା ପୁଷ୍ପମାନଙ୍କ ମଧ୍ୟରେ ସୁଗନ୍ଧରାଜ ଅନ୍ୟତମ । ଏହା ଏକ ଗ୍ରୀଷ୍ମମଣ୍ଡଳୀୟ ଉଦ୍ଭିଦ । ଏହି ପ୍ରଜାପତିରେ ୬୦ଟି ଜାତି ଅଛି । ସୁଗନ୍ଧରାଜ ୨-୩ ମିଟର ପର୍ଯ୍ୟନ୍ତ ବଢ଼େ । କଟାକଟି କରି ଏହାକୁ ଛୋଟ ଅବସ୍ଥାରେ ରଖାଯାଇ ପାରେ । ପତ୍ରଗୁଡ଼ିକ ଘନସବୁଜ ଓ ବର୍ଚ୍ଛାକାର । ଶିରାଗୁଡ଼ିକ ସ୍ପଷ୍ଟ । ନୂଆଡାଳ ଅଗରେ ଏବଂ ପାର୍ଶ୍ୱ ଡାଳରେ ଫୁଲଧରେ । ଫୁଲଗୁଡ଼ିକ ଧଳା, ବହୁଦଳାବରଣ ବିଶିଷ୍ଟ ଏବଂ ସୁବାସଯୁକ୍ତ । ଗ୍ରୀଷ୍ମଋତୁରେ ଓ ବର୍ଷାଋତୁରେ ଫୁଲ ଫୁଟେ । ଗଛରେ ପତ୍ର ନଥିଲା ସମୟରେ ବହୁତ ଫୁଲ ଫୁଟିଥାଏ । ଗୁଟି ଓ ଡାଳକଲମି ଦ୍ୱାରା ଗଛ କରାଯାଏ । ଉର୍ବର ମାଟିରେ ଏହା ଭଲ ବଢ଼େ । ଲନର ଚାରିକଣ, ଗୃହ ସନ୍ନିକଟ କିମ୍ବା କୁଣ୍ଡରେ ଏହାକୁ ଲଗାଯିବା ଉଚିତ । ସୁଗନ୍ଧରାଜ ଜାତିମାନଙ୍କ ମଧ୍ୟରେ G. florida ଉଦ୍ୟାନମାନଙ୍କରେ ବେଶି ଲଗାଯିବାର ଦେଖାଯାଏ । ଏହା ଅପେକ୍ଷାକୃତ ଉଚ୍ଚ, ଫୁଲ ବଡ଼ ଏବଂ ବର୍ଷାଦିନରେ ବେଶି ଫୁଟେ । G. **longistyla** ଦୁଇମିଟରରୁ କମ ଉଚ୍ଚ ହୁଏ । ଫୁଲ ମେଞ୍ଚା ମେଞ୍ଚା ହୋଇ ଫୁଟେ । ନେଷା ସୁଗନ୍ଧଯୁକ୍ତ ଓ ପାଖୁଡ଼ାଗୁଡ଼ିକ ଲମ୍ବା । **G. lucida** ରେ ପତ୍ର ଅଣ୍ଡାକାର । [illegible] ସେ.ମି. ଦୈର୍ଘ୍ୟର ଲମ୍ବା ଲମ୍ବା ଫୁଲ ଫୁଟେ ।



(ଚିତ୍ର-୫୭) ଇକସୋରା

**ଜାକୋବିନା** (*Jacobinia coccinea.* Acanthaceae)
ଜାକୋବିନା ଏକ ବାସକ ଶ୍ରେଣୀର ଗୁଳ୍ମ । ଏହା ଛାଇଯାଗାରେ ଭଲ ବଢ଼େ । ଏକ ମିଟରରୁ ଦୁଇମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ପତ୍ରଗୁଡ଼ିକ ବର୍ଚ୍ଛାକାର ଓ ଲୋମଶ । ଗାଢ଼ ଲାଲରଙ୍ଗର ଫୁଲ ଗଛର ଅଗ୍ରଭାଗରେ ଫୁଟେ । ଡାଳକଲମି ଦ୍ୱାରା ନୂଆଗଛ କରାଯାଏ । ଗଛରେ ଫୁଲ ଫୁଟିବା ପାଇଁ ୨/୩ ବର୍ଷ ଲାଗେ । ଏହାକୁ କୁଣ୍ଡ, ଗୁଳ୍ମୋଦ୍ୟାନ କିମ୍ବା ଉନ୍ମୁକ୍ତ ପ୍ରାଙ୍ଗଣରେ ଲଗାଯାଇପାରେ ।

**ଜାଟ୍ରୋଫା** (*Jatropha* sps. *Euphorbiaceae*) - ଅନାବନା ଗଛଠାରୁ ଆରମ୍ଭକରି ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ଜାଟ୍ରୋଫା ବା ବାଇଗବା ଜାତୀୟ ଗଛ ଭାରତର ଚାରିଆଡ଼େ ଦେଖାଯାଏ । ଏଗୁଡ଼ିକ ଅଳ୍ପ ଯତ୍ନରେ ସାମାନ୍ୟ ଛାଇ କିମ୍ବା ଖରା ପଡୁଥିବା ସ୍ଥାନ ସବୁଠି ସହଜରେ ବଢ଼ିପାରେ । ମଞ୍ଜି ଓ ଡାଳକଲମି ଦ୍ୱାରା ନୂଆଗଛ କରାଯାଏ । ବିଭିନ୍ନ ପ୍ରକାର ଜାଟ୍ରୋଫାର ଉଚ୍ଚତା ୧ ମିଟରରୁ ୨ ମିଟର ପର୍ଯ୍ୟନ୍ତ ହୁଏ । ଜଳ ନ ଥିବା ସ୍ଥାନରେ ମଧ୍ୟ ଏହା ବଢ଼ପାରେ । ପତ୍ରଗୁଡ଼ିକ ବର୍ଚ୍ଛାକାର ଓ ଗୋଲାକାର ହୋଇଥାଏ । ଫୁଲଗୁଡ଼ିକ ଗୋଟିଏ ସସୀମ ସ୍ତବକରେ ଆସେ । J. pandurifolia ୨ ମିଟର ଉଚ୍ଚ ହୁଏ । ଏହାର ଡେମ୍ଫ ଦନ୍ତୁରିତ ହୋଇଥାଏ । ଏଥିରେ ବର୍ଷସାରା ଲାଲରଙ୍ଗର ଫୁଲ ଫୁଟେ । ରାସ୍ତାପାଖ, କୁଣ୍ଡ ଓ ଲନ ମଝିରେ ଏହାକୁ ଲଗାଯାଇପାରେ । J. rosea ଦେଖିବାକୁ J. pandurifolia ପରି କିନ୍ତୁ ଫୁଲଗୁଡ଼ିକ ଗୋଲାପିରଙ୍ଗର । J. podagrica ର ମୂଳ ସ୍ଫୀତ ଓ କାଣ୍ଡରୁ ବାଦାମିରଙ୍ଗର ଚୋପା ଛାଡ଼େ । ପତ୍ରଗୁଡ଼ିକ ଅଙ୍ଗୁର ପତ୍ରପରି ଓ ସବୁଜ । ଫୁଲଗୁଡ଼ିକ ଲାଲ କମଳାରଙ୍ଗର ଓ ଡାଳର ଅଗ୍ରଭାଗରେ ପେଛା ପେଛା ହୋଇ ଫୁଟିଥାଏ । ଏହାକୁ ରାସ୍ତାର ଦୁଇକଡ଼ରେ ଲଗାଯିବା ଉଚିତ ।

**ମେହେନ୍ଦି** (*Lowsonia alba,* Lythraceae) - ମେହେନ୍ଦି ଉତ୍ତର ଭାରତର ଉଦ୍ୟାନଗୁଡ଼ିକରେ ଏକ ପ୍ରଧାନ ଗୁଳ୍ମ । ଏହା ୩ ମିଟର ପର୍ଯ୍ୟନ୍ତ ବଢ଼େ । ପତ୍ରଗୁଡ଼ିକ ଦେଖିବାକୁ ଛୋଟ ଓ ସବୁଜରଙ୍ଗର । ଫୁଲଗୁଡ଼ିକ ଧଳା ଓ ସୁବାସଯୁକ୍ତ । ଫୁଲଗୁଡ଼ିକ ପେଛା ପେଛା ହୋଇ ଫୁଟେ । ଏଗୁଡ଼ିକ ବାଡ଼ପାଇଁ

ବ୍ୟବହାର କରାଯାଏ । ମଞ୍ଜିଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ଏହାର ପତ୍ରଗୁଡ଼ିକ ବାଟି ନଖରେ ଲଗାଇଲେ ନଖ ଲାଲ ହୁଏ ।

**ମ୍ୟାଗ୍ନୋଲିଆ** (*Magnolia grandiflora,* Magnoliaceae) ଏହା ଏକ ଚିରସବୁଜ ଗୁଳ୍ମ । ବଡ଼ ଅବସ୍ଥାରେ ଏଗୁଡ଼ିକ ଛୋଟ ବୃକ୍ଷପରି ଦିଶନ୍ତି । ତଳୁ ବହୁତ ଡାଳ ବାହାରେ । ଡାଳଗୁଡ଼ିକ ବାଦାମି ରଙ୍ଗର । ପତ୍ର ଅଣ୍ଡାକୃତି, ଉପରପଟ ଚିକ୍କଣ ସବୁଜ ଓ ତଳପଟ ଲୋମଶ ବାଦାମିରଙ୍ଗ । ଏଗୁଡ଼ିକରେ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଶରତ ଋତୁରେ ଓ ସମତଳ ଅଞ୍ଚଳରେ ଖରାଦିନେ ଫୁଲ ଫୁଟେ । ଫୁଲଗୁଡ଼ିକ ଦେଖିବାକୁ ପଦ୍ମଫୁଲପରି ଓ ସୁବାସିତ । **M. pumila** ଏକ ମିଟର ପର୍ଯ୍ୟନ୍ତ ବଢ଼େ । ଫୁଲଗୁଡ଼ିକ ଧଳା ଓ ବାସ୍ନାଭରା । ସାଧାରଣତଃ ଗୁଟିଦ୍ୱାରା ନୂଆଗଛ କରାଯାଏ ।

**ନିରାସ** (*Memecylon umbellatum,* Melastomaceae)- ଗ୍ରୀଷ୍ମମଣ୍ଡଳୀୟ ଉଦ୍ୟାନରେ ଏଗୁଡ଼ିକ ଅରଣ୍ୟ ଉଦ୍ଭିଦ ରୂପେ ବଢ଼ିଥାଏ । ଏହା ଗୁଳ୍ମ ହେଲେ ବି ଛୋଟ ଗଛପରି ଦିଶେ । ଆମ ପ୍ରଦେଶରେ ଅନେକ ଜଙ୍ଗଲରେ ଏହା ପ୍ରଚୁର ପରିମାଣରେ ଦେଖାଯାଏ । ଗଛଗୁଡ଼ିକ ଦେଖିବାକୁ ଛୋଟ ଛୋଟ ବଉଳଗଛ ପରି । ଡାଳଗୁଡ଼ିକ ଛତାପରି ଚାରି ଦିଗକୁ ବଢ଼ିଥାନ୍ତି । ପତ୍ରଗୁଡ଼ିକ ଚିକ୍କଣ ଓ ସବୁଜ । ଡାଳଗୁଡ଼ିକ ଖରାଦିନ ପୂର୍ବରୁ ଛୋଟ ଛୋଟ ଅଳ୍ପ ସୁଗନ୍ଧିତ ଇଷତ୍ ନୀଳ ଫୁଲରେ ଭର୍ତ୍ତି ହୋଇଯାଏ । ମଞ୍ଜି ଦ୍ୱାରା ଏହାର ବଂଶ ବିସ୍ତାର ହୋଇଥାଏ ।

**ପୋର୍ଟୋଲାଣ୍ଡିଆ** (Portolandia, grandiflora, Rubiaceae) - ଏହା ଏକ ଆକର୍ଷଣୀୟ ଗୁଳ୍ମ । ୧ ୧/୨ ମିଟର ପର୍ଯ୍ୟନ୍ତ ବଢ଼େ । ପତ୍ର ଚିକ୍କଣ, ସବୁଜରଙ୍ଗ, ଫୁଲଗୁଡ଼ିକ ଧଳା ଓ ତୁରୀ ଆକୃତିର । ଫୁଲର ଲମ୍ବା ୧୨ ରୁ ୧୫ ସେ.ମି । ଡାଳକଲମି କିମ୍ବା ଗୁଟିକଲମି ଦ୍ୱାରା ଏହାର ବଂଶ ବିସ୍ତାର ହୋଇଥାଏ । ପେର୍ଟୋଲାଣ୍ଡିଆ କୁଣ୍ଡ କିମ୍ବା ଗୁଳ୍ମୋଦ୍ୟାନରେ ଲଗାଯାଇପାରେ ।

**ଷ୍ଟ୍ରୋବିଲାନ୍ଥସ** (Strobilanthus sps. Acanthaceae) ଷ୍ଟ୍ରୋବିଲାନ୍ଥସ୍ ଏକ ବାସଙ୍ଗଜାତୀୟ ଗଛ । ପତ୍ରଗୁଡ଼ିକ ଦୀର୍ଘାକାର ଓ ଶିରା

ପ୍ରଜାତିଗୁଡ଼ିକ ସ୍ପଷ୍ଟ। ବିଭିନ୍ନ ଜାତିରେ ବିଭିନ୍ନ ପ୍ରକାର ଫୁଲ ଫୁଟେ । ତାଳର ଶୀତରେ ଫୁଲ ଫୁଟିଥାଏ । ମଞ୍ଜି ଓ ଡାଳକଲମିଦ୍ୱାରା ବଂଶ ବିସ୍ତାର ହୋଇଥାଏ । S scaber ଏକ ଖର୍ବକାୟ ବ୍ଲୋବିଲାଷସ । ମାର୍ଚ୍ଚ ମାସରେ ଏଥିରେ ହଳଦିଆ ରଙ୍ଗର ଫୁଲ ଫୁଟେ । କିନ୍ତୁ *S. pulcherrimus* ରେ ଗାଢ଼ ଗୋଲାପି ରଙ୍ଗର ଫୁଲ ଫୁଟେ । ଏଗୁଡ଼ିକୁ ସାଧାରଣତଃ କୁଣ୍ଡରେ ଲଗାଯାଇଥାଏ । ଅରଣ୍ୟ ଉଦ୍ୟାନଗୁଡ଼ିକରେ ଏହାକୁ ବ୍ୟବହାର କରାଯିବା ଉଚିତ ।

**ମଲ୍ଲୀ** (Jasminum sambac, Oleaceae)- ଭାରତର ପ୍ରତ୍ୟେକ ରାଜ୍ୟରେ ମଲ୍ଲୀ ଏକ ପ୍ରଧାନ ସୁବାସିତ ଉଦ୍ୟାନଗୁଳ୍ମ । ବିଭିନ୍ନ ସ୍ଥାନରେ ଏହା ବେଲା, ମୋତିଆ ପ୍ରଭୃତି ନାମରେ ପରିଚିତ । ମଲ୍ଲୀ ଏକ ଗ୍ରୀଷ୍ମମଣ୍ଡଳୀୟ ଚିରହରିତ ପୁଷ୍ପବାହୀ ଗୁଳ୍ମ । ଏହା ଏକ ମିଟରରୁ ଦେଢ଼ ମିଟର ପର୍ଯ୍ୟନ୍ତ ବଢ଼ିପାରେ, କାଣ୍ଡଗୁଡ଼ିକ ପାଉଁଶିଆ ରଙ୍ଗ ଓ ପ୍ରତ୍ୟେକ ଗଣ୍ଠି ପାଖରେ ଦୁଇ ତିନୋଟି ପତ୍ର ଆସେ । ଅଳ୍ପ ପାଖୁଡ଼ାରୁ ଆରମ୍ଭକରି ବହୁ ପାଖୁଡ଼ା ପର୍ଯ୍ୟନ୍ତ ମଲ୍ଲୀଫୁଲ ଦେଖାଯାଏ । ଯେଉଁ ମଲ୍ଲୀ ଗଛର ପତ୍ରବଡ଼, ସେଥିରେ ଭଲ ଫୁଲ ଧରେ । ଡାଳକଲମି ଦ୍ୱାରା ନୂଆଗଛ କରାଯାଏ । ସାଧାରଣତଃ ବର୍ଷାଦିନେ ଡାଳଗୁଡ଼ିକ ଲଗ ଯାଏ । ବର୍ଷକରେ ଗଛରେ ଥରେ ଫୁଲ ଆସେ । ଏକ କ୍ଷୁଦ୍ର ବୃତି ଭିତରେ ଫୁଲଗୁଡ଼ିକ ଲାଗିରହିଥାଏ । ଫୁଲ ଚାଷ ପାଇଁ J. pubescens ବେଶୀ ଉପଯୁକ୍ତ । ଏଗୁଡ଼ିକ ଛୋଟ ଲତାପରି ୪/୫ ମିଟର ବଢ଼ିପାରନ୍ତି । ପତ୍ରଗୁଡ଼ିକ ହୃତ୍‌ପିଣ୍ଡ ଆକୃତିର । ଫୁଲଗୁଡ଼ିକ ଧଳା ଓ ସୁଗନ୍ଧଯୁକ୍ତ ଓ ପେଣ୍ଡା ପେଣ୍ଡା ହୋଇ ଫୁଟେ ସାଧାରଣତଃ ଫୁଲ ଗ୍ରୀଷ୍ମକାଳରେ ଆସେ । ପ୍ୟୁବେସେନସ୍‌କୁ ଏକ ପ୍ରକାର ଘେର ରୂପେ ବ୍ୟବହାର କରାଯାଏ । ଏଥିରେ ଶୀତକାଳରୁ ଆରମ୍ଭକରି ଖରାଦିନ ପର୍ଯ୍ୟନ୍ତ ଫୁଲ ଫୁଟିଥାଏ । J. auriculatum ବା ଜୁଇକୁ ଏହି ଜାତୀୟରେ ... ଏବଂ ଫୁଲ ... ପାଇଁ ଏହାକୁ ଚାଷ କରାଯାଏ । J. arborescens ର ଫୁଲଗୁଡ଼ିକ ବେଶୀ ସୌନ୍ଦର୍ଯ୍ୟଯୁକ୍ତ କିନ୍ତୁ ଏହା ଲତାପରି ନୁହେଁ ।

**କେତକୀ** ( *Pandanus odoratissimus*, Pandanaceae)
କେତକୀ ଏକ ଏସିଆ ଭାରତର ନିଜସ୍ୱ ଗୁଳ୍ମ । ଏହି ପ୍ରଜାତିରେ ପ୍ରାୟ ୧୪୦ ପ୍ରକାର ଜାତି ଅଛି । ଏହାକୁ ସାଧାରଣ ଭାଷାରେ Screw pine କହିଥାନ୍ତି । କିଆ ଓ କେତକୀ ସାଧାରଣତଃ ସମୁଦ୍ରକୂଳ ସ୍ଥାନମାନଙ୍କରେ ବଢ଼ିଥାନ୍ତି । ଏହାର ବଂଶବିସ୍ତାର ସ୍ୱାଭାବିକ ସାହାଯ୍ୟରେ କରାଯାଏ । ଏଗୁଡ଼ିକ ୪/୫ ମିଟର ଉଚ୍ଚ ହୁଅନ୍ତି । ପତ୍ରଗୁଡ଼ିକ ଦୀର୍ଘ ଓ ଏକ ଧାରକୀ କାଣ୍ଡରେ ଚାରିପଟେ ଘେରି ରହିଥାନ୍ତି । ପତ୍ରର ଧାର କଣ୍ଟାଯୁକ୍ତ । ଗଛକୁ ଚେରମୂଳଗୁଡ଼ିକ ଠିଆହୋଇ ରହିବାରେ ସାହାଯ୍ୟ କରିଥାନ୍ତି । ଏହାର ପୁଷ୍ପଗୁଡ଼ିକ ଏକ ମଞ୍ଜରୀସ୍ତବକ (spadix)ରେ ଥାଏ । ପୁରୁଷ ଗଛ ଗୁଡ଼ିକ ଶାଖା ପ୍ରଶାଖା ମେଲି ବଢ଼େ କିନ୍ତୁ ସ୍ତ୍ରୀ ଗଛ ଗୁମ୍ଫା ହୋଇ ବଢ଼େ । ଏହା ଖରାଦିନେ ଫୁଟେ । ନଦୀପାଖ, ପୋଖରୀପାଖ ଓ ସାନ୍ତସାନ୍ତିଆ ସ୍ଥାନମାନଙ୍କରେ ଏହା ସ୍ୱତଃ ବଢିଥାଏ । ତେବେ ବଗିଚାରେ ଏହାକୁ ପ୍ରତୀକ ଗୁଳ୍ମରୂପେ ବ୍ୟବହାର କରାଯାଇପାରିବ । P. veitchii ଏକ ସୌନ୍ଦର୍ଯ୍ୟଯୁକ୍ତ କିଆ । ଏହାର ପତ୍ରଗୁଡ଼ିକରେ ଈଷତ୍ ହଳଦିଆ ମିଶା ଧଳା ଦାଗ ଥାଏ । ଏହାକୁ କୁଣ୍ଡରେ ଓ ଲନ ମଝିରେ ଲଗାଯାଇପାରେ । P. latifolius କୁ ଅନ୍ନପୂର୍ଣ୍ଣା ଗଛ କୁହାଯାଏ । ଏଗୁଡ଼ିକର ପତ୍ର ସରୁ ଓ ସୁବାସଯୁକ୍ତ ।

**ଦୁଦୁରା** (Datura suaveolens, Solanaceae)- ଏହି ଗୁଳ୍ମଟି ୩ ମିଟର ଉଚ୍ଚ ହୁଏ । ପତ୍ରଗୁଡ଼ିକ ସମ ବୃନ୍ତାଭାସ ଓ ସବୁଜରଙ୍ଗ । ଶରତକାଳରେ ଗଛରେ ମେଞ୍ଚା ମେଞ୍ଚା ହୋଇ ତୂରୀ ଆକାରରେ ଧଳା ଫୁଲ ଫୁଟେ । ମଂଜି ଓ ଡାଳ କଲମି ଦ୍ୱାରା ନୂଆଗଛ କରାଯାଏ । ଏହା ଛାଇ ସ୍ଥାନରେ ଭଲ ବଢ଼ିପାରେ । ୨/୩ ବର୍ଷ ପରେ ପୁରୁଣାଗଛ ଉପାଡ଼ି ନୂଆଗଛ ଲଗାଇବା ଉଚିତ । ଏହାକୁ ସାଧାରଣତଃ ଏକ ପ୍ରତୀକ ଗଛ ରୂପେ କିମ୍ବା ରାସ୍ତାର ଦୁଇପାଖରେ ଲଗାଯାଇଥାଏ । ପ୍ରାକୃତିକ ଉଦ୍ୟାନଗୁଡ଼ିକ ପାଇଁ ଏହା ଏକ ଉପଯୁକ୍ତ ଗୁଳ୍ମ ।

**ଟର୍ଣ୍ଣେରା** (Turneara ulmifolia, Turnraceae) ଟର୍ଣ୍ଣେରା ୬୦/୭୦ ସେମି ଉଚ୍ଚ ହୁଏ । ଏହାର ପତ୍ରଗୁଡିକ ସବୁଜରଙ୍ଗ ଓ ଧାର ଦାନ୍ତୁରିଆ ।

ମଞ୍ଜି ଦ୍ୱାରା ନୂଆଗଛ କରାଯାଇଥାଏ । ଗଛରେ ବର୍ଷସାରା ବୃନ୍ତହୀନ ବୃତି ଭିତରେ ସୁନାରଙ୍ଗର ହଳଦିଆ ଫୁଲ ଫୁଟେ । ଫୁଲଗୁଡ଼ିକ ସକାଳେ ଫୁଟ ମଧ୍ୟାହ୍ନବେଳକୁ ମଉଳିଯାଏ । ଏହାକୁ ଫୁଲ ପଟାଳି କିମ୍ବା କୁଣ୍ଡରେ ଲଗାଯିବା ଉଚିତ । ଏହା ଏକ ଶାକୀୟ ଗୁଳ୍ମ ।

**ବଗନଭିଲା** (Bougainvillea sps. Nyctaginaceae)- ଆଧୁନିକ ଉଦ୍ୟାନଗୁଡ଼ିକରେ ବଗନଭିଲା ବ୍ୟବହାର ଦିନକୁ ଦିନ ବୃଦ୍ଧି ପାଉଛି । ଏହା ଏକ ବ୍ରାଜିଲ ଦେଶୀୟ ଗୁଳ୍ମ । ବିଭିନ୍ନ ଆକାର, ବିଭିନ୍ନ ଉଚ୍ଚତା ଓ ଭିନ୍ନ ରଙ୍ଗର ଫୁଲରେ ପରିପୂର୍ଣ୍ଣ । ବଗନଭିଲାଗୁଡ଼ିକ ସାଧାରଣତଃ ଗୁଳ୍ମ ଆକାରରେ କିମ୍ବା ଲତାପରି ବଢ଼ିଥାନ୍ତି । ଲମ୍ବା ଲମ୍ବା ଡାଳରେ ପତ୍ରଗୁଡ଼ିକ ପ୍ରତ୍ୟେକ ଗଣ୍ଠିରୁ ବାହାରିଥାଏ ଓ ପତ୍ର ପାଖରେ ଗୋଟିଏ କଣ୍ଟାଥାଏ । ଫୁଲଗୁଡ଼ିକ ଲମ୍ବା ଡାଳରେ ତଳୁ ଗଛ କରାଯାଏ । ଫୁଲଭଳି ଦିଶୁଥିବା ପାଖୁଡ଼ାଗୁଡ଼ିକ ପ୍ରକୃତରେ ଉପବୃତି (Bract) ଅଟେ । ତିନୋଟି ଉପବୃତି ଭିତରେ ତିନୋଟି ଫୁଲ ତାରାଭଳି ଫୁଟିଥାଏ । ଲାଲ, କମଳା, ଧଳା, ବାଇଗଣି, ହଳଦିଆ ପ୍ରଭୃତି ବିଭିନ୍ନ ରଙ୍ଗର ବଗନଭିଲା ଦେଖିବାକୁ ମିଳେ । ବଗନଭିଲାକୁ ଚାରିଭାଗରେ ବିଭକ୍ତ କରାଯାଏ ଯଥା ପେରୁଭିଆନା, ବୁଟିଆନା, ଗ୍ଲାବ୍ରା ଓ ସ୍ପେକ୍ଟାବିଲିସ୍‌ର । ପେରୁଭିଆନା ଓ ବୁଟିଆନାର ପୁଷ୍ପଦଣ୍ଡର ମଧ ଭାଗ କୃଶ କିନ୍ତୁ ଗ୍ଲାବ୍ରା ଓ ସ୍ପେକ୍ଟାବିଲିସ୍‌ର ତଳଭାଗ ସ୍ଫୀତ । ପେରୁଭିଆନା ଅନ୍ତର୍ଗତ ବଗନଭିଲାର ଫୁଲ ଗୁଡ଼ିକ ଗୋଲାପି କିମ୍ବା ଗାଢ଼ ଗୋଲାପ ରଙ୍ଗର ଅଟେ । ଲେଡ଼ି ହଡ଼ସନ, ଇକୁଏଡ଼ର ପିଙ୍କ, ମେରିମମର, ଡକ୍ଟର ବି.ପି. ପାଲ, ଶୁଭ୍ରା ଓ ଫାଣ୍ଟାସି ଏହାର ପ୍ରଧାନ କିସମ । ମେରିମାମର ଓ ଥିମାରେ ଗୋଲାପି ଓ ଧଳାରଙ୍ଗର ଫୁଲ ମିଶିକରି ଫୁଟେ; କିନ୍ତୁ ଥିମାର ପତ୍ରରେ ହଳଦିଆ ଦାଗ ଥାଏ । ଗ୍ଲାବ୍ରାର ଫୁଲ ସାଧାରଣତଃ ବାଇଗଣି । ସାଣ୍ଡେରିଆନା, ଫର୍ମୋଜା, ସ୍ନୋହ୍ୱାଇଟ ପ୍ରଭୃତି ଗ୍ଲାବାର ଉତ୍ତମ କିସମ । ସ୍ନୋହ୍ୱାଇଟର ପତ୍ର ଗାଢ଼ ସବୁଜ ଓ ସେଥିରେ ବରଫରଙ୍ଗର ଧଳା ଫୁଲ ଫୁଟେ । ସ୍ପେକଟାବିଲିସ୍‌ର ଫୁଲ ସାଧାରଣତଃ ଇଟାରଙ୍ଗ । ଲାଟେରିଟା, ରିଫଲଜେନସ ଓ କାନେଲି କିମସ୍ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ । ବୁଟିଆନା ଅର୍ନ୍ତଗତ ଭଲ କିସମ ହେଲା ମିସେସ୍ ବଟ, ମାଜେଣ୍ଟାକୁଇନ୍, ପରପଲକିଙ୍ଗ, ଗୋଲଡ଼େନ



(ଚିତ୍ର-୫୮) ବଗନଭିଲା

ଗ୍ଲୋ, ଲେଡ଼ିମେରି ବାରିଙ୍ଗ ପ୍ରଭୃତି । ଲେଡ଼ିମେରି ବାରିଙ୍ଗରେ ସବୁଠାରୁ ବେଶୀ ସୌନ୍ଦର୍ଯ୍ୟପୂର୍ଣ୍ଣ ହଳଦିଆରଙ୍ଗର ଫୁଲ ଫୁଟେ । ବହୁ ଉପଦଳ ଥିବା ବଗନ୍‌ଭିଲାକୁ ମିଲିଅନ୍‌ଡଲାର କୁହାଯାଏ । ଏଗୁଡ଼ିକରେ ତିନୋଟି ଉପବୃତି ବଦଳରେ ୨୦ ରୁ ୪୦ ପର୍ଯ୍ୟନ୍ତ ଉପବୃତ୍ତି ଥାଏ । ତେଣୁ ଫୁଲଗୁଡ଼ିକ ପେଣ୍ଡା ପେଣ୍ଡା ହୋଇ ଫୁଟେ ।

ମାହାରା, ଆଲୋକ, ଚେରିବ୍ଲସମ, ଡବଲ ହ୍ୱାଇଟ ଓ ଡବଲ ପିଙ୍କ ଏହାର ଅନ୍ତର୍ଗତ । ଥିମା, ସ୍କାରଲେଟ୍ କୁଇନ୍, ରାଓ, ଭାବା ଓ ଶର୍ମା ପ୍ରଭୃତି ଜାତିର ପତ୍ର ଚିତ୍ରବିଚିତ୍ର । ବଗନଭିଲାର ଦୁଇ ପ୍ରକାର ରଙ୍ଗର ଫୁଲ ଫୁଟୁଥିବା

ଜାତିଗୁଡ଼ିକ ହେଲା ମେରିଯାମର, ଥୁମା, କ୍ରିମସନ ଏଲୋ, ସନସେଟ ଓ ମାଷ୍ଟାମି । ବଗନଭିଲାକୁ ଜଳ ନିଷ୍କାସିତ ହୋଇପାରୁଥିବା ଯେ କୌଣସି ମାଟିରେ ଲଗାଯାଇ ପାରେ । ୨ ରୁ ୩ ମିଟର ଦୂରତାରେ ୯୦ ସେ.ମି. ଓସାର ଓ ୨୫ ସେ ମି. ଗଭୀରରେ ଗାତଖୋଳି ଗାତ ପିଛା ୩ ରୁ ୪ ଝୁଡ଼ି ଖତ ଦେଇ ଗଛ ଲଗାଯାଏ । ୧ ୩ ୨ ଯବକ୍ଷାରଯାନ ଫସ୍‌ଫରସ ଓ ପଟାସ ସାର ମିଶ୍ରଣରୁ ଗଛପିଛା ୨୫୦ ଗ୍ରାମ ହିସାବରେ ଲଗାଇବାର ଦ୍ୱିତୀୟ ବର୍ଷଠାରୁ ଦେବାକୁ ହୋଇଥାଏ । ବର୍ଷାଋତୁ ପୂର୍ବରୁ ଗଛକୁ କଟାକଟି କରିଦେବା ଆବଶ୍ୟକ । ଫୁଲ ଫୁଟିବା ପୂର୍ବରୁ କଟାକଟି କଲେ ଫୁଲ କମିଯାଏ । ଡାଳକଲମି ଓ ଭୂମି କଲମି ଦ୍ୱାରା ନୂଆ ବଗନଭିଲା ଗଛ କରାଯାଏ । ସେରାଡ଼ିକ୍ସ ବି-୩ ପାଉଡ଼ର ଲଗାଇ ଡାଳକଲମି କଲେ ଶୀଘ୍ର ଚେର ବାହାରିଥାଏ ।



॥ ଏକାଦଶ ପରିଚ୍ଛେଦ ॥

# ଗୋଲାପ ଓ ସେବତୀ

## ଗୋଲାପ

## (Rose)

ଗୋଲାପ ଫୁଲମାନଙ୍କ ମଧ୍ୟରେ ରାଣୀ । ଗୋଲାପ ଫୁଲର ପ୍ରସିଦ୍ଧି ମାନବ ସମାଜର କଳା, ଶିଳ୍ପ, ଭାସ୍କର୍ଯ୍ୟ କାବ୍ୟ କବିତାରେ ଦେଖିବାକୁ ମିଳେ । କଥିତ ଅଛି ରୋମର ସମ୍ରାଟ ନିରୋ ଗୋଲାପ ପାଖୁଡ଼ା ଉପରେ ଚାଲୁଥିଲେ । କ୍ଲିଓପାଟ୍ରା ଜୁଲିଏସ ସିଜରଙ୍କୁ ଗୋଲାପ ଫୁଲର ଗାଲିଚା ତିଆରି କରି ଅଭିନନ୍ଦନ ଜଣାଇଥିଲେ । ନୁରଜାହାନ ପ୍ରଥମ କରି ଭାରତର ଗୋଲାପ ଫୁଲର ଅତର ତିଆରି କରି ସେଥିରେ ସ୍ନାନ କରୁଥିଲେ ।

ଗୋଲାପ ଫୁଲ ଦେଖିବାକୁ ଯେପରି ସୁନ୍ଦର ତାହାର ସୁବାସ ମଧ୍ୟ ସେହିପରି ଆମୋଦଦାୟକ । ଗୋଲାପ ଫୁଲର ପାଖୁଡ଼ାରୁ ଗୁଲକନ୍ଦ ନାମକ ଏକ ଖାଦ୍ୟ ତିଆରି କରାଯାଏ । ଗୋଲାପ ଫୁଲରୁ ଅତର ବାହାର କରି ବିକ୍ରି କରାଯାଏ । କେବଳ ଗୋଲାପ ଗଛ ଲଗାଇ ଗୋଲପ ବଗିଚା (Rosary)ମାନ ତିଆରି କରାଯାଏ । ଦୂଷିତ ବାୟୁମଣ୍ଡଳକୁ ସଫା କରିବା ପାଇଁ ଗୋଲାପ ଗଛ ବହୁ ପରିମାଣରେ ସାହାଯ୍ୟ କରିଥାଏ । ଗୋଲାପ ଫଳରେ ବହୁଳ ଖାଦ୍ୟପ୍ରାଣ 'ଗ' ଥାଏ । ଗୋଲାପ ପାଖୁଡ଼ାକୁ ଅନେକ ଔଷଧ ରୂପେ ବ୍ୟବହାରା କରିଥାନ୍ତି ।

ଆଜିକାଲି ବଗିଚାରେ ବହୁପ୍ରକାର ଗୋଲାପ ଦେଖିବାକୁ ମିଳେ । ଏହାର ମଂଛି ପରପରାଗ ସଂଗମଦ୍ୱାରା ସଂଗଠିତ ହେଉଥିବା ହେତୁ ବିଭିନ୍ନ ରଙ୍ଗର ଓ ଆକୃତିର ଗୋଲାପ ଦେଖାଯାଏ । ୧୮୬୭ ମସିହାରେ ଫ୍ରାନ୍‌ସର ଉଦ୍ଭିଦବିତ୍ ଗୁଇଲଟ୍ ପ୍ରଥମ କରି "ଲାଫ୍ରାନସ୍" ନାମକ ପ୍ରଥମ ହାଇବ୍ରିଡଟି ଗୋଲାପ ବାହାର କରିଥିଲେ । ୧୯୧୦ ମସିହାରେ ଡାନିସ୍ ଉଦ୍ଭିଦବିଦ୍ ପ୍ରଥମ ଫ୍ଲୋରିବୁଣ୍ଡା ଗୋଲାପ ବାହାର କରିଥିଲେ । ପୃଥିବୀର ଗୋଲାପଗୁଡ଼ିକଙ୍କୁ

କେତେକ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇଅଛି । ସେମାନଙ୍କ ମଧ୍ୟରୁ ହାଇବ୍ରିଡ୍‌ଟି ଗୋଲାପଗୁଡ଼ିକର ଗଛ ହୃଷ୍ଟପୁଷ୍ଟ । ଏହା ବୁଦା ଆକାରରେ ବଢ଼େ । ପ୍ରତ୍ୟେକ ଡେମ୍ଫରେ ଗୋଟିଏ ଫୁଲ ଫୁଟେ । ଫୁଲର ପାଖୁଡ଼ା ଗୋଟିଏ ଉପରେ ଗୋଟିଏ ସଜାଇ ହୋଇ ରହିଥାଏ ଓ ଫୁଲ ଆସ୍ତେ ଆସ୍ତେ ଖୋଲେ । ଫୁଲର ବାସ୍ନା ଚା ପତ୍ରର ବାସ୍ନାପରି । ପ୍ରଧାନ ପ୍ରଧାନ ହାଇବ୍ରିଡ୍‌ଟି ଗୋଲାପ ମଧ୍ୟରେ ପିସ୍,



(ଚିତ୍ର-୫୯) ହାଇବ୍ରିଡ୍‌ଟି ଗୋଲାପ

କନଫିଡ଼େନସ୍, କିସ୍ ଅଫ ଫାଏର, ମଣ୍ଟେଜୁମା, ପିକଚର, ସୁପର ଷ୍ଟାର, ବ୍ଲୁ ମୁନ୍, ଚିକାଗୋପିସ, ଏଫଏଲଟାଓର, ଫାଷ୍ଟପ୍ରାଇଜ, ଫ୍ରାଗ୍ରାଣ୍ଟକ୍ଲାଉଡ଼, ଗାର୍ଡ଼ନ ପାର୍ଟି, ଗ୍ରୀନାଡ଼ା, କିଙ୍ଗସ୍ ରାନ୍‌ସମ୍, ଓକ୍ଲାହାମା, ସୋ ଗାର୍ଲ, ମିଷ୍ଟର ଲିଙ୍କନ, ଆଲେକ୍‌ରେଡ଼, ସୁଗନ୍ଧ, କ୍ରିମସନ୍‌ଗ୍ଲୋରୀ, ପଣ୍ଡିତ ନେହରୁ, ଅରବିନ୍ଦ, ରାଧାକ୍ରିଷ୍ଣନ, କିଗେନ୍, ଫାଣ୍ଡାନ୍‌ବ୍ଲୁ ପ୍ରଭୃତି ପ୍ରଧାନ । ଫ୍ଲୋରିବୁଣ୍ଡା ଜାତିର

ଗୋଲାପ ଗଛଗୁଡ଼ିକ ଅଳ୍ପ ଉଚ୍ଚରେ ଚାରିଆଡ଼କୁ ପ୍ରସାରିତ ହୋଇ ବଢ଼େ । ଗୋଟିଏ ଡେ଼ମ୍ଫରେ ଶାଖାପ୍ରଶାଖା ମେଲି ଦୁଇ ତିନୋଟିରୁ ଅଧିକ ଫୁଲ ଫୁଟେ । ଫୁଲଗୁଡ଼ିକର ପାଖୁଡ଼ା ପଲିଆନ୍ଥା ଗୋଲାପ ପରି ଏକାବେଳକେ ଖୋଲେ କିମ୍ବା ହାଇବ୍ରିଡ୍‌ଟି ପରି ଗୋଟିଏ ପରେ ଗୋଟିଏ ଖୋଲେ । ବହୁରଙ୍ଗର ଫ୍ଲୋରିବୁଣ୍ଡା ଗୋଲାପ ଦେଖିବାକୁ ମିଳେ । ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ହାଇବ୍ରିଡ୍‌ଟି



(ଚିତ୍ର-୬୦) ଫ୍ଲୋରିବୁଣ୍ଡା ଗୋଲାପ

ଅପେକ୍ଷା ଏଗୁଡ଼ିକ ବିଶେଷ ଦରକାରୀ । ଚାର୍ଲସଟନ୍, ଏଲିଜାବେଥ୍ ଅଫ ଗ୍ଲେମିସ୍, ଫ୍ଲେମାଙ୍ଗ, ହିମାଙ୍ଗିନୀ, ପେଣ୍ଟବକ୍ସ, ରୁମ୍ବା, ସୋଲ, ଜାମ୍ବ୍ରା, ଆନ୍‌ଜେଲଫେସ୍, ଦିଲ୍ଲୀ ପ୍ରିନ୍‌ସେସ୍, ଗୁଇଟାର, ପ୍ରେମା, ରେଡ୍ ଗୋଲଡ୍, ସିପର୍ଲ, ଭାଓଲେଟ କାରସନ ପ୍ରଭୃତି ପ୍ରଧାନ ପ୍ରଧାନ ଫ୍ଲୋରିବୁଣ୍ଡା ଗୋଲାପ । ପଲିଅନ୍ଥା ଗୋଲାପ ଶ୍ରେଣୀର ଫୁଲଗୁଡ଼ିକ କ୍ଷୁଦ୍ର ଗୁଳ୍ମ ଆକାରରେ ବଢ଼େ । ପାଖୁଡ଼ାଗୁଡ଼ିକ ଏକାବେଳକେ ଖୋଲିହୁଏ । ଏହାର ଭଲ ଭଲ ଜାତିମାନଙ୍କ



(ଚିତ୍ର-୬୧) ମିନିଏଚର ଗୋଲାପ

ମଧ୍ୟରେ ଚାରିଲନ୍, କୋରାଲକ୍ଲଷ୍ଟର, ଇକୋ, ଆଇଡ଼ିଆଲ ପ୍ରଭୃତି ପ୍ରଧାନ । ମିନିଏଚର ଗୋଲାପ ଗଛଗୁଡ଼ିକ ଅତି କ୍ଷୁଦ୍ର, ପତ୍ରଗୁଡ଼ିକ ଛୋଟ, ଡାଳଗୁଡ଼ିକ ଛୋଟ ଓ ଗଛଗୁଡ଼ିକ ଏକ ଫୁଟରୁ କମ୍ ଉଚ୍ଚ ହୁଏ । ବିଭିନ୍ନ ରଙ୍ଗର ଓ ଆକୃତିର ମିନିଏଚର ଗୋଲାପ ଫୁଲ ଦେଖିବାକୁ ମିଳେ । ପିକ୍‌ସି, ମିମି, ଲିଟଲସନସେଟ୍, ପ୍ରିଂଷ୍ଟି, ଡ୍ୱାର୍ଫକିଙ୍ଗ, ଡ୍ୱାଫକୁଇନ, ବେବି ଡାରଲିଙ୍ଗ, ବେବି ଗୋଲଡ୍‌ଷ୍ଟାର, ରୋଜିନା ସିଲଭର ଟିପ୍ ପ୍ରଭୃତି ପ୍ରଧାନ ପ୍ରଧାନ ମିନିଏଚର ଗୋଲାପ ।



(ଚିତ୍ର-୬୨) ବୁଦା ଗୋଲାପର ଫଳ

କ୍ୟାଣ୍ଡିକେନ୍, ଲିଟଲ ସୋ ଅଫ, କ୍ଲାଇମ୍ବିଙ୍ଗ ଜାତି ଲତା ମିନିଏଚର ଗୋଲାପ ଅଟେ । ରାମ୍ବଲର ଗୋଲାପଗୁଡ଼ିକ ଲତାପରି ବଢ଼େ ଓ ତାର ଅଗ୍ରଭାଗରେ ପେଣ୍ଠା ପେଣ୍ଠା ଫୁଲ ଫୁଟେ । ଛୋଟ ଛୋଟ ତୋରଣ ଓ ରାସ୍ତାଧାର ସଜାଇବା ପାଇଁ ଏଗୁଡିକ ଖୁବ୍ ଉପଯୋଗୀ । ଦିଲ୍ଲୀ ପିଙ୍କପର୍ଲ, ଗାଡ଼େନିଆ, ଭାଓଲେଟ, ପ୍ରସ୍‌ପେରିଟି ପ୍ରଭୃତି ଏହାର ଅନ୍ତର୍ଗତ । ଅନେକ ଗୋଲପ ଲତାପରି ବଢ଼େ । ବହୁତ ଉଚ୍ଚକୁ ଛନ୍ଦାଛନ୍ଦି ହୋଇ ଏଥିରେ ଅନେକ ଫୁଲ ଫୁଟେ । ବଡ଼ ବଡ଼ ତୋରଣ, କାନ୍ଥ ପ୍ରଭୃତିରେ ଏହାକୁ ମଡ଼ାଯାଏ । ବ୍ଲେଜ୍, କୋରାଲଡ଼ନ୍, କକ୍‌ଟେଲ୍, ହାଣ୍ଡେଲ, କାସିନୋ, ଡନ୍‌ଜୁଆନ, ହାଇନୁନ୍, ନିଉଡନ୍, ପିନୋଲିପ୍, ପ୍ରସ୍‌ପେରିଟି, ରୟାଲ ଗୋଲଡ଼ ପ୍ରଭୃତି ଏହାର ଅନ୍ତର୍ଗତ । ବୁଦା (Shrub) ଗୋଲାପର ଫୁଲଗୁଡ଼ିକ ବହୁତ ସୁନ୍ଦର । ରୋଜ ମଏସି, ରୋଜାରୁବ୍ରିଫୋଲିଆ, କାନାରି ବାର୍ଡ଼ ପ୍ରଭୃତି ସୁନ୍ଦର ସୁନ୍ଦର ବୁଦାଗୋଲାପ ଅଟେ । ଆମ ଗାଁଗହଳରେ ସାଧାରଣତଃ ଗୋଲପି ରଙ୍ଗର ଫୁଲ ଫୁଟୁଥିବା ବଡ଼ ବଡ଼ ଗୋଲାପ ଗଛ ଦେଖାଯାଏ । ଏହାକୁ ବରବନ୍ ଗୋଲାପ କୁହାଯାଏ । ଏଡ଼ୱାଡ଼ ଏକ ସୁପରିଚିତ ବରବନ୍ ଗୋଲାପ ଅଟେ । ଏହା ବ୍ୟତୀତ ଡାମକ୍‌ସ ଗୋଲାପ, ମସ୍କ, ଚାଇନା ପ୍ରଭୃତି ଶ୍ରେଣୀର ବହୁତ ଗୋଲାପ ଦେଖିବାକୁ ମିଳେ ।

ବର୍ଷସାରା ଗୋଲାପ ଗଛରେ ଫୁଲ ଫୁଟିଥାଏ । ବର୍ଷା ଓ ଖରାଦିନରେ କମ୍ ଫୁଲ ଫୁଟେ । ଏହି ସମୟରେ ଫୁଲର ରଙ୍ଗ ଠିକ୍ ଭାବେ ପ୍ରସ୍ଫୁଟିତ ହୁଏ ନାହିଁ । ଅକ୍ଟୋବର ଠାରୁ ଆରମ୍ଭକରି ଫେବୃଆରୀ ମାସ ଭିତରେ ଗଛରେ ସୁନ୍ଦର ସୁନ୍ଦର ଗୋଲପ ଫୁଲ ଫୁଟେ । ରାସ୍ତାଧାରରେ, ଫୁଲ ପଟାଳିରେ ଓ ପ୍ରଶସ୍ତ ଉଦ୍ୟାନସାରା ଗୋଲାପ ବିଭିନ୍ନ ପ୍ରଣାଳୀ ଅନୁସାରେ ଲଗାଯାଏ । ମୋଗଲ ଉଦ୍ୟାନ ପ୍ରଣାଳୀ କିମ୍ବା ଜାପାନୀ ଉଦ୍ୟାନ ପ୍ରଣାଳୀରେ ସାଧାରଣତଃ ଗୋଲାପ ଲଗାଯାଏ । ଅତର ତିଆରି, ଫୁଲ ବିକ୍ରି କିମ୍ବା ବିଦେଶକୁ ରପ୍ତାନୀ ପାଇଁ ଗୋଲାପ ଚାଷ ସ୍ୱତନ୍ତ୍ରଭାବେ କରାଯାଏ । ଆମ ପ୍ରଦେଶରେ ସେପ୍‌ଟେମ୍ବର ମାସ ଗୋଲାପ ଚାରା ଲଗାଇବା ପାଇଁ ପ୍ରକୃଷ୍ଟ ସମୟ । ଆଖିକଲମି ଦ୍ୱାରା ପ୍ରସ୍ତୁତ ଗୋଲାପ ଚାରା ମାଟି ପିଣ୍ଡୁଳା ସହିତ କିମ୍ବା ମାଟି ନ ଲାଗିଥିବା ଖାଲି ଚେରଥିବା ଗଛ ସଂଗ୍ରହ କରାଯାଏ । ଉଡ଼ାଜାହାଜରେ ଗଛ ମଗାଇଲାବେଳେ

ସାଧାରଣତଃ ମସ୍ ଭିତରେ ନଗ୍ନ ଗଛମାନ ପଠାଯାଇଥାଏ । ଗଛ ପାଇବାକ୍ଷଣି ତାହାକୁ ପାଣି କୁଣ୍ଡରେ ୨୪ ଘଣ୍ଟା ପକାଇଲା ପରେ ଲଗାଯାଏ । ମାଟିପିଣ୍ଡୁଳା ସହିତ ଗଛ ଆସିଥିଲେ ଲଗାଇବା ପୂର୍ବରୁ ପିଣ୍ଡୁଳାକୁ ଭାଙ୍ଗିଚେର ସିଧା କରି ଲଗାଯିବା ଉଚିତ । ସାଧାରଣତଃ ଏକ ମିଟର ଦୂରତାରେ ୩୦ ସେ.ମି. ଲମ୍ୱା, ଓସାର ଗଭୀତରରେ ଗାତ ଖୋଳି ଗାତପିଛା ୨ ରୁ ୩ ଝୁଡ଼ି ସଢ଼ା ଗୋବରଖତ ଓ ୧୦ ଗ୍ରାମ ଆଲଡ୍ରିନ୍ କିମ୍ୱା ଗ୍ୟାମାକ୍ସିନ୍ ଗୁଣ୍ଡ ଦେଇ ଗଛ ଲଗାଯାଏ ।



(ଚିତ୍ର-୬୩) ପ୍ରୁନିଙ୍ଗ ପ୍ରଣାଳୀ

ସଞ୍ଜବେଳେ କିମ୍ୱା ଅଳ୍ପ ଅଳ୍ପ ବର୍ଷା ହେଉଥିବା ସମୟରେ ଗଛ ଲଗାଯିବା ଆବଶ୍ୟକ । ଫୁଲ ରପ୍ତାନୀ ପାଇଁ ୬୦ ସେ.ମି. ଦୂରତାରେ ଗଛ ଲଗାଯାଏ । ସୁତରାଂ ଗଛଗୁଡ଼ିକ ଡେଙ୍ଗା ହୋଇ ବଢ଼େ ଓ ଲମ୍ୱା ଲମ୍ୱା ଡାଳରେ ଫୁଲ ଫୁଟେ । ରପ୍ତାନୀ ପାଇଁ ଲମ୍ୱା ଡାଳରେ ଫୁଲ ଫୁଟିବା ଆବଶ୍ୟକ । ଗଛ ଲଗାଇବାର ଏକ ମାସ ପରେ ୫ କେ.ଜି. ଚିନାବାଦାମ ପିଡ଼ିଆ, ୫ କେ.ଜି. ହାଡ଼ଗୁଣ୍ଡ, ୨ କେ.ଜି ଆମୋଫସ୍, ୧ କେ.ଜି ଆମୋନିୟମ ସଲଫେଟ୍, ୨ କେ.ଜି. ସିଙ୍ଗଲ୍ ସୁପର ଫସଫେଟ୍, ୧ କେ.ଜି. ପଟାସିୟମ ସଲଫେଟର ମିଶ୍ରଣ ତିଆରି କରି ଗଛପିଛା ୧୦୦ ଗ୍ରାମ ମିଶ୍ରଣ ଦେବା ଆବଶ୍ୟକ । ପ୍ରତ୍ୟେକ ମୁଥ ଫୁଲ ପରେ

ବା ଏକ ମାସ ଅନ୍ତରରେ ସମାନ ପରିମାଣରେ କାଲସିୟମମ ଆମୋନିୟମ ନାଇଟ୍ରେଟ୍, ସିଙ୍ଗଲ ସୁପର ଫସଫେଟ ଓ ମ୍ୟୁରିଏଟ ପଟାସର ମିଶ୍ରଣ କରି ଗଛପିଛା ୧୦ ରୁ ୧୫ ଗ୍ରାମ ଦେବା ଆବଶ୍ୟକ । ମାଟିର ଆର୍ଦ୍ରତା ଦେଖି ଜଳସେଚନ କରିବା ଦରକାର । ପ୍ରତିବର୍ଷ ଅକ୍ଟୋବର ମାସବେଳକୁ ପୂରା ବର୍ଷା ଛାଡ଼ିଗଲା ପରେ ଗଛକୁ କାଣ୍ଡଛାଣ୍ଡ କରିଦେବା ଦରକାର । ହାଇବ୍ରିଡ୍‌ଟି ଗୋଲାପର ବେଶୀ କାଣ୍ଡଛାଣ୍ଡ ଦରକାର, କିନ୍ତୁ ଫ୍ଲୋରିବୁଣ୍ଡାର ସାମାନ୍ୟ କାଣ୍ଡଛାଣ୍ଡ ଓ ମିନିଏଚର କିସମର ପ୍ରାୟ କାଣ୍ଡଛାଣ୍ଡ ଦରକାର ହୁଏ ନାହିଁ । କାଣ୍ଡର ଆଖିକୁ ନଷ୍ଟ ନ କରି ଠିକ୍ ପ୍ରଣାଳୀରେ କାଣ୍ଡଛାଣ୍ଡ କରିବା ଆବଶ୍ୟକ । ବର୍ଷା ସମୟରେ କାଣ୍ଡଛାଣ୍ଡ କଲେ ଅଧିକାଂଶ ଗଛ ଡାଇବ୍ୟାକ୍ (Dieback) ରୋଗରେ ମରିଯାନ୍ତି । କାଣ୍ଡଛାଣ୍ଡ ପରେ ଗଛର କଟା ଅଂଶରେ ୪ ଭାଗ କପରକାର୍ବୋନେଟ, ୪ ଭାଗ ରେଡ୍‌ଲେଡ୍, ୫ ଭାଗ ଲିନ୍‌ସିଡ୍ ତେଲ ଓ ଶତକଡ଼ା ୦.୨ ଭାଗ ଗ୍ୟାମାକ୍ସିନ ଓ ଶତକଡ଼ା ୦.୧ ଭାଗ ଡ଼ିଡ଼ିଟିର ମିଶ୍ରଣ ତିଆରିକରି ତାର ପ୍ରଲେପ ଲଗାଇବା ଉଚିତ ।

ନୂଆ କିସମର ଗୋଲାପ ବାହାର କରିବା ପାଇଁ ଗୋଲାପ ମଞ୍ଜି ବ୍ୟବହାର କରାଯାଏ । ସବୁ ଫୁଲରୁ ଫଳ ହୁଏ ନାହିଁ । ଶଙ୍କର ମଞ୍ଜି ଉତ୍ପାଦନ କରି ୪୫° ଫାରେନ୍‌ହାଇଟ ଉତ୍ତାପରେ ଫ୍ରିଜ୍ ଭିତରେ ୪ ମାସ ରଖି ତା ପରେ ତାକୁ ପଟାଳି କରି ଲଗାଇଲେ ଗଛ ହୁଏ । ପ୍ରଥମ ବର୍ଷର ଗଛକୁ ମଲ୍‌ଟିଫ୍ଲୋରା ଗଛରେ ଆଖିକଲମି କରି ତାର ଗୁଣ ନିରୂପଣ କରାଯାଏ । ସାଧାରଣ ଭାବେ ଗୋଲାପର ବଂଶବିସ୍ତାର ଡାଳକଲମି, ଗୁଟିକଲମି, ଆଖିକଲମି ଓ ଯୋଡ଼କଲମି ଦ୍ୱାରା କରାଯାଏ । ଆଖିକଲମି ସବୁଠାରୁ ଉତ୍ତମ ଅଟେ । ଆମେ ଲଗାଉଥିବା ଅଧିକାଂଶ ଗୋଲପ ଆଖିକଲମି ପ୍ରଣାଳୀ ଦ୍ୱାରା ପ୍ରସ୍ତୁତ ହୋଇଥାଏ । ପାକଳ ଓ ଅଧା ଡାଳକୁ ବର୍ଷାଦିନେ ମାଟିରେ ପୋତିଲେ ନୂଆ ଗଛ ହୁଏ । ସେହିପରି ବର୍ଷକରେ ପୁରୁଣା ଡାଳରେ ବର୍ଷା ଦିନେ ଗୁଟି ବାନ୍ଧିଲେ ୨ ମାସ ଭିତରେ ନୂଆ ଗଛ ତିଆରି ହୁଏ । ଏହି ଦୁଇଟି ପ୍ରଣାଳୀ ଦ୍ୱାରା ସବୁ ପ୍ରକାର ଗୋଲପର ବଂଶବିସ୍ତାର କରାଯାଇ ପାରିବ ନାହିଁ । ଆଖିକଲମି ଦ୍ୱାରା ଗଛ ପ୍ରସ୍ତୁତି ପାଇଁ ପ୍ରଥମେ ଷ୍ଟକ ଗଛ ପାଇଁ ମଲ୍‌ଟିଫ୍ଲୋରା, ଏଡ୍‌ୱାର୍ଡ୍ ବା ଇଣ୍ଡିକା ଗୋଲାପ ଗଛକୁ



(ଚିତ୍ର–୬୪) ଆଖିକଲମି ପ୍ରଣାଳୀ

ଡାଳକଲମି ଦ୍ୱାରା ଲଗାଯାଏ । ମଲ୍‌ଟିଫ୍ଲୋରା (*Rosa multiflora*) ଷ୍ଟକ୍ ଗଛପାଇଁ ସବୁଠାରୁ ବେଶୀ ଉତ୍ତମ ଓ ଏହାର ବହୁଳ ବ୍ୟବହାର କରାଯାଏ । ବର୍ଷାଦିନ ଆରମ୍ଭରୁ ଲମ୍ବା ପଟାଳିରେ କିମ୍ବା ମାଟକୁଣ୍ଡରେ ଏହାର ଡାଳ ଲଗାଇ ଦିଆଯାଏ । ଅକ୍ଟୋବର ବେଳକୁ ଏଥିରୁ ମୋଟା ନୂଆ ଡାଳ ବାହାରେ । ନଭେମ୍ବର ମାସରୁ ଫେବୃଆରୀ ମାସ ଭିତରେ ଡାଳକଲମି କରାଯାଏ । ଫୁଲ ଫୁଟିସାରିଲା ପରେ ଡେମ୍ଫଡଲୁ ଉପଯୁକ୍ତ ଆଖି ସଂଗ୍ରହ କରି ଷ୍ଟକ୍ ଗଛର ମୂଳରୁ ୩ ରୁ ୪ ସେ.ମି. ଉପରେ ଆଖିକଲମି କରାଯାଏ । ୫ ଦିନରେ ଆଖି କଳା ପଡ଼ିଗଲେ ଏହା ମରିଗଲା ବୋଲି ଜାଣିବାକୁ ହୁଏ । ଆଖିକଲମି ସଫଳ ହେଲେ ଏକମାସ ମଧ୍ୟରେ ଏଥିରେ ଫୁଲ ଫୁଟେ । ୨୧ ଦିନ ପରେ ଷ୍ଟକ୍ ଗଛର ଉପର ଭାଗକୁ କାଟି ଦେବାକୁ ହୁଏ । ବର୍ଷକର ଆଖିକଲମି ଗଛକୁ ଲଗାଇବାକୁ ହୁଏ ।

୧ ⁶/₇ ମିଟର ଉଚ୍ଚରେ ଆଖିକଲମି କଲେ ତାହାକୁ ଉଇପିଙ୍ଗ ଷ୍ଟାଣ୍ଡାର୍ଡ଼ ଗଛ କୁହାଯାଏ । ଏକ ମିଟର ଉଚ୍ଚକୁ ଷ୍ଟାଣ୍ଡାର୍ଡ଼ ଓ ୧/୨ ମିଟର ଗଛକୁ ହାଫ୍ ଷ୍ଟାଣ୍ଡାର୍ଡ଼ ଗଛ କୁହାଯାଏ । ରାସ୍ତାକଡ଼ ଓ ଲନ୍ ଚତୁଃପାର୍ଶ୍ୱରେ ଏହାକୁ ଲଗାଇଲେ ସୁନ୍ଦର ଦିଶେ । ଯୋଡ଼କଲମି ଦ୍ୱାରା ସାଧାରଣତଃ ଗୋଲାପ ଗଛ କରାଯାଏ ନାହିଁ । ଏହି ଗଛ ଭଲ ବଢ଼େ ନାହିଁ ଓ ସହଜରେ ଯୋଡ଼ ଅଂଶରୁ ଭାଙ୍ଗିଯାଏ ।

ଗୋଲାପ ବଗିଚା ପରିଚାଳନା ଏକ କଷ୍ଟକର ଓ ବ୍ୟବସାପେକ୍ଷ କାର୍ଯ୍ୟ । ଏହାର ଶତ୍ରୁମାନଙ୍କ ମଧ୍ୟରେ ଉଈ, କାତିପୋକ, ଥ୍ରିପ୍, ଆଫିଡ୍ ପ୍ରଭୃତି



(ଚିତ୍ର-୬୫) କଳାଦାଗ, ଡାଇବ୍ୟାକ୍ ଓ କାତିପୋକ

କୀଟପତଙ୍ଗ ପ୍ରଧାନ । ଖରାଦିନେ ଗୋଲାପ ଗଛରେ ଥ୍ରିପ୍ ଓ ଆଫିଡ୍ ଲାଗେ । ତେଣୁ ୧୫ ଦିନରୁ ଏକମାସ ଅନ୍ତରରେ ପୋକମରା ଔଷଧ ପକାଇବାକୁ ପଡ଼ିବ । ବର୍ଷାଦିନେ ଗୋଲାପରେ କମ୍ ପୋକ ଲାଗେ କିନ୍ତୁ ପତ୍ରଦାଗ, ଡାଇବ୍ୟାକ୍ ରୋଗ ଓ ଡାଳପୋଡ଼ା ଓ ପାଉଁଶିଆ ରୋଗ ଦେଖାଯାଏ । ତେଣୁ ରୋଗ ପ୍ରତିରୋଧ ପାଇଁ ଆଗରୁ ବାଭିଷ୍ଟିନ୍ ଶତକଡ଼ା ୦.୨ ଭାଗ ପକାଇବା ଆବଶ୍ୟକ । ଶୀତଦିନ ଆଗରୁ ଗଛମୂଳକୁ ସାମାନ୍ୟ ଖୋଳି ଚେର ଛିଣ୍ଡାଇ ଦେଇ ଦୁଇ ତିନିଝୁଡ଼ି ସଢ଼ା ଗୋବରଖତ ଓ ୧୦ ଗ୍ରାମ ଆଲଡ୍ରିନଡଷ୍ଟ ଦେବା ଆବଶ୍ୟକ । ସାତରୁ ଦଶବର୍ଷ ଭିତରେ ଗଛଗୁଡ଼ିକ ବୁଢ଼ା ହୋଇଯାଏ । ତେଣୁ ନୂଆଗଛ ଲଗାଯିବା ଦରକାର ।

# ସେବତୀ

## (Chrysanthemum)

ସେବତୀ ବା ଚନ୍ଦ୍ରମଲ୍ଲୀକା ଗୋଲାପ ପରି ଏକ ପ୍ରଧାନ ପୁଷ୍ପ । ଭାରତ ଓ ଜାପାନ ଏହାର ଜନ୍ମସ୍ଥାନ ବୋଲି ଅନୁମାନ କରାଯାଏ । ବଗିଚାର ସୌନ୍ଦର୍ଯ୍ୟ ପାଇଁ ଓ ଫୁଲଚାଷପାଇଁ ଏହା ଏକ ଉପଯୋଗୀ ଶୋଭାବର୍ଦ୍ଧକ ଉଦ୍ଭିଦ । କୁଣ୍ଡରେ ଲଗାଯାଉଥିବା ପୁଷ୍ପବାହୀ ଉଦ୍ଭିଦମାନଙ୍କ ମଧ୍ୟରେ ଏହା ସର୍ବୋତ୍କୃଷ୍ଟ କହିଲେ ଅତ୍ୟୁକ୍ତି ହେବନାହିଁ । କାରିନେଟମ୍ ଓ କରୋନାରିୟମ୍ ଏକବାର୍ଷିକ ସେବତୀ



(ଚିତ୍ର-୧୪୩) ସିଙ୍ଗଲ ସେବତୀ

ଅଟେ । ମୋରିଫୋଲିୟମ୍, ଫ୍ରୁଟେସେନସ୍, ମାକ୍ସିମମ ପ୍ରଭୃତି ବହୁବାର୍ଷିକ ସେବତୀ । ସେବତୀ ଫୁଲର ବାହାର ପଟର ଫୁଲ ସବୁ ଏକଲିଙ୍ଗୀ ଓ ଅଣ୍ଡିରା, ମଝିଫୁଲ ଦ୍ୱିଲିଙ୍ଗୀ ଅଟେ । ସେବତୀ ପାଖୁଡ଼ାର ବିନ୍ୟାସ ଓ ଗଛ ବଢ଼ିବାକୁ ଭିତ୍ତିକରି ସେବତୀକୁ ବହୁ ଭାଗରେ ବିଭକ୍ତ କରାଯାଏ । ବିଭିନ୍ନ ରଙ୍ଗର ସେବତୀ ମଧ ଦେଖିବାକୁ ମିଳେ । ସିଙ୍ଗଲ (Single) ସେବତୀ ଫୁଲର ମଝି ବୋତାମ ଭଳି ଦିଶେ ଓ ଏହାର ଚାରିପାଖେ ଗୋଟିଏ ଧାଡ଼ିରେ ପାଖୁଡ଼ା ସଜାଇ ହୋଇ ରହିଥାଏ । ଆନିମୋନର (Anemone) ଚାରିପାଖରେ ଦୁଇ ତିନି ଧାଡ଼ି ପାଖୁଡ଼ା ଥାଏ । ଏଗୁଡ଼ିକ ଫୁଲର ମଝିକୁ ନବେ ଡିଗ୍ରୀ କରି ରହିଥାଏ । ରେନେଣ୍ଟ (Rayonnante) ପାଖୁଡ଼ାଗୁଡ଼ିକ ଖଡ଼ିକା ଭଳି ହୋଇ ଫୁଲ ମଝିରୁ ଚାରିଆଡ଼କୁ ବିଚ୍ଛୁରିତ ହୋଇ ରହିଥାଏ । ପମ୍ପନ (Pompon) ର ଫୁଲଗୁଡ଼ିକ ଛୋଟ ବୋତାମ ଭଳି ଓ ପାଖୁଡ଼ାଗୁଡ଼ିକ ଫୁଲସାରା ଭର୍ତ୍ତିହୋଇ ରହିଥାଏ । ଚାର୍ମ



(ଚିତ୍ର-୧୪୪) ଆନିମୋନ ସେବତୀ

ସେବତୀ (Charm) ଫୁଲ ସିଙ୍ଗଲ. ପରି କିନ୍ତୁ ଛୋଟ । କୋରିଆନର (Korean) ଫୁଲ ଆନିମୋନ ଭଳି କିନ୍ତୁ ଅପେକ୍ଷାକୃତ କ୍ଷୁଦ୍ର । କାସ୍‌କେଡ୍ ସେବତୀ (Cascade) ଗଛ ଲଟାଏ । ତେଣୁ ଏହାକୁ ଦୋଳାୟମାନ କୁଣ୍ଡ, ଝରକା ବକ୍‌ସ, ପ୍ରାଚୀର ଖୋପ ପ୍ରଭୃତିରେ ଲଗାଇବା ସହଜ ହୁଏ ଓ ବେଶୀ ସୁନ୍ଦର ଦିଶେ । ଫୁଲଗୁଡ଼ିକ ଛୋଟ ଛୋଟ ସିଙ୍ଗଲ୍ ଫୁଲ ପରି । ଇନକରଭଡ଼ (Incurved) ଫୁଲଗୁଡ଼ିକର ପାଖୁଡ଼ା ଫୁଲର ମଝି ଆଡ଼କୁ ବୁଲି ରହିଥାଏ । ତେଣୁ ଫୁଲ ପେଣ୍ଡୁଭଳି ଦିଶେ । ରିଫ୍ଲେକ୍‌ସଡ଼ (Reflexed) ପାଖୁଡ଼ାଗୁଡ଼ିକ



(ଚିତ୍ର-୧୪୫) ରେନେଣ୍ଡ ସେବତୀ



(ଚିତ୍ର-୧୪୬) ପମ୍ପନ ସେବତୀ

ଫୁଲର ମଝିରୁ ବାହାରପଟକୁ ବଢ଼ିଥାଏ । ସ୍ପାଇଡ଼ରରେ ପାଖୁଡ଼ା ବଳିତା ଭଳି ହୋଇ ଚାରିଆଡ଼କୁ ଝୁଲିଥାଏ । ଏହା ବ୍ୟତୀତ ସେବତୀର ବହୁତ ରଙ୍ଗ ଦେଖାଯାଏ । ପ୍ରଧାନ ପ୍ରଧାନ ସେବତୀଗୁଡ଼ିକ ହେଲା– ଟମ୍ବୋଲା, ଉଲମ୍ୟାନ୍, ଜିପ୍‌ସି, ଜେମସ୍, ବ୍ରାଏଣ୍ଟ, ମେଲିନ୍‌ଲେଟ୍, ସ୍ନୋବଲ, ଅର୍ଲିଏଲୋ, ଲୁଇସା ପକେଟ, ଥୋମାସ କିଲାନ, ନାଇଗ୍ରା, କେଷ୍ଟୋନ୍, ରେଡ୍‌ସେଣ୍ଟର, ଡ୍ୟୁଉକ୍‌ଅଫକେଣ୍ଟ, ପାଲହବ୍‌ଗୁଡ୍, ଫେୟାର ଲେଡ଼ି, ଗୋଲଡ୍‌ଲଷ୍ଟ, ଗୋଲଡେ଼ନ୍ ଓରଫେ ।

ନୂଆ ଜାତି ସୃଷ୍ଟିପାଇଁ ସେବତୀ ମଞ୍ଜି ବ୍ୟବହାର କରାଯାଇଥାଏ । କିନ୍ତୁ ସେବତୀର ବଂଶବିସ୍ତାର ସାଧାରଣତଃ ଡାଳକଲମି ଦ୍ୱାରା କରାଯାଏ । ଯେଉଁ ସେବତୀ ଡାଳକଲମିଦ୍ୱାରା କରାଯିବା ସମ୍ଭବପର ନୁହେଁ ସେଗୁଡ଼ିକୁ ଗୁଟିଦ୍ୱାରା ଉତରାଯାଏ । ଡେରିରେ ଫୁଲ ଫୁଟୁଥିବା ସେବତୀକୁ ଜୁଲାଇ ଅଗଷ୍ଟ ମାସ ଓ ଶ୍ରୀଘ୍ର ଫୁଲ ଆସୁଥିବା ସେବତୀକୁ ସେପ୍‌ଟେମ୍ବର ମାସରେ ଲଗାଯିବା ଉଚିତ । ସେବତୀର ଜାତି ଅନୁସାରେ କୁଣ୍ଡରେ, ଫୁଲ ପଟାଳିରେ, ଧାର ଗଛ ହିସାବରେ



(ଚିତ୍ର-୧୪୭) କାସ୍‌କେଡ଼୍ ସେବତୀ

ଝରକା ବକ୍‌ସରେ ଲଗାଯାଇଥାଏ । ଆମ ପ୍ରଦେଶରେ ନଭେମ୍ବର ମାସଠାରୁ ଜାନୁୟାରୀ ମାସ ଭିତରେ ସେବତୀ ଫୁଟିଥାଏ । ଦିନ ଛୋଟ ହେବାକ୍ଷଣି ସେବତୀ ଗଛରେ କଢ଼ ଆସେ । କଢ଼ରୁ ଫୁଲ ଫୁଟିବାକୁ ଦେଢ଼ମାସରୁ ଦୁଇମାସ ପର୍ଯ୍ୟନ୍ତ ଲାଗେ । ଫୁଲ ଗଛରେ ଏକମାସ ପର୍ଯ୍ୟନ୍ତ ସତେଜ ଅବସ୍ଥାରେ ରହିପାରେ । ସେବତୀ ଗଛର ଅଭିବୃଦ୍ଧିକୁ ନିୟନ୍ତ୍ରଣ କରିବା ପାଇଁ ପ୍ରଥମେ ଛୋଟ କୁଣ୍ଡ ଓ ପରେ ଅପେକ୍ଷାକୃତ ବଡ଼ କୁଣ୍ଡକୁ ଦୁଇରୁ ତିନି ଥର ବଦଳାଇବା ଉଚିତ । ସେବତୀ



(ଚିତ୍ର-୧୪୮) ଇନକରଭଡ୍ ସେବତୀ

ଲଗାଇଲାବେଳେ ଉପଯୁକ୍ତ ପରିମାଣ ସଢ଼ା ଗୋବରଖତ ଓ ପରେ ଗଛ ବଢ଼ିବା ଅବସ୍ଥାରେ ତରଳ ସାର ଦେବା ଆବଶ୍ୟକ । ଗୋଟିଏ ଗଛରେ ଇଚ୍ଛାମୃତାବକ ଫୁଲର ସଂଖ୍ୟାକୁ ନିୟନ୍ତ୍ରଣ କରାଯାଇଥାଏ । କଢ଼ ଆସିବାର ପୂର୍ବାବସ୍ଥାରୁ ଏଥିପାଇଁ ଡାଳଭାଙ୍ଗିବା (disbudding) ଓ ଅଗ ଛିଣ୍ଡାଇବା (pinching) ବ୍ୟବସ୍ଥା ଅବଲମ୍ବନ କରାଯାଇଥାଏ । ବେଶୀ ଫୁଲ ପାଇବା ପାଇଁ ଡେକୋରେଟିଭ ସେବତୀ କରାଯାଇଥାଏ'। ଏଥିପାଇଁ ଏକମାସର ଗଛର ଅଗ୍ରଭାଗକୁ ଛିଣ୍ଡାଇ ଦିଆଯାଏ । ତେଣୁ ତଳୁ ବହୁତ ଶାଖା ପ୍ରଶାଖା ବାହାରେ । ଶାଖା ପ୍ରଶାଖାର ଅଗ୍ରକୁ ପୁଣି ଛିଣ୍ଡାଇ ଦେଲେ ଆହୁରି ବହୁତ ଶାଖା ବାହାରେ । ଏଥିରେ ବହୁତ କଢ଼ ଆସେ ଓ ଗଛ ଫୁଲରେ ଭର୍ତ୍ତିହୋଇ ଗମ୍ବୁଜାକାର ଦିଶେ । ପ୍ରଦର୍ଶନୀ ପାଇଁ ଗଛରେ ଦୁଇ ତିନୋଟି ବା ଗୋଟିଏ ବଡ଼ ଫୁଲ ପ୍ରସ୍ତୁତ




(ଚିତ୍ର-୧୪୯) ସେବତୀ ଗଛକୁ ସିଧା ରଖାଯିବା ପଦ୍ଧତି

କରାଯାଏ । ଏଥିପାଇଁ ଗଛକୁ ସିଧା ବଢ଼ିବାକୁ ଛାଡ଼ି ଦିଆଯାଏ । ଅଗ୍ରଭାଗରେ ଦୁଇ ତିନୋଟି କଢ଼କୁ ରଖିଲେ ଫୁଲ ବଡ଼ ହୁଏ । ଇନକର୍ଭଡ୍ ଓ ରିଫ୍ଲେକ୍ସଡ୍ ସେବତୀରେ ଅଳ୍ପ କେତୋଟି ଫୁଲ ରଖିଲେ ଏହା ବହୁତ ସୁନ୍ଦର ଦିଶେ । ସେବତୀ ଫୁଲ ଫୁଟିବା ଅବସ୍ଥାରେ ଡାଳ ତଳକୁ ନଇଁପଡ଼େ । ତେଣୁ କାଠି ପୋତି କିମ୍ବା



(ଚିତ୍ର-୧୫୦) ପୁରୁଣା ଗଛ ମୂଳରୁ ଡାଳ ସଂଗ୍ରହ

ବାଉଁଶର ଗୋଲାକାର ମୁଣ୍ଡୁଳି କରି ଗଛକୁ ସିଧାରେ ରଖାଯାଏ । ସେବତୀରେ କଢ଼ ସଢ଼ିବା, କଳଙ୍କିରୋଗ, ପାଉଁଶିଆରୋଗ, ପତ୍ରଦାଗ, ଝାଉଁଳାରୋଗ ଦେଖାଯାଏ । ଏହା ବ୍ୟତୀତ ଆଫିଡ୍, ଥ୍ରିପ୍, ମାଇଟ୍ ପ୍ରଭୃତି କୀଟପତଙ୍ଗ ଓ ଗେଣ୍ଡା ଇତ୍ୟାଦି ସେବତୀ ଗଛକୁ ଆକ୍ରମଣ କରିଥାନ୍ତି । ରୋଗ ଓ ପୋକ ଲାଗିଲେ ଠିକ୍ ସମୟରେ ତାର ପ୍ରତିରୋଧ ବ୍ୟବସ୍ଥା କରିବା ଉଚିତ । ଫୁଲ ଫୁଟିବା ଅବସ୍ଥାରେ ବେଶୀଦିନ ରହିବା ପାଇଁ କଢ଼ରେ ପଲିଥିନ୍ ପ୍ୟାକେଟ୍ ଘୋଡ଼ାଇ ରଖିଦିଆଯାଏ ।



(ଚିତ୍ର-୧୫୧) ହରମୋନ ପାଉଡ଼ର ଲଗାଇ ଗଛ ପୋତିବା



(ଚିତ୍ର-୧୫୨) ଡାଳ ପୋତିବା ପ୍ରଣାଳୀ



(ଚିତ୍ର-୧୫୩) ବଢ଼ିଥିବା ସେବତୀ ଗଛ



(ଚିତ୍ର-୧୫୪) ସେବତୀ ଡାଳକଲମିକୁ କୁଣ୍ଡରେ ଲଗାଇବା ପ୍ରଣାଳୀ

ସେବତୀର ବଂଶବିସ୍ତାର ଏକ ପ୍ରଧାନ କାର୍ଯ୍ୟ । ଏଥିରେ ଅବହେଳା କଲେ ଅଧିକାଂଶ ଗଛ ବର୍ଷାଦିନେ ମରିଯାଏ । ଗଛରେ ଫୁଲ ମଉଳିଗଲା ପରେ ମୂଳରୁ ୧୦ ରୁ ୧୫ ସେ.ମି. ଉଚ୍ଚରୁ ଗଛକୁ କାଟି ଫିଙ୍ଗି ଦିଆଯାଏ । ତାହାପରେ ତାକୁ ନୂଆ କୁଣ୍ଡରେ କିମ୍ବା ସାମାନ୍ୟ ଛାଇ ସ୍ଥାନରେ ପଟାଳି କରି ବାଲିଦେଇ ପୋତି ଦିଆଯାଏ । ଗଛ ପୋତିବା ପୂର୍ବରୁ ପୁରୁଣା ଚେର ଛିଣ୍ଡାଇ ଫୋପାଡ଼ି ଦିଆଯାଏ । ନିୟମିତ ପାଣି ଦେଲେ ବର୍ଷାଦିନବେଳକୁ ଗଛ ମୂଳରୁ ପ୍ରଚୁର ଭୂସ୍ତାରୀ (Sucker) ବାହାରେ । ଏହି ଭୂସ୍ତାରୀରୁ ୧୫ ସେ.ମି. ଲମ୍ବାର ଡାଳମାନ କାଟି ସେରାଡ଼ିକ୍ସ ବି   ୧ ପାଉଡ଼ରରେ ଡାଳର ନିମ୍ନକୁ ବୁଡ଼ାଇ ଲଗାଯାଏ । ବଡ଼ ବଡ଼ କାଠ ବକ୍ସ ତିଆରି କରି ସେଥିରେ କିଛି ବାଲି ଓ ଖତର ମିଶ୍ରଣକୁ ରଖି ଡାଳ ପୋତିଲେ ୩ ସପ୍ତାହ ମଧ୍ୟରେ ଚେର ବାହାରିଥାଏ । ସେବତୀ ଚାରା ବିକ୍ରିକରିବା ପାଇଁ ଛୋଟ ପଲିଥିନ୍ ପକେଟ କିମ୍ବା ଛୋଟ ମାଟି ଗ୍ଲାସରେ ଚାରା ଉଠାରିବା ଆବଶ୍ୟକ । ଚାରା ଉଚ୍ଚାରିବା ସମୟରେ ବାହାରେ ବେଶୀ ବର୍ଷା ହେଲେ ଚାରା ବାକ୍ସକୁ ଘର ଭିତରକୁ ନେଇ ଆସିବା ଉଚିତ । ନଚେତ୍ ବକ୍ସରେ ଅଧିକ ପାଣି ଜମିଲେ ଚାରା ପଚିଯିବାର ସମ୍ଭାବନା ଥାଏ । ସେବତୀ ଡାଳରେ ପର୍ଯ୍ୟାପ୍ତ ପରିମାଣର ଚେର ବାହାରିଗଲା ପରେ ମାଟିକୁଣ୍ଡ ଆଣି ସଂଧ୍ୟା ସମୟରେ ଚାରା ରୋପଣ କରାଯିବା ଆବଶ୍ୟକ । ଫୁଲ ପଟାଳିରେ ଉପଯୁକ୍ତ ଜଳନିଷ୍କାସନର ବ୍ୟବସ୍ଥା କରି ଚାରା ରୋପଣ କରାଯିବା ଉଚିତ । ଚାରା ଉଠାରିଲାବେଳେ ପ୍ରତ୍ୟେକ ଜାତିର ନାମ ଦସ୍ତା ନାମଫଳକରେ ଲେଖି ରଖିବା ଆବଶ୍ୟକ



॥ ଦ୍ୱାଦଶ ପରିଛେଦ ॥

# ଲତା

## (Climber)

ଉଦ୍ୟାନର ଉଦ୍ଭିଦମାନଙ୍କ ମଧ୍ୟରେ ଲତାଗୁଡ଼ିକର ସଂଖ୍ୟା ସାଧାରଣତଃ କମ୍ ହେଉଥିଲେ ମଧ୍ୟ ଏଗୁଡ଼ିକର ମନୋରମ ସୌନ୍ଦର୍ଯ୍ୟ ଉଦ୍ୟାନର ଶୋଭାବର୍ଦ୍ଧନ ପାଇଁ ଅତ୍ୟାବଶ୍ୟକ । ପୁରାଣଶାସ୍ତ୍ରରେ ଲତାମାନଙ୍କୁ ନାରୀମାନଙ୍କ ସହିତ ତୁଳନା କରାଯାଇଛି, ତାର କାରଣ ହେଲା ଏଗୁଡ଼ିକ ଦୁର୍ବଳ କାଣ୍ଡଯୁକ୍ତ ହୋଇଥିବାରୁ ଅନ୍ୟଉପରେ ଆଶ୍ରୟ ଗ୍ରହଣକରି ବଢ଼ିଥାନ୍ତି । ଏହି ଦୃଷ୍ଟିରୁ ଉଦ୍ଭିଦରାଜ୍ୟରେ ଲତାଗୁଡ଼ିକୁ ଖୁବ୍ ଶୀଘ୍ର ଚିହ୍ନି ହୁଏ । ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦପରି ଲତାମାନଙ୍କର ବିଭିନ୍ନ ରଙ୍ଗର ପୁଷ୍ପ ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇବା ସଙ୍ଗେ ସଙ୍ଗେ ସେମାନଙ୍କର ଚିରହରିତ ପତ୍ର ଅନେକ କ୍ଷେତ୍ରରେ ଉପବନର ସବୁଜିମାକୁ ବୃଦ୍ଧିକରିଥାଏ । କୋଠାବାଡ଼ିର କୁତ୍ସିତ କଦାକାର ଅଂଶଗୁଡ଼ିକୁ ଲତାମାନଙ୍କ ଦ୍ୱାରା ଆଚ୍ଛାଦିତ କରିବା ସହଜ ହୋଇଥାଏ । ପ୍ରବେଶଦ୍ୱାରର ତୋରଣକୁ (Arch) ତଥା କାଛରେ ବହୁଦୂର ପର୍ଯ୍ୟନ୍ତ ପରଗୋଲା (Pergola)ରେ ଏଗୁଡ଼ିକୁ ମଡ଼ା ଯାଇଥାଏ । ବାତାୟନପାର୍ଶ୍ୱ ଓ ପୋର୍ଟିକୋର ଉପରିଭାଗରେ ଏହାକୁ ମଡ଼ାଇ ସୌନ୍ଦର୍ଯ୍ୟ ସାଙ୍ଗକୁ ଥଣ୍ଡା ପରିବେଶ ସୃଷ୍ଟି କରାଯାଇଥାଏ । ଉଦ୍ୟାନ ମଧ୍ୟରେ ଗୋଟିଏ ଅଂଶକୁ ଅନ୍ୟ ଅଂଶଠାରୁ ପୃଥକ କରିବା ପାଇଁ ଲତାକୁ ବ୍ୟବହାର କରାଯାଇପାରେ । ଲତାମାନଙ୍କ ଦ୍ୱାରା ସୁନ୍ଦର ସୁନ୍ଦର ଟୋପିଆରି କାମ କରାଯାଏ ।

ବହୁ ପୁରୁଣା କାଳରୁ ଭାରତୀୟ ଉଦ୍ୟାନଗୁଡ଼ିକରେ ଲତାର ଆଦର ରହିଆସିଛି । ଦ୍ୱାପର ଯୁଗରେ ବୃନ୍ଦାବନର କୁଞ୍ଜକାନନମାଳରେ ଲତାମାନଙ୍କର ବହୁଳ ବ୍ୟବହାର ଥିବାର ଅନୁମାନ କରାଯାଏ । ଭାରତରେ ଦେଖାଯାଉଥିବା ଅଧିକାଂଶ ଲତାର ପୁଷ୍ପ ସୁଗନ୍ଧଯୁକ୍ତ । ଆଧୁନିକ ଯୁଗର ଫୁଲର ସୁଗନ୍ଧ ବ୍ୟତୀତ ଲତାଗୁଡ଼ିକର ଫୁଲର ରଙ୍ଗ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଉଛି ।

ଉଦ୍ୟାନରେ ଲତା ଲଗାଇବାକୁ ହେଲେ ଅଧିକ ଯତ୍ନ ନେବାକୁ ପଡ଼େ କାରଣ ଗୁଳ୍ମ ବା ବୃକ୍ଷଗୁଡ଼ିକ ପରି ଏହା ନିଜ ଆଶ୍ରୟରେ ବଢ଼ିପାରେ ନାହିଁ । ଲତାଗୁଡ଼ିକର ବିଶେଷ ଅଂଶ କିମ୍ବା ପ୍ରଧାନ ଅଂଶର ରୂପାନ୍ତରିତ ଅଂଶ ତାହାକୁ ଅନ୍ୟ ଉପରେ ଆଶ୍ରୟ ଦେବାରେ ସାହାଯ୍ୟ କରିଥାଏ । ସାଧାରଣତଃ ଅଧିକାଂଶ ଲତାର ଦୁର୍ବଳକାଣ୍ଡଗୁଡ଼ିକ ଅନ୍ୟ ଦେହରେ ଛନ୍ଦି ହୋଇ ବଢ଼ନ୍ତି । ଏହା ବ୍ୟତୀତ କେତେକ ଉଦ୍ଭିଦର ବଢ଼ିବା ପ୍ରଣାଳୀ ଏପରି ଯେ ଏଗୁଡ଼ିକୁ ଲତାପରି ବ୍ୟବହାର କରାଯାଇଥାଏ । ଏହି ସବୁ ଦୃଷ୍ଟିରୁ ଲତାକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଯଥା, ପ୍ରକୃତ ଲତା (Natural climber) ଓ ଲତା ଅନୁରୂପ (climber type) । ବଗନଭିଲା, ଆଲମଣ୍ଡା, କ୍ରିପ୍ଟୋଷ୍ଟେଦିଆ ପ୍ରଭୃତି ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ଲତାର ଆକୃତି ଅନୁସାରେ ସେଗୁଡ଼ିକୁ ମଧ ତିନିଭାଗରେ ବିଭକ୍ତ କରାଯାଇଛି ଯଥା– ଗୁରୁ(Heavy) ମଧମ (Medium) ଓ ଲଘୁ (Light) ଜାତୀୟ ଲତା । ପ୍ରତ୍ୟେକ ବ୍ୟକ୍ତି ଉଦ୍ୟାନରେ ଲତା ଲଗାଇଲାବେଳେ ତାହା କେତେ ଆୟତନରେ ବଢ଼ିବ ତାହା ଜାଣିବା ସର୍ବାଦୌ ଆବଶ୍ୟକ ନଚେତ ଛୋଟ ସ୍ଥାନରେ ବିରାଟକାୟ ଲତା ଓ ବିରାଟ ସ୍ଥାନରେ ଛୋଟ ଲତା ଲଗାଇବା ଦ୍ୱାରା ବଗିଚାର ସୌନ୍ଦର୍ଯ୍ୟ ବ୍ୟାହତ ହୋଇଥାଏ । କୋଠାର କାନ୍ଥ, ପୋର୍ଟିକୋ ଏବଂ ଛାତ ଉପରେ ବଡ଼ ବଡ଼ ଲତା ଲଗାଯିବା ଉଚିତ । ତୋରଣ, ବାତାୟନ ଧାର ଏବଂ ପ୍ରବେଶଦ୍ୱାର ନିକଟରେ ମଧମ ଧରଣର ଲତା ଓ ବାରଣ୍ଡାର ଜାଲି, ଖମ୍ବ ପାଖ ଗୁଡ଼ିକରେ ଛୋଟ ଆକାରର ଲତା ଲଗାଇବା ଦରକାର ।

ପ୍ରଥମରୁ କୁହାଯାଇଛି ଯେ ଉଦ୍ୟାନରେ ଅନ୍ୟାନ୍ୟ ଉଦ୍ଭିଦଗୁଡ଼ିକ ତୁଳନାରେ କମ୍ ଲତା ଲଗାଯିବା ଦରକାର । ସେହି ଦୃଷ୍ଟିରୁ କେଉଁ ଲତା ଲଗାଯିବା ଉଚିତ ତାହା ସ୍ଥାନ ତଥା ଜଳବାୟୁ ଭେଦରେ ଠିକ୍ ଭାବରେ ବଛାଯିବା ଉଚିତ । ପୁଷ୍ପଭରା ଲତାକୁ (Flowering Climber) ପାର୍କ ତଥା ସର୍ବସାଧାରଣ ପରିଦର୍ଶନ କରୁଥିବା ଉଦ୍ୟାନ (Public garden) ଗୁଡ଼ିକରେ ଲଗାଯିବା ଉଚିତ । ପତ୍ରବାହୀ ସୌନ୍ଦର୍ଯ୍ୟଭରା ଲତା (Foliage climber)ଗୁଡ଼ିକୁ ଅଳ୍ପ ବ୍ୟବହାର କରାଯିବା ବିଧେୟ । କୋଠାର ପୁରୁଣା ଅଂଶ

ଯୋଡ଼ଇବା ପାଇଁ ତଥା ସ୍କ୍ରିନ କରିବା ପାଇଁ ଏହାର ବ୍ୟବହାର କରାଯାଏ । ସୁଗନ୍ଧ ଫୁଲ ଫୁଟୁଥିବା ଲତାଗୁଡ଼ିକୁ ବାସସ୍ଥାନ ତଥା ଧର୍ମାନୁଷ୍ଠାନ ଗୁଡ଼ିକରେ ରୋପଣ କରାଯିବା ଉଚିତ । କୁଂଜଲତା ଭଳି ବର୍ଷକ ମଧ୍ୟରେ ବଢ଼ି ମଉଳିଯାଉଥିବା ଲତାକୁ ଏପରି ସ୍ଥାନରେ ଲଗାଯିବା ଉଚିତ ଯେପରି ଲତା ମଉଳିଗଲା ପରେ ସେ ସ୍ଥାନରେ ଅନ୍ୟ ପ୍ରକାର ଉଦ୍ଭିଦ ଲଗାଯାଇ ପାରିବ ।

ଲତାଗୁଡ଼ିକ ବୃଦ୍ଧି ପାଇଁ ପ୍ରସ୍ତୁତ ଆଶ୍ରୟଗୁଡ଼ିକ ଲୌହରେ ନିର୍ମିତ ହେବା ଦରକାର । କାଠ ଏବଂ ଆଲୁମିନିୟମରେ କରାଗଲେ କେତେକ ସୁବିଧା ହୁଏ । କାରଣ ଲୁହାରେ ଶୀଘ୍ର କଳଙ୍କି ଲାଗିଯାଏ ଓ ଏଥିରେ ବହଳ କରି ରଙ୍ଗ ବୋଳିବାକୁ ହୁଏ । ଭଲକରି ରଙ୍ଗ ବୋଳିଦେଲେ ଲୌହ ପଦାର୍ଥଗୁଡ଼ିକ ଶୀଘ୍ର ଉତ୍ତପ୍ତ ହୁଏ ନାହିଁ । ତେଣୁ ଉତ୍ତାପ ଦ୍ୱାରା କଅଁଳିଆସୁଥିବା ଲତାର ଡାଳ ଓ ପତ୍ର ମଉଳି ଯାଏ ନାହିଁ । ଆଶ୍ରୟଗୁଡ଼ିକ ଉପରେ ଲତାଗୁଡ଼ିକ ଯେପରି ଠିକ୍‌ଭାବରେ ବଢ଼ିପାରିବ ସେଥିପାଇଁ ଲତା ଅଳ୍ପ ବଢ଼ିଗଲା ପରେ ଅଗ ଛିଣ୍ଡାଇଦେଲେ ବହୁ ଶାଖାପ୍ରଶାଖା ବାହାରି ଝାମ୍ପୁରାହୋଇ ବଢ଼ିଥାଏ । ପ୍ରତ୍ୟେକ ଲତା ଲଗାଇବା ପୂର୍ବରୁ ଏକ ମିଟର ଦୈର୍ଘ୍ୟ ଓ ୧ ମିଟର ପ୍ରସ୍ଥରେ ଗାତ ଖୋଳି ଦୁଇ ତିନି ଗାଣ୍ଡୁଆ ଖତ ଦେବା ଉଚିତ । ଅଧିକାଂଶ ଲତାର ବଂଶବିସ୍ତାର ମଂଜି ଓ ଡାଳକଲମି ଦ୍ୱାରା ହୋଇଥାଏ । କଲମି କିମ୍ବା ମଞ୍ଜିଦ୍ୱାରା ପ୍ରସ୍ତୁତ ଲତାଗୁଡ଼ିକୁ ବର୍ଷାଦିନ ଆରମ୍ଭରେ ଲଗାଯିବା ଦରକାର । ନିମ୍ନରେ ଉଦ୍ୟାନ ଉପଯୋଗୀ କେତେକ ଲତାର ବର୍ଣ୍ଣନା ଦିଆଗଲା ।

**ସ୍ୱର୍ଣ୍ଣଧାରା** (*Bignonia venusta*, Bignoniaceae) - ସ୍ୱର୍ଣ୍ଣଧାରା ଏକ ଗୁରୁଶ୍ରେଣୀୟ (**Heavy creeper**) ଲତା । ଏହା ଖୁବ୍ କମ୍ ସମୟରେ ବହୁ ସ୍ଥାନରେ ମାଡ଼ିପାରେ । ପତ୍ରଗୁଡ଼ିକ ଚରିହରିତ ଓ ହୃତ୍‌ପିଣ୍ଡ ଭଳି ଦେଖାଯାଏ । ଡାଳକଲମି ଦ୍ୱାରା ଏହାର ବଂଶ ବିସ୍ତାର କରାଯାଇଥାଏ । ଡାଳକଲମି ଶୀତଦିନେ କରିବା ଉଚିତ । ବର୍ଷାଦିନରେ ଏହାକୁ ଲଗାଯାଏ । ପ୍ରଥମ ବର୍ଷ ଗଛ ଧୀରେ ଧୀରେ ବଢ଼ି ଭଲଭାବେ ଚେର ଚାରିଆଡ଼କୁ ମାଡ଼ିଗଲା ପରେ ଦ୍ୱିତୀୟ ବର୍ଷ ଗଛ ବର୍ଷାଦିନେ ଭଲଭାବେ ବଢ଼ି ଶୀତଦିନେ ଫୁଲ ଆସେ ।

ଦୁର୍ବଳ ବାଲୁକା ତଥା ନିଗିଡ଼ା ମାଟିରେ ଏହା ଭଲ ବଢ଼ିଥାଏ । ଗଛମୂଳରେ ପାଣି ଜମିଲେ ଏହା ବଢ଼େ ନାହିଁ । ଫୁଲଗୁଡ଼ିକ କମଳାରଙ୍ଗର ଓ ପେଛା ପେଛା ହୋଇ ଫୁଟେ । ସମଗ୍ର ଲତାରେ ଏକ ସମୟରେ ଫୁଲ ଫୁଟୁଥିବାରୁ ଦୂରରୁ ଲତା ବିମଣ୍ଡିତ ସ୍ଥାନଟି ଫୁଲସଜ୍ଜା ହେଲାପରି ଜଣାପଡ଼େ । ଡିସେମ୍ବରଠାରୁ ଫେବୃଆରୀ ପର୍ଯ୍ୟନ୍ତ ଫୁଲ ଫୁଟେ । ସମୟେ ସମୟେ ଫେବୃଆରୀ ମାସରେ ଲତାରେ ଅଳ୍ପ ଫୁଲ ଆସେ । ପୋର୍ଟିକୋ, କୋଠାର କାନ୍ଥ, ବିରାଟକାୟ ତୋରଣଗୁଡ଼ିକରେ ଏହାକୁ ଲଗାଯିବା ଉଚିତ । ଏହାର ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି ମଧ୍ୟରେ *B. gracilis* (ଫିକାହଳଦିଆ ରଙ୍ଗ ଫୁଲ) B. speciosa (ହଳଦିଆ ମିଶା ନୀଳରଙ୍ଗ ଫୁଲ), *B. magnifica* (ବାଇଗଣି ଫୁଲ) ପ୍ରଭୃତି ପ୍ରଧାନ ।

**ମାଳତୀ** (*Echites* caryophyllata, Apocynaceae)- ଉଷ୍ଣମଣ୍ଡଳୀୟ ଆମେରିକୀୟ ଏହି ଲତା ତାହାର କାଣ୍ଡ ଦ୍ୱାରା ଆଶ୍ରୟ ନେଇ ବଢ଼େ । ବର୍ଷାଦିନରେ ଏଥିରେ ପେଛା ପେଛା ଫୁଲ ଆସେ । ଫୁଲଗୁଡ଼ିକ ଦେଖିବାକୁ ଧଳାଟଗର ଫୁଲପରି ଓ ସୁଗନ୍ଧଯୁକ୍ତ । ପତ୍ରଗୁଡ଼ିକର ରଙ୍ଗ ଗାଢ଼ ସବୁଜ ହୋଇଥିବାରୁ ସବୁଜିମାର ପୃଷ୍ଠଭୂମିରେ ଧଳା ଫୁଲଗୁଡ଼ିକ ସୁନ୍ଦର ଦିଶନ୍ତି । ଫୁଲର ସୁଗନ୍ଧ ଯୋଗୁ ଭାରତୀୟ ଉଦ୍ୟାନଗୁଡ଼ିକରେ ଏହାର ବିଶେଷ ଆଦର ଅଛି । ଗୁଟି ଏବଂ ମଞ୍ଜିଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ପୋର୍ଟିକୋ, କୋଠାର ଏକ ପାର୍ଶ୍ୱରେ କିମ୍ବା ଦେବାଳୟ ଉଦ୍ୟାନଗୁଡ଼ିକରେ ଏହାକୁ ଲଗାଯିବା ଉଚିତ । ଏହାର ଅନ୍ୟ ଏକ ଜାତିର ପତ୍ରରେ ଲାଲ ଶିରାପ୍ରଶିରା ଥାଏ ।

**ହଂସଲତା** (*Aristolochia elegans*, Aristolochiaceae)- ହଂସଲତାଗୁଡ଼ିକ ଅଳ୍ପ ସ୍ଥାନରେ ମାଡ଼େ । ପତ୍ରଗୁଡ଼ିକ ଗୋଲାକାର ଓ ଈଷଦ୍ ସବୁଜ ରଙ୍ଗ । ଲତାଗୁଡ଼ିକ ବର୍ଷାଦିନେ ଖୁବ୍ ଶୀଘ୍ର ବଢ଼ି ପୁଷ୍ପରେ ମଣ୍ଡି ହୋଇଯାନ୍ତି । ଏହାର ଦୁର୍ବଳକାଣ୍ଡଗୁଡ଼ିକ ଛନ୍ଦାଛନ୍ଦି ହୋଇ ବଢ଼ନ୍ତି । ଫୁଲଗୁଡ଼ିକର ବହିର୍ଦେଶ ସଫେଦ୍ ଓ ଅଭ୍ୟନ୍ତର ବାଦାମି ଛିଟରଙ୍ଗ ହୋଇଥାଏ । ଫୁଲଗୁଡ଼ିକ ଲତାରେ ହଂସପରି ଝୁଲୁଥାନ୍ତି । ଫୁଟିଲା ଫୁଲକୁ ଛିଣ୍ଡାଇ ଆଣି ଟେବୁଲ୍ ଉପରେ

ରଖିଦେଲେ ସେଗୁଡ଼ିକ ଛୋଟଛୋଟ ବତକପରି ଦେଖାଯାନ୍ତି । ଏହାର ଫଳଗୁଡ଼ିକ ମଧ ଦେଖିବାକୁ ମନୋରମ । ମଞ୍ଜି ଓ ଡାଳକଲମି ଦ୍ୱାରା ଗଛ କରାଯାଏ । ଆରିଷ୍ଟୋଲେଚିଆର ଅନେକ ଜାତି ଅଛି । ସେମାନଙ୍କ ମଧ୍ୟରୁ ଅନେକଙ୍କର ପତ୍ର ଓ ଫୁଲ ଦୁର୍ଗନ୍ଧଯୁକ୍ତ । **Grandiflora** ଜାତିରେ ବଡ଼ ଫୁଲ ଫୁଟେ ।

**ଅପରାଜିତା** (*Clitoria ternatea,* **Leguminosae**)- ଅପରାଜିତା ଏକ ଭାରତୀୟ ଲତା । ଏହାର ଜଙ୍ଗଲି କିସମ ବିଭିନ୍ନ ସ୍ଥାନରେ ଦେଖାଯାଏ । ଏଗୁଡ଼ିକର ପତ୍ର ଗାଢ଼ ସବୁଜରଙ୍ଗ ଏବଂ ପୁଷ୍ପଗୁଡ଼ିକ ନୀଳ କିମ୍ବା ଧଳା । ଅଳ୍ପ ପାଖୁଡ଼ା (**Single petal**) ଏବଂ ବହୁ ପାଖୁଡ଼ା (**Multi petal**) ଥିବା ଅପରାଜିତା ଦେଖାଯାଏ । ଲତାଗୁଡ଼ିକ ସେମାନଙ୍କ ଦୁର୍ବଳକାଣ୍ଡ ତଥା ଆକର୍ଷିକା (**tendril**) ଦ୍ୱାରା ଖୁବ୍ ଶୀଘ୍ର ବଢ଼ିଥାନ୍ତି । ମଞ୍ଜି ଲଗାଇବାର ୨/୩ ମାସ ପରେ ଫୁଲ ଆସେ । ବର୍ଷସାରା ଏଥିରେ ଫୁଲ ଫୁଟେ । ନୀଳ ଅପରାଜିତା ଅପେକ୍ଷା ଧଳା ଅପରାଜିତା ଅଧିକ ଆକର୍ଷଣୀୟ ।

**ଆଲମଣ୍ଡା** (*Allamanda cathartica,* **Apocynaceae**)- ଏହାକୁ ଅନେକ ବିଲାତି କନିଅର କୁହନ୍ତି । ଏଗୁଡ଼ିକ ଗୁଳ୍ମ ଶ୍ରେଣୀର ଅନ୍ତର୍ଭୁକ୍ତ ହେଲେ ବି ଏହାର ଦୀର୍ଘ ଦୁର୍ବଳକାଣ୍ଡଗୁଡ଼ିକ ଲତାପରି ଅନ୍ୟ ଉପରେ ଆଶ୍ରୟ କରି ବଢ଼େ । ଏଗୁଡ଼ିକ ମଧ୍ୟମ ଧରଣର ଲତାପରି ଦିଶନ୍ତି । ପତ୍ରଗୁଡ଼ିକ ଈଷତ୍ ହରିତ ଏବଂ ପୁଷ୍ପର ରଙ୍ଗ ଗାଢ଼ ହଳଦିଆ । ଗ୍ରୀଷ୍ମ ଓ ବର୍ଷାକାଳରେ ଏଥିରେ ପ୍ରଚୁର ଫୁଲ ଫୁଟେ ଓ ବର୍ଷର ଅନ୍ୟ ସମୟରେ କିଛି ନା କିଛି ଫୁଲ ଫୁଟିଥାଏ । ଡାଳକଲମି କିମ୍ବା ଦବାକଲମି (**Ground layering**) ଦ୍ୱାରା ଏହାର ବଂଶ ବିସ୍ତାର ହୋଇଥାଏ । ଏହା ଏକ ଗ୍ରୀଷ୍ମମଣ୍ଡଳୀୟ ଆମେରିକୀୟ ଉଦ୍ଭିଦ । ଏହାର **Grandiflora** ଜାତିରେ ବଡ଼ ବଡ଼ ହଳଦିଆ ଫୁଲ ଫୁଟେ । ବାଉଁଶ କିମ୍ବା ଲୁହାର ତୋରଣ କରି ସେଥିରେ ଏହାକୁ ମଡ଼ାଯାଏ । ଗୃହର ସମ୍ମୁଖ ଉଦ୍ୟାନ ମଧ୍ୟରେ ଏହାକୁ ବ୍ୟବହାର କରିବା ଉଚିତ ।



(ଚିତ୍ର-୬୬) ହଂସଲତା

**ଆଣ୍ଟିଗୋନନ** (Antigonon leptopus, Polygonaceae)- ଆଣ୍ଟିଗୋନନ୍ ଏକ ଦକ୍ଷିଣ ଆମେରିକୀୟ ଲତା । ଏହାର ଦୁର୍ବଳକାଣ୍ଡରୁ ଆକର୍ଷିକା ବାହାରି ଏହାକୁ ବଢ଼ିବାରେ ସାହାଯ୍ୟ କରିଥାଏ । ଏହି ଲତା ବଢ଼ିବାକୁ ବହୁତ ସ୍ଥାନ ଦରକାର କରେ । କାଣ୍ଡଗୁଡ଼ିକ ସଂମ୍ପୂର୍ଣ୍ଣ ଦୁର୍ବଳ । ପତ୍ରଗୁଡ଼ିକ ଅସମାନ ଓ ପାନପତ୍ର ପରି । କାଣ୍ଡର ପାର୍ଶ୍ୱରୁ ଲମ୍ୱା ଲମ୍ୱା ସ୍ତବକରେ ଗୋଲାପି ବା ଲାଲ ରଙ୍ଗର ପୁଷ୍ପଗୁଚ୍ଛମାନ ବାହାରେ । ଫୁଲଗୁଡ଼ିକ ପ୍ରକୃତରେ ଏକ ପରିଦଳ (Perianth) । ଗଛରେ ବର୍ଷାଦିନରୁ ଆରମ୍ଭ କରି ଶୀତଦିନ ପର୍ଯ୍ୟନ୍ତ ଫୁଲ



(ଚିତ୍ର-୬୭) ଆଣ୍ଟିଗୋନନ୍

ଫୁଟେ । ଦବାକଲମି ତଥା ଭୂସ୍ତାରୀ ଦ୍ୱାରା ଏହାର ବଂଶ ବିସ୍ତାର ହୋଇଥାଏ । ପୁରୁଣା ଗଛର ଚାରିପାଖେ ବହୁତ ଭୂସ୍ତାରୀ (Sucker)ବାହାରେ । ଆଣ୍ଟିଗୋନନ୍ ଲତାକୁ ତୋରଣ, ପୋର୍ଟିକୋ, ପରଗୋଲାଗୁଡ଼ିକରେ ଲଗାଯାଏ । କନଜରଭେଟୋରୀରେ ଏଗୁଡ଼ିକୁ ଲଗାଇଲେ ଏହା ଖୁବ୍ ଶୀଘ୍ର ମାଡ଼ିଯାଇ ଛାୟା ପ୍ରଦାନ କରିଥାଏ । କାଛଗୁଡ଼ିକରେ ଏଗୁଡ଼ିକ ମଡ଼ାଗଲେ ପରଦାଭଳି କାମ କରେ । ତେବେ ଏହା ଏକ କ୍ଷତି କାରକ ଉଦ୍ଭିଦ କାରଣ ଏହା ଶୀଘ୍ର ମାଟିରେ ମାଡ଼ି ଖାଦ୍ୟ ଟାଣିନିଏ ।

**ରସୁଣଗନ୍ଧା** (Adenocalymna alliaceum, Bignoniaceae)- ରସୁଣଗନ୍ଧା ଏକ ବ୍ରାଜିଲଦେଶୀୟ ମଧ୍ୟମ ଧରଣର ଲତା, ଏହାର ପତ୍ର ଉଜ୍ଜ୍ୱଳ ଓ ଚିକ୍‌କଣ । କାଣ୍ଡଗୁଡ଼ିକ ଛନ୍ଦାଛନ୍ଦି ହୋଇ ବଢ଼ନ୍ତି । ପୁରୁଣା କାଣ୍ଡଗୁଡ଼ିକର ରଙ୍ଗ ବାଦାମି ଧଳା । ପତ୍ରଗୁଡ଼ିକୁ ହାତରେ ମକଚିଲେ ରସୁଣ ଗନ୍ଧ ବାହାରେ । ପତ୍ରଗୁଡ଼ିକ ବିପରୀତପାର୍ଶ୍ୱୀ । ଏହାର ଡାଳକୁ ବାଲିମାଟିରେ ପୋତିଦେଲେ ସହଜରେ ଚେର ବାହାରେ । ଗଛଗୁଡ଼ିକ ଦୁଇ ବର୍ଷର ହୋଇଗଲେ ଫୁଲ ଆସେ । ଫୁଲର ରଙ୍ଗ ଫିକା ନୀଳ । ଗୋଟିଏ ସମୟରେ ଫୁଲ ଆସୁଥିବାରୁ ଫୁଲ ଫୁଟିବାବେଳେ ଲତାଟି ବହୁତ ସୁନ୍ଦର ଦିଶେ । ବର୍ଷକ ମଧ୍ୟରେ ଦୁଇଥର ଫୁଲ ଆସେ କିନ୍ତୁ ଶୀତଦିନରେ ବହୁତ ଫୁଲ ଫୁଟେ । ଗ୍ରୀଷ୍ମକାଳରେ ଅନ୍ୟ ଲତାଗୁଡ଼ିକରେ ଫୁଲ ନଥିଲାବେଳେ ଏହି ଲତାରେ ଫୁଲଫୁଟି ବଗିଚାର ସୌନ୍ଦର୍ଯ୍ୟ ବଢ଼ାଏ । ଏହାର ଅନ୍ୟ ଏକ ଜାତି *A. calycina* ରେ ହଳଦିଆ ରଙ୍ଗର ଫୁଲ ଫୁଟେ ।

**ବାନିଷ୍ଟେରିଆ** (Banisteria, laevifolia, Malpighiaceae)- ବାନିଷ୍ଟେରିଆ ଏକ ଗୁଳ୍ମଜାତୀୟ ଲତା । ଏହା ଚାରିଆଡ଼େ ଶାଖାପ୍ରଶାଖା ମେଲି ଖୁବ୍ ଶୀଘ୍ର ବଢ଼ିଥାଏ । ଏହାର ସମ୍ମୁଖୀ ପତ୍ର (opposite leaf) ଗୁଡ଼ିକ ଇଷତ ସବୁଜରଙ୍ଗ । ବଡ଼ ବଡ଼ ପେଣ୍ଡା ହଳଦିଆ ଫୁଲଗୁଡ଼ିକ ଜାନୁୟାରୀ ମାସଠାରୁ ଏପ୍ରିଲମାସ ପର୍ଯ୍ୟନ୍ତ ଫୁଟେ । ଫୁଲଗୁଡ଼ିକ ଓନସିଡ଼ିଅମ୍ ଅର୍କିଡ଼ର ଫୁଲପରି ଦିଶେ । ଦବାକଲମି (Ground layering) ଦ୍ୱାରା ଏହାର ବଂଶବିସ୍ତାର କରାଯାଏ । ଗୃହର ଛାତ, କନଜରଭେଟରୀ ତଥା ପୋର୍ଟିକୋରେ ଏହାକୁ ଲଗାଯାଇଥାଏ । ଉର୍ବର, ନିଗିଡ଼ା ହାଲୁକା ମାଟିରେ ଏହା ଭଲଭାବରେ ବଢ଼େ ।

**ମଧୁମାଳତୀ** (*Quisqualis indica,* Combretaceae)- ମଧୁମାଳତୀ ଆମ ଉଦ୍ୟାନରେ ଚିରପରିଚିତ ଲତାଗୁଡ଼ିକ ମଧ୍ୟରେ ଅନ୍ୟତମ । ସହରଠାରୁ ଆରମ୍ଭକରି ପଲ୍ଲୀଅଞ୍ଚଳ ପର୍ଯ୍ୟନ୍ତ ସବୁଠି ଏହାର ଆଦର ରହିଅଛି । ପତ୍ରଗୁଡ଼ିକ ଲୋମଶ ଓ ଇଷତ ସବୁଜରଙ୍ଗ । ନୂତନ ଡାଳଗୁଡ଼ିକ ଅଗରେ ପେଣ୍ଡା ପେଣ୍ଡା ହୋଇ ଫୁଲ ଫୁଟେ । ଗୋଟିଏ ଏବୃନ୍ତରେ ନାଲି, ଫିକାନାଲି, ସାମୟିକ



(ଚିତ୍ର-୬୮) ମଧୁମାଳତୀ

ଧଳା ଫୁଲ ମିଶିକରି ଆସେ । ପୁଷ୍ପଗୁଡ଼ିକ ସୁଗନ୍ଧଯୁକ୍ତ । ବର୍ଷକରେ ୩/୪ ଥର ଫୁଲ ଆସେ କିନ୍ତୁ ଖରାଦିନେ ଫୁଲଭରା ଲତା ଉଦ୍ୟାନର ଶୋଭାରାଶୀ ବର୍ଦ୍ଧନ କରିଥାଏ । ଉର୍ବର ନିଗିଡ଼ା ମାଟିରେ ଏହା ଭଲ ବଢ଼େ । ପୁରୁଣା ଗଛ ନିକଟରୁ ଭୂସ୍ତାରୀ ସଂଗ୍ରହ କରି ଏହାର ବଂଶବିସ୍ତାର କରାଯାଏ । ଏହା ବଢ଼ିବାପାଇଁ ବହୁ ସ୍ଥାନ ଦରକାର କରୁଥିବାରୁ ବଡ଼ ତୋରଣ, ପୋର୍ଟିକୋ ପାଖରେ ଲଗାଯିବା ଦରକାର । ଏଗୁଡ଼ିକ ବଢ଼ିବାରେ ସାହାଯ୍ୟ କରିବା ପାଇଁ ବହୁତ ସ୍ଥାନ ଆବଶ୍ୟକ । ଏହାର ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତିମାନଙ୍କ ମଧ୍ୟରେ **Q. malabarica** ରେ ଛୋଟ ଫୁଲ ଆସେ ଏବଂ **Q. densiflora** ରେ ଗାଢ଼ଲାଲ ରଙ୍ଗର ଫୁଲ ଫୁଟେ ।

**ପୋରାନା** (*Porana, paniculata* Convolvulaceae)- ଏହି ଲତାର ଶୁଭ୍ରଧବଳ ପୁଷ୍ପରାଶି ଫୁଲତୋଡ଼ା ଭଳି ଦିଶେ । ଏହା ଏକ ଗୁଳ୍ମଜାତୀୟ ଲତା । ଏହାର ଡାଳଗୁଡ଼ିକ ଛନ୍ଦାଛନ୍ଦି ହୋଇ ବଢ଼ନ୍ତି । ପତ୍ରଗୁଡ଼ିକ ୬ ରୁ ୮ ସେ.ମି. ଦୈର୍ଘ୍ୟ ଏବଂ ୪ ସେ.ମି. ପ୍ରସ୍ଥ ଓ ଲୋମଶ । ଏହି ଲତାରେ ଡିସେମ୍ବର ମାସରେ ଫୁଲ ଫୁଟିଥାଏ । ଫୁଲର ପାଖୁଡ଼ା କାହାଳି ଆକୃତିର ହୋଇ ଉପର ପଟକୁ କପ୍ ପରି ଦେଖାଯାଏ । ଡାଳକଲମି ଦ୍ୱାରା ଏହାକୁ ଲଗାଯାଇପାରେ । ରାସ୍ତାର ଦୁଇପାର୍ଶ୍ୱରେ ତୋରଣ ପ୍ରସ୍ତୁତ କରି କିମ୍ବା କୋଠାର ସ୍ତମ୍ଭ ନିକଟରେ ଏଗୁଡ଼ିକୁ ଲଗାଯିବା ଉଚିତ । *P. racemosa* ଓ *P. volubils* ଏହାର ଅନ୍ୟ ଦୁଇପ୍ରକାର ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି ।

**ରାଧାତମାଳ** (Passiflora coerulea, Passifloraceae)- ରାଧାତମାଳ ଏକ ଚିରହରିତ ଲତା । ଏହାର ଆକର୍ଷିକା (tendril) ଗୁଡ଼ିକ ଏହାକୁ ବଢ଼ିବାରେ ସାହାଯ୍ୟ କରିଥାନ୍ତି । ଖୁବ୍ କମ୍ ସମୟ ମଧ୍ୟରେ ଏହା ବହୁତ ସ୍ଥାନରେ ମାଡ଼ିପାରେ । ଏହାର ପତ୍ରଗୁଡ଼ିକ ତ୍ରିଶୂଳାକୃତି ଓ ସର୍ବଦା ସବୁଜ ରହୁଥିବାରୁ ଉଦ୍ୟାନର ସୌନ୍ଦର୍ଯ୍ୟ ବୃଦ୍ଧିରେ ସହାୟକ ହୋଇଥାଏ । ପୁଷ୍ପଗୁଡ଼ିକ ବର୍ଷାଋତୁସାରା ଫୁଟନ୍ତି । ପୁଷ୍ପଗୁଡ଼ିକ ନୀଳରଙ୍ଗ ଓ ଏହାର ପୁଂ କେଶର ଚକ୍ର ଏପରି ଭାବରେ ସଜ୍ଜିତ ଯେ ଏହା କାରୁକାର୍ଯ୍ୟଭରା କାନରେ ଝୁମୁକାପରି ଦେଖାଯାଏ । ପୁଷ୍ପର ନୀଳରଙ୍ଗ ଯୋଗୁ ଏହା ବହୁ ଦୂରକୁ ଦିଶେ ନାହିଁ । ଡାଳକଲମି ଦ୍ୱାରା ଅତି ସହଜରେ ନୂଆଗଛ ପ୍ରସ୍ତୁତ କରାଯାଇପାରେ । ବାତାୟନ ପାର୍ଶ୍ୱ ତଥା ତୋରଣଗୁଡ଼ିକରେ ଏହାକୁ ଲଗାଯିବା ଉଚିତ । ଫୁଲ ଫୁଟିସାରିବା ପରେ ଗଛଗୁଡ଼ିକୁ କାଣ୍ଡଛାଣ୍ଡ କରିଦେବା ଆବଶ୍ୟକ । ଅନ୍ୟାନ୍ୟ ଶୋଭାବର୍ଦ୍ଧକ ଜାତି ମଧ୍ୟରେ P. racemosa ରେ ଲାଲ୍, P. laurifolia ରେ ବାଇଗଣି, P. quandrangularis ରେ ଚିତ୍ରାନୀଳ ଫୁଲ ଫୁଟେ ଓ P. edulis (Passion fruit)ରେ ଖାଦ୍ୟୋପଯୋଗୀ ଫଳ ଫଳେ ।

**ବଗନଭିଲା** (Bougainvillea sps. Nyctaginaceae)- ବଗନ୍‌ଭିଲା କାଣ୍ଡକୁ ଆଶ୍ରାଦେଇ ବଢ଼ାଇଲେ ଏହା ଲତାପରି ଦିଶେ । ଗୃହ ଓ



(ଚିତ୍ର-୬୯) ରାଧାତମାଳ

ଅଫିସ ଛାତରେ ଏଗୁଡ଼ିକୁ ମଡ଼ାଇଲେ ଶୀତଦିନେ ଫୁଲ ଫୁଟି ସୁନ୍ଦର ଦିଶେ । ସବୁ କିସମର ବଗନଭିଲାଗୁଡ଼ିକ ଲତାପରି ବଢ଼ିପାରନ୍ତି ନାହିଁ । ଲତାପରି ବଢୁଥିବା ବଗନଭିଲା ମଧ୍ୟରେ ଅଟମ, ମେରିପାମର, ଆଲୋକ, ମାହାରା, ଥିମା, ସ୍କାରଲେଟ୍ କୁଇନ ପ୍ରଭୃତି ପ୍ରଧାନ । ବଗନଭିଲାକୁ ଲତାକରି ବଢ଼ାଇବାକୁ ହେଲେ ଏହାର ପାର୍ଶ୍ୱ ଡାଳଗୁଡ଼ିକୁ କଟାକଟି କରିଦେବା ଉଚିତ । ଗୁଳ୍ମ ବର୍ଣ୍ଣନା କରାଯାଇଥିବା ପରିଚ୍ଛେଦରେ ଏହାର ବିଶଦ ବର୍ଣ୍ଣନା ଦିଆଯାଇଅଛି ।

**ଜାଇ** (Jasminum grandiflorum, Oleaceae)- ଜାଇ ଆମ ଉଦ୍ୟାନର ଏକ ଚିରପରିଚିତ ଲତା । ପୁରାଣଶାସ୍ତ୍ରରେ ଏହାର ବର୍ଣ୍ଣନା ଦେଖିବାକୁ ମିଳେ । ଏହାର ଲତାଗୁଡ଼ିକ କ୍ଷୁଦ୍ରରୁ ମଧ୍ୟମ ଧରଣର ହୋଇଥିବାରୁ ବାରଣ୍ଡାର ପାର୍ଶ୍ୱ, ଶୟନାଗାରର ବାତାୟନ ପାର୍ଶ୍ୱ ଏବଂ ଉଦ୍ୟାନ ମଧ୍ୟସ୍ଥ ତୋରଣଗୁଡ଼ିକରେ ଲଗାଯାଇଥାଏ । ନୂତନ କରି ବଢୁଥିବା ଡାଳଗୁଡ଼ିକ ଏହାକୁ ବଢ଼ିବାରେ ସାହାଯ୍ୟ କରିଥାଏ । ଏହାର ପକ୍ଷଳ ପତ୍ର (pinnate leaf) ଗୁଡ଼ିକ ଗାଢ଼ ସବୁଜ ରଙ୍ଗ ଏବଂ ଫୁଲଗୁଡ଼ିକ ନଳାକାର ଏବଂ ପାଖୁଡ଼ାଗୁଡ଼ିକ ସାମାନ୍ୟ ମୋଟା । ପୁଷ୍ପର ପାଖୁଡ଼ାଗୁଡ଼ିକ ଶୁଭ୍ରଧବଳ ବର୍ଣ୍ଣ ଓ ନିମ୍ନାଂଶ ଗୋଲାପି ନାଲି ଅଟେ । ଜାଇ ଡାଳକଲମି ଦ୍ୱାରା ଏହାର ବଂଶ ବିସ୍ତାର କରାଯାଇଥାଏ । ଗ୍ରୀଷ୍ମମଣ୍ଡଳୀୟ ଜଳବାୟୁରେ ଏହା ଭଲ ବଢ଼ିଥାଏ । ଜାଇ ପରି ଯୁଇ (*J. officinalis*) ଅନ୍ୟ ଏକ ଲତା, ତେବେ ଏହା ବେଶୀ ଉଚ୍ଚକୁ ବଢ଼ିପାରେ ନାହିଁ । ଏହାର ଧଳାଫୁଲଗୁଡ଼ିକ ଡାଳର ଅଗ୍ରାଂଶରେ ଫୁଟେ । ଏହାର ଫୁଲଗୁଡ଼ିକ ସୁଗନ୍ଧଭରା । ଏହି ବର୍ଗର *J. primulinum* ରେ ବହୁଦଳାବରଣ ବିଶିଷ୍ଟ ହଳଦିଆ ଫୁଲ ଫୁଟେ ।

**କ୍ୟାମ୍ପସିସ୍** (*Campsis grandiflora*, Bignoniaceae) କ୍ୟାମ୍ପସିସ୍‌ର କମଳାରଙ୍ଗର ଫୁଲଗୁଡ଼ିକ ଖୁବ୍ ସୁନ୍ଦର । ଏହା ଏକ ଲଘୁକାୟ ଲତା । ଏହା ଦୈର୍ଘ୍ୟରେ କୋଠା କିମ୍ବା ଉଚ୍ଚ ବୃକ୍ଷର ଉପର ପର୍ଯ୍ୟନ୍ତ ମାଡ଼ିଯାଇପାରେ । କିନ୍ତୁ ପ୍ରସ୍ଥରେ ବେଶି ବଢ଼ିପାରେ ନାହିଁ । ରଜ୍ଜୁପରି ତଳକୁ ଖସିଆସିଥିବା ନୂଆ ଡାଳର ଅଗ୍ରଭାଗରେ ପେନ୍ଥା ପେନ୍ଥା କମଳାରଙ୍ଗର ଫୁଲ ଫୁଟେ । ଫୁଲଗୁଡ଼ିକ ବେଶୀଦିନ ରହିପାରେ । କ୍ୟାମ୍ପସିସ୍‌ର ସବୁଜରଙ୍ଗର ଯୌଗିକ ପତ୍ରଗୁଡ଼ିକ ଲତାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ଏହି ଲତାକୁ ତୋରଣ କିମ୍ବା କୋଠାର ସ୍ତମ୍ଭ ଧାରେଧାରେ ଲଗାଯିବା ଉଚିତ । ଏହାକୁ ବଡ଼ ବଡ଼ ଗଛଉପରକୁ ଛାଡ଼ିଦେଲେ ସୁନ୍ଦର ଦିଶେ । କ୍ୟାମ୍ପସିସ୍‌ର ମୂଳରୁ ଭୂସ୍ତାରୀମାନ ବାହାରିଥାଏ । ଏଗୁଡ଼ିକଦ୍ୱାରା ନୂଆ ଗଛ କରାଯାଏ ।

**କ୍ଲେରୋଡେ଼ଣ୍ଡ୍ରନ୍ (Clerodendron sps. Verbenaceae)**
ଆମ ଭାରତୀୟ ଉଦ୍ୟାନଗୁଡ଼ିକରେ ଦୁଇପ୍ରକାର କେରୋଡେ଼ଣ୍ଡ୍ରନ ଲତା ଲଗାଯାଇଥାଏ । ଯଥା *C. splendens* ଏବଂ *C. thomsonae* ।



(ଚିତ୍ର-୭୦) ବୁଢ଼ିଙ୍ଗହାଟ

**Spledence** ଜାତିର ଲତାଟି ବୃହଦାକାର ଏବଂ ଶୀଘ୍ର ବଢ଼ିଯାଏ । ଏହାର ପତ୍ର ଗାଢ଼ ସବୁଜରଙ୍ଗ ଏବଂ ପୁଷ୍ପଗୁଡ଼ିକ ରକ୍ତବର୍ଣ୍ଣ । ନୂତନ ଡାଳଗୁଡ଼ିକ ଏହାକୁ ବଢ଼ିବାରେ ସାହାଯ୍ୟ କରିଥାଏ । ଏଥିରେ ବର୍ଷା ଓ ଶୀତଦିନରେ ଦୁଇମୁଥ ଫୁଲ ଆସେ । ଲତାରେ ନାଲି ଫୁଲଗୁଡ଼ିକ ପେଣ୍ଡା ପେଣ୍ଡା ହୋଇ ଝୁଲିଥାନ୍ତି । ଫୁଲଗୁଡ଼ିକ ଝଡ଼ିଗଲାପରେ ଏହାର ଫିକା ନାଲିରଙ୍ଗର ଉପବୃତ୍ତି ଗଛର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି । କିନ୍ତୁ ଅନ୍ୟ ଜାତି ବୁଢ଼ିଙ୍ଗହାଟ (*C. thomsonae*)ରେ ବର୍ଷସାରା ମୁଥକୁ ମଥ ଫୁଲ ଆସିଥାଏ । ଏହାର ଉପବୃତ୍ତି ଧଳା ଓ ହୃତ୍‌ପିଣ୍ଡ ପରି । ମଝିରେ ଲାଲବର୍ଣ୍ଣର ଫୁଲ ଫୁଟିଥାଏ । *C. spledens* କୁ ଘରର ଛାପ୍ରି ବା ଜାଲିରେ ମଡ଼ାଇବା ଉଚିତ । କିନ୍ତୁ C. thomsonae କୁ ବାରଣ୍ଡା ସମ୍ମୁଖରେ ଲଗାଇଲେ ସୁନ୍ଦର ଦିଶେ । ଡାଳକଲମି ଦ୍ୱାରା ଏହାର ବଂଶବିସ୍ତାର କରାଯାଏ ।

**ଆଇପୋମିଆ ଲତା** (Ipomea sps. Convolvulaceae)- ଜାପାନରେ ବହୁଳ ଭାବରେ ଏହି ଲତାକୁ ବ୍ୟବହାର କରାଯାଏ । ଆଜିକାଲି ଆମ ଦେଶରେ ଏହା ଲଗାଯାଉଛି । ଏହାକୁ Morning glory, ବା Day glory ବୋଲି କୁହାଯାଏ । ଅନେକ ଆଇପୋମିଆ ପ୍ରଭାତ କାଳରେ ପ୍ରସ୍ଫୁଟିତ ହୋଇ ମଧ୍ୟାହ୍ନବେଳକୁ ମଉଳିଯାଆନ୍ତି; କିନ୍ତୁ ଅନେକ ଦିନସାରା ଫୁଟିବା ଅବସ୍ଥାରେ ରହିଥାନ୍ତି । ଏହି ଜାତିର ଗଛଗୁଡ଼ିକରେ କାଣ୍ଡର ଅଗ୍ରଭାଗ ଅନ୍ୟ ଉପରେ ଆଶ୍ରୟ ନେଇ ବଢ଼େ । ଅଳ୍ପ ଚାପ ଦେଲେ ଲତାର ଡାଳ ଭାଙ୍ଗିଯାଏ । ସବୁପ୍ରକାର ଆଇପୋମିଆ ମଞ୍ଜି ଏବଂ ଡାଳକଲମି ଦ୍ୱାରା କରାଯାଏ । ଏହି ଲତା ଏକବର୍ଷଠାରୁ ଆରମ୍ଭ କରି ବହୁବର୍ଷ ପର୍ଯ୍ୟନ୍ତ ରହୁଥିବା ଲତା ହୋଇଥିବାରୁ ତାହାକୁ ଉପଯୁକ୍ତ ସ୍ଥାନ ନିରୂପଣ କରି ଲଗାଯିବା ଉଚିତ । ନିମ୍ନରେ କେତେକ ଆଇପୋମିଆ ଲତାର ବର୍ଣ୍ଣନା ଦିଆଗଲା ।

Ipomea tricolor ଏହାକୁ ଏକ ବାର୍ଷିକ ଲତା ରୂପେ ପଥଧାରମାନଙ୍କରେ ଲଗାଯାଏ । ଅଗଷ୍ଟମାସରେ ଏହାର ମଞ୍ଜି ଲଗାଯାଏ । ଫୁଲଗୁଡ଼ିକ ନୀଳରଙ୍ଗର ଓ ଦିନବେଳେ ଫୁଟିଥାଏ । ଫୁଲଗୁଡ଼ିକ ସାଧରଣତଃ ବସନ୍ତ ଋତୁରେ ଆସେ । ବାଉଁଶରେ କ୍ରସ୍ କରି ଏହାକୁ ମଡ଼ାଯାଏ । କୁଣ୍ଡରେ ବାଉଁଶ ପୋତି ଏହାକୁ ଲଗାଯାଇ ପାରେ ।

Ipomea acuminata ଦେଖିବାକୁ ଉପରୋକ୍ତ ଆଇପୋମିଆ ପରି; କିନ୍ତୁ ଫୁଲଗୁଡ଼ିକ ଅପେକ୍ଷାକୃତ ବଡ଼ । ଏହି ଲତା ଖୁବ୍ କମ ସମୟରେ ବହୁତ ସ୍ଥାନ ଅଧିକାର କରିଥାଏ ।

I. palmata ବା ରେଲୱେ କ୍ରିପରର ଫୁଲ ବାଇଗଣୀ ଓ ଅପେକ୍ଷାକୃତ ଖୁବ୍ କମ୍ ଯତ୍ନରେ ବଢ଼ିଥାଏ; କିନ୍ତୁ I. carnea (ଅମରୀଲତା)କୁ ଆବର୍ଜନାଭରା ସ୍ଥାନରେ ଲଗାଇବା ଭଲ । ଏହାର ବ୍ୟବହାର ସୀମିତ ନକଲେ ଏହା ଚାରିଆଡ଼େ ମାଡ଼ି ଜମିକୁ ନୀରସ କରିଦିଏ ।



(ଚିତ୍ର-୭୧) ଆଇପୋମିଆ ଲତା

ଉଡ୍‌ରୋଜ (I. tuberosa) ଖୁବ୍ କମ୍ ସମୟରେ ଚାରିଆଡ଼େ ମାଡ଼ିଯାଏ । ଏହାର ଯୌଗିକ ପତ୍ର ମଝିରେ ହଳଦିଆ ରଙ୍ଗର ଅଣ୍ଡିରା ଫୁଲଗୁଡ଼ିକ ସୁନ୍ଦର ଦିଶେ । ମାଇ ଫୁଲଗୁଡ଼ିକ ଡେରିରେ ଫୁଟେ ଓ ଏଗୁଡ଼ିକ ଶୁଖିଗଲେ ପୁଷ୍ପସଜ୍ଜାରେ ବ୍ୟବହାର କରାଯାଏ ।

**ପିଟ୍ରିଆ** (*Petrea volubilis,* Verbenaceae)- ଏହି ଫୁଲ ନୀଳରଙ୍ଗର, ବୃନ୍ତିଗୁଡ଼ିକ ଦେଖିବାକୁ ଛୋଟ ତାରା ପରି ଓ କାଣ୍ଡଗୁଡ଼ିକ ଧୂସରରଙ୍ଗ ଓ ଶକ୍ତ । ଏହା ଏକ ବୃହଦାକାର ଲତା । ଏହାର ପତ୍ରଗୁଡ଼ିକ ସବୁଜରଙ୍ଗ, କିନ୍ତୁ ହାତକୁ ଟାଆଁପିଆ ଲାଗେ । ବାହାରୁଥିବା ନୂଆ ଡାଳଗୁଡ଼ିକ



(ଚିତ୍ର-୭୨) ପିତ୍ରିଆ

ତୋରଣ କିମ୍ୱା ଗଛ ଡାଳରେ ଛନ୍ଦିହୋଇ ଖୁବ୍ କମ ସମୟରେ ଉପରକୁ ବଢ଼ିଯାଆନ୍ତି । ଡାଳକଲମିଦ୍ୱାରା ନୂଆ ଗଛ ତିଆରି ହୁଏ । ଗଛ ଲଗାଇବାର ୨ ବର୍ଷ ପରେ ଫୁଲ ଆସେ । ଶୀତଦିନ ଏବଂ ଖରାଦିନରେ ପ୍ରାୟ ୨ ମୁଥ ଫୁଲ

ଡାଳମାନଙ୍କରେ ଆସିଥାଏ । ପାଞ୍ଚଟି ଖଣ୍ଡ ବୃନ୍ତି ମଧ୍ୟରେ କ୍ଷୁଦ୍ର ଗାଢ଼ ନୀଳରଙ୍ଗର ପ୍ରକୃତ ଫୁଲଟି ଫୁଟିଥାଏ । ତାହା ଶୀଘ୍ର ବୃନ୍ତି ମଧ୍ୟରୁ ଖସିଯାଏ ଓ ଗାଢ଼ନୀଳ ବୃନ୍ତିଗୁଡ଼ିକ ସୌନ୍ଦର୍ଯ୍ୟ ବଢ଼ାନ୍ତି; କିନ୍ତୁ ପରେ ବୃନ୍ତିଗୁଡ଼ିକ ଗାଢ଼ନୀଳରୁ ଫିକାନୀଳ ଓ ପରେ ସବୁଜ ପାଲଟିଯାଆନ୍ତି । ଏଗୁଡ଼ିକ ବହୁତ ଦିନ ପର୍ଯ୍ୟନ୍ତ ଶୁଖିକରି ଲତାରେ ଝୁଲୁଥାନ୍ତି । କୋଠାର ଏକ ପାର୍ଶ୍ୱରେ କିମ୍ବା ବଡ଼ ତୋରଣ ତଥା ସମୟେ ସମୟେ ଖୋଲା ଡାଳଥିବା ଗଛଗୁଡ଼ିକରେ ଏହା ଲଗାଯାଏ । ପିତ୍ରିଆ ଖୁବ୍ କମ ଯତ୍ନରେ ବଢ଼ିପାରେ ।

### ଥନବର୍ଜିଆ (*Thunbergia grandiflora*, Acanthaceae)

ଥନବର୍ଜିଆ ଏକ ବୃହଦାକାର ଲତା । କନ୍‌ଜରଭେଟୋରୀ, ଛୋଟ ଗୃହ, ଗ୍ୟାରେଜ ତଥା ପୋର୍ଟିକୋରେ ଏହାକୁ ମଡାଯାଇଥାଏ । ଲତାର ପତ୍ରଗୁଡ଼ିକ ଚିର ସବୁଜ ଓ ତିନିଫାଳିଆ । ମଝିଟି ବଡ଼ । ଡାଳକଲମି ଦ୍ୱାରା ନୂଆଗଛ ଲଗାଯାଏ । ପ୍ରଥମରୁ ଧୀରେ ଧୀରେ ଉପରକୁ ମଡ଼ାଇବାକୁ ପଡ଼େ, ନଚେତ୍ ଏହା ଭୂମି ଉପରେ ମାଡ଼ିଚାଲେ । ଗଛ ଲାଗିବାରେ ଦୁଇବର୍ଷ ପରେ ଫୁଲ ଆସେ । ଶୀତଋତୁରେ ପ୍ରତ୍ୟେକ ଗଣ୍ଠିରୁ ଡାଳ ବାହାରି ସେଥିରେ ଏକ ସୀମିତ ସ୍ତବକରେ ଆକାଶନୀଳ ରଙ୍ଗର ଫୁଲ ଫୁଟେ । ପାଖୁଡ଼ାର ତଳ ଅଂଶ ହଳଦିଆ । ସାମାନ୍ୟ ବକ୍ରଭାବରେ ପାଖୁଡ଼ା ପାଞ୍ଚଟି ସମାନ ଆକାରରେ ଚାରିପାଖକୁ ସଜା ହୋଇଥାଏ । ଦୁଇଟି ବୃନ୍ତି ଏକ କପ୍‌ଭଳି ଫୁଲଟିକୁ ସାଇତି ଧରିଥା'ଏ । ଉର୍ବର ନିଗିଡ଼ା ମାଟିରେ ଏହା ଭଲ ବଢ଼େ । ଛାଇ ସ୍ଥାନରେ ଗଛରେ ବେଶୀ ଫୁଲ ଆସେ ନାହିଁ । ଏହି ପ୍ରଜାତିର ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଲତାମାନଙ୍କ ମଧ୍ୟରେ T. alata (Black eyed susan) ଅନ୍ୟତମ । ସକାଳେ ହଳଦିଆ ରଙ୍ଗର ଫୁଲ ଫୁଟେ । ପାଖୁଡ଼ାର ମଝି ଅଂଶରେ ବାଦାମି ରଙ୍ଗର ଏକ ଗୋଲାକାର ଦାଗଥାଏ ଓ ଏହା ଆଖିପରି ଦିଶେ । ଏହାକୁ ବାର୍ଷିକ ଲତାରୂପେ ବ୍ୟବହାର କରାଯାଇଥାଏ । ଏହି ଲତା ୧୦୦ ରୁ ୧୫୦ ସେ.ମି. ଉଚ୍ଚକୁ ବଢ଼ିଥାଏ । ଲନ୍ ଚାରିପାଖରେ ଛୋଟ ବାଉଁଶବାଡ଼ କରି ଏଗୁଡ଼ିକ ଲଗାଯାଇପାରେ । T. mysorensis ଜାତି T. grandiflora ଭଳି ବେଶୀ ବଢ଼ିପାରେ । ଏଥିରେ ହଳଦିଆ ଫୁଲ ଫୁଟେ । ଦବାକଲମିଦ୍ୱାରା ଏହାର ବଂଶବିସ୍ତାର କରାଯାଏ । T. coccinea ଦେଖିବାକୁ ଉପରୋକ୍ତ ଲତାପରି; କିନ୍ତୁ ଏଥିରେ ଲାଲ ଫୁଲ ଫୁଟିଥାଏ । ଫୁଲର ବେକରେ ହଳଦିଆ ଦାଗ ଥାଏ । T. fragrans ର ଫୁଲ ସୁବାସଯୁକ୍ତ ଓ ଧଳା ଏବଂ *T. gibsonii* ରେ କମଳା ରଙ୍ଗର ଫୁଲ ଫୁଟିଥାଏ ।



(ଚିତ୍ର-୭୩) ଥନବଳିଆ

ଭାଲାରିସ୍ (*Vallaris heynei*, Apocynaceae)- ଏହା ଏକ ଗୁଳ୍ମଜାତୀୟ ଲତା । ଭାଲାରିସ୍ ପତ୍ରଗୁଡ଼ିକ ସବୁଜ ଓ ରମଣୀୟ । ଏଥିରେ କପ୍ ଆକୃତିର ଆଇଭୋରି ଧଳା ରଙ୍ଗର ଫୁଲ ବର୍ଷରେ ୨ ଥର ଆସେ । ଗୋଟି, ଅସୀମ ସ୍ତବକରେ ୮ ୧୦ଟି ସୁବାସିତ ଫୁଲ ଆସେ । ଦବାକଲମି ଦ୍ୱାରା ନୂଆଗଛ କରାଯାଏ । ଏଗୁଡ଼ିକ ତୋରଣ କିମ୍ବା ପ୍ରାଚୀର ଦେହରେ ଲଗାଯାଇ ପାରେ ।

**ଟୋକେଇକୁଣ୍ଢେଇ** (*Stephanotis floribunda*, Asclepiadaceae)- ଟୋକେଇକୁଣ୍ଢେଇର ଅନ୍ୟ ନାମ ଲତା ରଜନୀଗନ୍ଧା । ଫୁଲଗୁଡ଼ିକ ମହମ ଧଳାରଙ୍ଗ ଓ ସୁବାସଯୁକ୍ତ, ପତ୍ରଗୁଡ଼ିକ ସବୁଜ । ନିଗଡ଼ା ମାଟିରେ ଏହା ଭଲ ବଢ଼ିପାରେ । ଦବାକଲମି ଦ୍ୱାରା ନୂଆ ଗଛ କରାଯାଏ । ଛୋଟ ଛୋଟ ତୋରଣରେ ଏହାକୁ ବଢ଼ାଯିବା ଉଚିତ ।

**ରୂପେଲିଆ** (*Roupellia grata*, Apocynaceae)- ରୂପେଲିଆ ଏକ ଗୁଳ୍ମଜାତୀୟ ଲତା । ଏହା ଦୀର୍ଘରେ ବହୁ ଉଚ୍ଚ ପର୍ଯ୍ୟନ୍ତ ବଢ଼ିପାରେ; କିନ୍ତୁ ଓସାରରେ ବେଶୀ ବଢ଼ିପାରେ ନାହିଁ । ଗ୍ରୀଷ୍ମଋତୁରେ ବାଇଗଣି ରଙ୍ଗର ଦାଗ ଥିବା ଫିକା ଧଳା ଫୁଲ ନୂଆ ଡାଳରେ ଫୁଟେ । ପତ୍ରଗୁଡ଼ିକ ସବୁଜ, ବିପରୀତ ପାର୍ଶ୍ୱୀ ଓ ଚିକ୍କଣ । ଡାଳକଲମି ଦ୍ୱାରା ଏହାର ବଂଶବିସ୍ତାର କରାଯାଏ ।

**ଆରୋହୀ ଭେରୀ** (*Solandra grandiflora*, Solanaceae)- ଏହା ଏକ ଗୁଳ୍ମଜାତୀୟ ଲତା । ପତ୍ରଗୁଡ଼ିକ ବଡ଼ ଓ ଗଛରେ ତୁରୀ ଆକୃତିର ଧଳାଫୁଲ ଫୁଟେ । ଗଛ ଦେହରେ ଏହାକୁ ମଡ଼ାଇଲେ ଏହା ଭଲ ବଢ଼ିଥାଏ ।

**ଚାବୁକ ଛଡ଼ି** (*Cryptostegia grandiflora*, Apocynaceae)- ଉଷ୍ଣମଣ୍ଡଳୀୟ ଆଫ୍ରିକାଦେଶୀୟ ଏହି ଗୁଳ୍ମ ଲତାପରି ବଢ଼େ । ଏହାର ଡାଳଗୁଡ଼ିକ ଛନ୍ଦାଛନ୍ଦି ହୋଇ ବଡ଼ ବଡ଼ ତୋରଣ କିମ୍ବା ନିଶୁଣୀରେ ମାଡ଼ି ପାରନ୍ତି । ବର୍ଷାଋତୁ ଶେଷରେ ଏବଂ ଗ୍ରୀଷ୍ମଋତୁରେ ଏଥିରେ ବାଇଗଣି ନୀଳ ରଙ୍ଗର ଫୁଲ ଫୁଟିଥାଏ । ଫୁଲଗୁଡ଼ିକ ପାଖରୁ ସୁନ୍ଦର ଦିଶନ୍ତି । ଲନ୍ ଚାରିପାଖ କିମ୍ବା ରାସ୍ତା ମଝିରେ ତୋରଣ କରି ଏଗୁଡ଼ିକ ମଡ଼ାଇବା ଉଚିତ । ଡାଳକଲମି ଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ମରୁଭୂମି ଅଞ୍ଚଳରେ ଏହା ଭଲ ବଢ଼ିପାରେ । ଏହି

ଲତାକୁ ୮/୧୦ ଫୁଟ ବଢ଼ାଇ କାଟିଦେଲେ ଚାରିଆଡ଼କୁ ଚାବୁକପରି ଡାଳଗୁଡ଼ିକ ତଳକୁ ଓହଳି ଫୁଲରେ ମଣ୍ଡିହୋଇ ସୁନ୍ଦର ଦିଶେ ।

**କୁଞ୍ଜଲତା** (Quamoclit pinnata, Convolvulaceae)- କୁଞ୍ଜଲତା ଆମ୍ଭମାନଙ୍କ ଉଦ୍ୟାନର ଏକ ବାର୍ଷିକ ଲତା । ପତ୍ର ଗାଢ଼ ସବୁଜରଙ୍ଗ ଓ ପକ୍ଷଳ । ଲତାରେ ୫/୬ ସେ.ମି. ଲମ୍ବାର ତୁରୀ ଆକାରର ଗାଢ଼ ଲାଲ୍ ଫୁଲ ଫୁଟେ । ଘରଆଗରେ ଦଉଡ଼ି ଟାଣି ଏଗୁଡ଼ିକୁ ସେଥିରେ ମଡ଼ାଯାଏ । ସମୁଦାୟ ଲତାଟି କମ୍ ଆୟତନରେ ସାପପରି ଛନ୍ଦାଛନ୍ଦି ହୋଇ ବଢ଼ନ୍ତି । ମଞ୍ଜିରୁ ଗଛ ହୁଏ । ବର୍ଷାଦିନେ ଗଛରେ ଫୁଲ ଫୁଟେ ଓ ଶୀତଦିନେ ଗଛ ମରିଯାଏ । ଥରେ ଗଛ ଲଗାଇଲେ ମଞ୍ଜିପଡ଼ି ବାଡ଼ିସାରା ଗଛ ଉଠେ ।

**କମଣ୍ଡଳୁ ଲତା** (*Nepenthes distillaytori*, Nephanthaceae) ଏହି ଲତାର ପତ୍ରଗୁଡ଼ିକ କମଣ୍ଡଳୁ ପରି । ଏହି ଫୁଲ ଭିତରେ ଥରେ କୀଟପତଙ୍ଗ ପଶିଗଲେ ଆଉ ବାହାରି ପାରେ ନାହିଁ । ଫୁଲ ଭିତରେ ଥିବା ରସ କୀଟପତଙ୍ଗମାନଙ୍କୁ ହଜମ କରିଥାନ୍ତି । ଲତା ଏହାକୁ ଖାଦ୍ୟରୂପେ ବ୍ୟବହାର କରିଥାଏ । ସନ୍ତସନ୍ତିଆ ସ୍ଥାନରେ ଏହା ଭଲ ବଢ଼େ । ମଞ୍ଜିଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ ।



(ଚିତ୍ର-୭୪) କମଣ୍ଡଳୁ ଲତା

**କାଇଞ୍ଚ ଲତା** (*Abrus precatorius*, Leguminosae)- କାଇଞ୍ଚ ଏକ କ୍ଷୁଦ୍ର ଲତା । ୪/୫ ମିଟର ଉଚ୍ଚ ହୁଏ । ବର୍ଷାଦିନେ ଲାଲ ଓ ଅନେକ ଜାତିର ଫୁଲ ଫୁଟେ । ଫୁଲରେ ଛୁଇଁ ହୋଇ ସେଥିରେ ଛୋଟ ଛୋଟ ଲାଲ ରଙ୍ଗର କାଇଞ୍ଚ ଫଳେ । ବଗିଚାରେ ଏହାର ସୀମିତ ବ୍ୟବହାର ଆବଶ୍ୟକ ।

**ହନିସ୍‌କଲ** (*Lonicera japonica*, Caprifoliaceae)- ଏହି ଲତାର ପତ୍ରଗୁଡ଼ିକ ଛେଳିକାନ ପରି । ଶୀତପ୍ରଧାନ ଅଞ୍ଚଳରେ ଏହା ଭଲ ବଢ଼େ । ଏହାର ଡାଳ ଆଶ୍ରୟ ଉପରେ ଗୁଡ଼େଇହୋଇ ଉପରକୁ ଯାଏ । ଗୋଟିଏ ଗଣ୍ଠିରେ ବିପରୀତ ପାର୍ଶ୍ୱରୁ ଦୁଇଟି ପତ୍ର ବାହାରିଥାଏ । ଶୀତଋତୁରେ ଧଳା ବାଇଗଣି, ହଳଦିଆ ରଙ୍ଗର ଫୁଲ ଫୁଟେ । ଦବାକଲମି ଦ୍ୱାରା ନୂଆଗଛ କରାଯାଏ । ଆମ ଦେଶର ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଏହା ଭଲ ବଢ଼େ ।

**ମାଧବୀ ଲତା** (*Hiptage benghalensis*, Malpeghiaceae)- ଏହା ଆମ ପ୍ରଦେଶରେ ବଣଜଙ୍ଗଲରେ ଦେଖାଯାଇଥାଏ । ଲତାଗୁଡ଼ିକ ୧୦ ମିଟରରୁ ଅଧିକ ଉଚ୍ଚ ହୋଇ ଅସଜ୍ଜତଭାବରେ ବଢ଼ିଥାନ୍ତି । ପତ୍ରଗୁଡ଼ିକ ଲମ୍ବା, ଚିକ୍‌କଣ ଓ ସବୁଜରଙ୍ଗ । ଲତାରେ ଫିକା ହଳଦିଆ ରଙ୍ଗର ସୁବାସିତ ଫୁଲଗୁଡ଼ିକ ପେଣ୍ଡାପେଣ୍ଡା ହୋଇ ଫୁଟି ଚାରିଆଡ଼କୁ ସୁବାସରେ ଭରିଦିଏ । ମଞ୍ଜିରେ ପକ୍ଷ ଥିବାରୁ ଏହା ଦୂରକୁ ଉଡ଼ି ବଂଶବିସ୍ତାର କରିଥାଏ । ବଡ଼ ବଡ଼ ଉଦ୍ୟାନରେ ଏହାକୁ ଲଗାଯିବା ଉଚିତ ।

**ନେପାଳତୁରୀ ଲତା** (*Beaumontia grandiflora*, Apocynaceae) ଏହି ଲତାର ଫୁଲ ଦେଖିବାକୁ ଧଳା, ସୁଗନ୍ଧଯୁକ୍ତ ଓ ତୁରୀ ଆକୃତିର । ନୂଆ ଡାଳଗୁଡ଼ିକ ଛଦାଛଦି ହୋଇ ମାଡ଼ନ୍ତି । ପତ୍ରଗୁଡ଼ିକ ଟାଆଁସିଆ ଓ ଫିକା ସବୁଜ ରଙ୍ଗର । ଶୀତଦିନେ ଏହି ଲତାରେ ଫୁଲ ଆସେ । ବଡ଼ ବଡ଼ ତୋରଣ ଏବଂ ପୋର୍ଟିକା ପାଖରେ ନିଶୁଣି ତିଆରି କରି ଏଗୁଡ଼ିକୁ ମଡ଼ାଯାଏ । ବର୍ଷାଦିନେ ତଳ ଡାଳଗୁଡ଼ିକ ଉପରେ ମାଟି ମଡ଼ାଇଦେଲେ ଚେର ବାହାରି ନୂଆ ଗଛ ହୋଇଥାଏ ।

**ଶତମୂଳୀ ଲତା** (*Asparagus plumosus,* Liliaceae)- ଏହା ଏକ ପତ୍ରବାହୀ ଲତା । ସରୁ ସରୁ ପତ୍ରଗୁଡ଼ିକ ଗାଢ଼ ସବୁଜ ରଙ୍ଗର ହୋଇଥିବାରୁ ଧଳା କାନ୍ଥରେ ମଡ଼ାଇଲେ ସୁନ୍ଦର ଦିଶେ । ଲତାଗୁଡ଼ିକ ୨/୩ ମିଟର ବଢ଼ନ୍ତି । ଏହି ପ୍ରଜାତିର ଅନ୍ୟ ଏକ ଜାତି **A. sprengeri** ର ସରୁ ପତ୍ରଗୁଡ଼ିକ ଗୋଲାକାର ହୋଇଥିବାରୁ ଜାଫ୍ରି ଏବଂ କୋଠାରେ ଏହାକୁ ମଡ଼ାଯାଇ ପାରେ । ମୂଳରୁ ବାହାରୁଥିବା ଭୂସ୍ତାରୀ ଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ଶୀତଋତୁରେ ଶେଷଆଡ଼କୁ ଏଥିରେ ଫିକା ନୀଳ ଫୁଲ ପେଣ୍ଡା ପେଣ୍ଡା ହୋଇ ଫୁଟିଥାଏ । *A. racemosus* ର ଚେରକୁ ଔଷଧ ରୂପେ ବ୍ୟବହାର କରାଯାଏ ।

**ହାଡ଼ଭଙ୍ଗା** (*Vitis quandrangularis, vitaceae*)- ଏହି ଲତାର କାଣ୍ଡଗୁଡ଼ିକ ୫୦ ଫୁଟ ଉପରକୁ ମାଡ଼ିପାରନ୍ତି, ପ୍ରତ୍ୟେକ ଗଣ୍ଠିରେ ପତ୍ର ବାହାରିଥାଏ । ଶୀତଦିନରେ ଏଥିରେ ଛୋଟ ଛୋଟ ଫୁଲ ଆସେ । ଏହାର କାଣ୍ଡ ଚାରିକୋଣିଆ । ବାରଣ୍ଡାରେ ଏହାକୁ ଲଗାଯାଇ ପାରେ । ଡାଳକଲମି ଦ୍ୱାରା ନୂଆ ଗଛ ତିଆରି କରାଯାଏ ।

**ଫାଇକସ୍ ରେପେନ୍ସ** (Ficus repens, Urticaceae) ଏହି ଲତା କାନ୍ଥରେ ମଡାଇବା ପାଇଁ ଉପଯୁକ୍ତ ଅଟେ । ପ୍ରତ୍ୟେକ ଗଣ୍ଠିରୁ ଚେର ବାହାରି ପୂରା ଲତାଟି କାନ୍ଥରେ ଲାଗି ଲାଗି ବଢ଼େ । ପତ୍ରଗୁଡ଼ିକ ଗାଢ଼ ସବୁଜରଙ୍ଗ ଏବଂ ହୃତ୍‌ପିଣ୍ଡ ଆକୃତିର । ଡାଳକଲମି ଦ୍ୱାରା ଏହାର ବଂଶବିସ୍ତାର କରାଯାଏ ।

**ପେରେସ୍‌କିୟା** (*Pereskia bleo,* Cactaceae) ଏହା ଏକ କାକ୍‌ଟସ । ଏହାର ଲମ୍ୱା ଡାଳଗୁଡ଼ିକୁ ଲତାପରି ବ୍ୟବହାର କରାଯାଏ । ବର୍ଷସାରା ଏଥିରେ ଗୋଲାପି ରଙ୍ଗର ଫୁଲ ଫୁଟିଥାଏ । ଗଛସାରା କଣ୍ଟା । ଡାଳକଲମି ଦ୍ୱାରା ନୂଆ ଗଛ କରାଯାଏ ।

**ଫାଇଲୋଡେନ୍‌ଡ୍ରନ** (*Philodendron erubesuns,* Araceae)- ମନଷ୍ଟ୍ରୋ (*Monstera deliciosa*) ଏବଂ ଫାଇଲୋଡ଼େନ ଡ୍ରନ

ଲତାଗୁଡ଼ିକ ପତ୍ରବାହୀ ସୌନ୍ଦର୍ଯ୍ୟପାଇଁ ପ୍ରସିଦ୍ଧ । ସବୁଜ ରଙ୍ଗର ଗୋଲାକାର କାଣ୍ଡଗୁଡ଼ିକ କାନ୍ଥ କିମ୍ବା ଗଛଗଣ୍ଠିରେ ଶୀଘ୍ର ଶୀଘ୍ର ମାଡ଼ିପାରନ୍ତି । ପ୍ରତ୍ୟେକ ଗଣ୍ଠିରୁ ବାୟବୀୟ ଚେରମାନ ବାହାରି ଏଗୁଡ଼ିକୁ ବଢ଼ିବାରେ ସାହାଯ୍ୟ କରିଥାଏ । ଏଗୁଡ଼ିକର ପତ୍ର କଟା କଟା କିମ୍ବା ଅଖଣ୍ଡ । କାନ୍ଥରେ ଖୋପ କରି କିମ୍ବା ଗଛରେ ଏହା ମଡ଼ାଯାଇ ପାରେ । ଗାଢ଼ ସବୁଜ ରଙ୍ଗର ପତ୍ରଗୁଡ଼ିକ ଦୂରରୁ ମନୋରମ ଦେଖାଯାନ୍ତି । ଡାଳକଲମି ଦ୍ୱାରା ନୂଆ ଗଛ କରାଯାଏ ।

**ପୋଥସ୍ ବା ମନିପ୍ଲାଣ୍ଟ** (*Pothos aureus, Araceae*)- ମନିପ୍ଲାଣ୍ଟ ଲତାପରି ବଢ଼େ । ଏହାର ପତ୍ରଗୁଡ଼ିକରେ ହଳଦିଆ ଦାଗଥାଏ । ତେଣୁ ଉପରୋକ୍ତ ଶ୍ରେଣୀଠାରୁ ଏହାର ଆଦର ବେଶୀ । ଗୃହ ଆଗରେ ଛାଇ ସ୍ଥାନରେ ଏଗୁଡ଼ିକୁ ଲଗାଇଲେ ଭଲ ବଢ଼େ । ଗଛ ପୁରୁଣା ହୋଇଗଲେ ଉପର ପତ୍ର ତଳପତ୍ର ଠାରୁ ଆକାରରେ ବଡ଼ ହୁଏ । ଡାଳକୁ ଖଣ୍ଡେ ଖଣ୍ଡେ କରି କାଟି ନୂଆ ଗଛ କରାଯାଏ ।



॥ ତ୍ରୟୋଦଶ ପରିଚ୍ଛେଦ ॥

# ଋତୁଜୀବୀ ପୁଷ୍ପ

## (Seasonal Flower)

ବୃକ୍ଷ, ଲତା ଓ ଗୁଳ୍ମମାନଙ୍କ ପରି ଋତୁଜୀବୀ ପୁଷ୍ପଗୁଡ଼ିକ ବଗିଚାରେ ସୌନ୍ଦର୍ଯ୍ୟ ବୃଦ୍ଧିରେ ବେଶୀ ସାହାଯ୍ୟ କରିଥାନ୍ତି । ଭିନ୍ନ ଭିନ୍ନ ଋତୁରେ ଓ ପୃଥକ ପୃଥକ ପରିବେଶରେ ବଗିଚାକୁ ରଙ୍ଗୀନ କରିବା ପାଇଁ ଋତୁଜୀବୀ ପୁଷ୍ପଗୁଡ଼ିକର ପ୍ରୟୋଜନୀୟତା ଖୁବ୍‌ବେଶୀ । ଅନେକ ଋତୁଜୀବୀ ପୁଷ୍ପ କଟା ଫୁଲ (Cut flower) ବ୍ୟବସାୟ ପାଇଁ ଚାଷ କରାଯାଇଥାଏ । ଏହା ବ୍ୟତୀତ କେତେକ ଋତୁଜୀବୀ ପୁଷ୍ପରୁ ଅତର ସଂଗ୍ରହ କରାଯାଇଥାଏ । ଏହି ପ୍ରକାର ଉଦ୍ଭିଦଗୁଡ଼ିକ ସାଧାରଣତଃ ଏକ ବାର୍ଷିକ (annual) ଓ ଅଳ୍ପ ସଂଖ୍ୟକ ଦ୍ୱିବାର୍ଷିକ କିମ୍ବା ବହୁବାର୍ଷିକ ଅଟନ୍ତି । ଋତୁଜୀବୀ ପୁଷ୍ପମାନଙ୍କର ଜନ୍ମସ୍ଥାନ ସମ୍ବନ୍ଧରେ ପରବର୍ତ୍ତୀ ଆଲୋଚନାବେଳେ ଉଲ୍ଲେଖ କରାଯାଇଛି । ଏହି ଜାତିର ପୁଷ୍ପଗୁଡ଼ିକର ବହୁଳ ବ୍ୟବହାର ୟୁରୋପୀୟ ଉଦ୍ୟାନଗୁଡ଼ିକରେ ବହୁଳଭାବରେ ଦେଖାଯାଏ । ତେବେ ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ବିଭିନ୍ନ ପ୍ରକାର ଉଦ୍ୟାନରେ ଏହାର ବହୁଳ ବ୍ୟବହାର କରାଯାଉଛି ।

ଏକ ସମୟରେ ବହୁତ ଫୁଲ ଫୁଟି ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇବାରେ ଫ୍ଲକ୍‌ସ, ଗେଣ୍ଡୁ, ଜିନିଆ, କସ୍‌ମସ, ସାଲଭିଆ, ଆଣ୍ଟିରାଇନମ, ଡାଏନ୍ଥସ ଓ ବାଲସମ ପ୍ରଭୃତି ପ୍ରସିଦ୍ଧ । ଏହି ପ୍ରକାର ପୁଷ୍ପକୁ ଫୁଲ ପଟାଳି, କୁଣ୍ଡ, ଦୋଳାୟମାନ କୁଣ୍ଡ ଏବଂ ବାତାୟନ ପାର୍ଶ୍ୱରେ ଲଗାଯାଇଥାଏ । ପେଟୁନିଆ, ପାନ୍‌ସି, ଫ୍ଲକ୍‌ସ ଓ ଜିନିଆ ପ୍ରଭୃତିକୁ କୁଣ୍ଡରେ ଲଗାଯାଇ ପାରେ । ନାଷ୍ଟୁରସିୟମ, ଭରବିନା ଓ ସୁଇଟିପି. ପ୍ରଭୃତିକୁ ଦୋଳାୟମାନ କୁଣ୍ଡରେ ଲଗାଇବା ସୁବିଧାଜନକ । ଝରକାପାର୍ଶ୍ୱ କୁଣ୍ଡରେ ପାନ୍‌ସି, ଛୋଟ ଗେଣ୍ଡୁ ଓ କାଲେଣ୍ଡୁଲା

ପ୍ରଭୃତି ଲଗାଇଲେ ସୁନ୍ଦର ଦିଶେ । ପ୍ରଭାତଗୌରବ, ଅପରାଜିତା, କୁଞ୍ଜଲତା, ସୁଇଟିପି, ନାଷ୍ଟୁରସିୟମ୍ ପ୍ରଭୃତିକୁ ଲତା ରୂପେ ମଧ୍ୟ ଲଗାଯାଇ ପାରିବ । ରାସ୍ତାକଡ଼ରେ ବହୁଦୂର ପର୍ଯ୍ୟନ୍ତ ଲଗାଯାଇ ପାରୁଥିବା ପୁଷ୍ପଗୁଡ଼ିକ ହେଲା ଛୋଟ ଜିନିଆ, ପେଟୁନିଆ, ଫ୍ଲକ୍ସ, ଛୋଟ ମେରିଗୋଲଡ୍, ସୂର୍ଯ୍ୟମୁଖୀ ପ୍ରଭୃତି । ଏଷ୍ଟର, କାରନେସନ, କୋରିଅପସିସ, କସ୍‌ମସ, ସୁଇଟିପି. ପ୍ରଭୃତିକୁ କଟା ଫୁଲ ଚାଷ ପାଇଁ ଚାଷ କରାଯାଇ ପାରିବ । ପ୍ରସ୍ତର ଉଦ୍ୟାନଗୁଡ଼ିକରେ ପରତୁଲାକା ପାନ୍‌ସି, ଛୋଟ ଆଣ୍ଟିରାଇନମ, ଭରବିନା ପ୍ରଭୃତି ଲଗାଯିବା ଆବଶ୍ୟକ । ଛାଇ ସ୍ଥାନରେ ପାନ୍‌ସି, ସାଲଭିଆ, ଡାଇଆନ୍ଥସ, ବିଗୋନିଆ ଓ ଶୁଷ୍କ ସ୍ଥାନରେ ଭରବିନା, ପରତୁଲାକା, ନାଷ୍ଟୁରସିୟମ ଓ ପେଟୁନିଆ ପ୍ରଭୃତି ଲଗାଯାଇ ପାରେ । ବଗିଚାର ଅପରିଷ୍କୃତ ଅଞ୍ଚଳକୁ ଲୁଚାଇବା ପାଇଁ ଟିଥୋନିଆ, ବଡ଼ ଗେଣ୍ଡୁ, ଡେଙ୍ଗା ସୂର୍ଯ୍ୟମୁଖୀ, କସ୍‌ମସ ପ୍ରଭୃତି ଲଗାଯାଏ । ନିକୋଟିଆନା, ପେଟୁନିଆ, ଭରବିନା, ସୁଇଟିପି. ପ୍ରଭୃତି ବସ୍ନାଭରା ଋତୁଜୀବୀ ପୁଷ୍ପ ଅଟନ୍ତି ।

ଆମ ଦେଶର ଉଦ୍ୟାନଗୁଡ଼ିକରେ ଶୀତଦିନରେ ବେଶୀ ପରିମାଣରେ ଋତୁଜୀବୀ ପୁଷ୍ପ ଲଗାଯାଇଥାଏ । ବର୍ଷାଦିନ ଅପେକ୍ଷା ଗ୍ରୀଷ୍ମକାଳରେ କମ୍ ସଂଖ୍ୟକ ଋତୁଜୀବୀ ପୁଷ୍ପ ଲଗାଯାଏ । ପ୍ରତ୍ୟେକ ଋତୁ ପୂର୍ବରୁ ମଞ୍ଜି ସଂଗ୍ରହ କରି ଚାରା ଉଚରାଯାଏ ଓ ଠିକ୍ ସମୟରେ ଲଗାଯାଏ । ଶୀତଦିନରେ ଲଗାଯାଇଥିବା ଋତୁଜୀବୀ ପୁଷ୍ପମାନଙ୍କ ମଧରେ ଆଣ୍ଟିରାଇନମ, ଏଷ୍ଟର, ଏଜିରେଟମ୍, କାରନେସନ, କସ୍‌ମସ୍, କାଲେଣ୍ଡୁଲା, କ୍ଲାରକିଆ, ଡାଇଆନ୍ଥସ, ପେଟୁନିଆ, ଫ୍ଲକ୍ସ, ସାଲଭିଆ, ଏଲିସମ, ନିକୋଟିଆନା, ଭେରବିନା, ଲାର୍କସ୍ପର, ସୁଇଟି ପି. ପ୍ରଭୃତି ପ୍ରଧାନ । ଖରାଦିନେ ସୂର୍ଯ୍ୟମୁଖୀ, ପରତୁଲାକା, ଟିଥୋନିଆ, କୋରିଅପସିସ, ଜିନିଆ ଓ ଗିଲାରଡ଼ିଆ ପ୍ରଭୃତି ଲଗାଯାଇ ପାରେ । ବର୍ଷାଦିନରେ ଗ୍ରୀଷ୍ମ ଋତୁରେ ଲଗାଯାଉଥିବା। ଫୁଲ ସାଙ୍ଗକୁ ବାଲସମ୍ ଟୋରେନିଆ, ଗମଫ୍ରିନା, କକସ୍‌କମ୍ବ, ସିଲୋସିଆ ପ୍ରଭୃତି ଲଗାଯାଏ ।

ପ୍ରାୟ ସବୁ ଋତୁଜୀବୀ ପୁଷ୍ପର ବଂଶବିସ୍ତାର ମଞ୍ଜିଦ୍ୱାରା କରାଯାଏ । ଅଧିକାଂଶ ଋତୁଜୀବୀ ପୁଷ୍ପର ଚାରା ଉତରାଯାଇ ଗଛ ଲଗାଯାଏ; କିନ୍ତୁ ସୁଇଟି

ପି, ପ୍ରଭାତଗୌରବ, ଲୁପିନ, ନାଷ୍ଟୁରସିୟମ ପ୍ରଭୃତିର ମଞ୍ଜିକୁ ସିଧା ମାଟିରେ ପୋତାଯାଏ । ଛୋଟ ଛୋଟ ପଟାଳି, ସିଡ଼ପ୍ୟାନ (Seed pan), ପଲିଥିନ୍ ପାକେଟ୍, କାଠ ବାକ୍ସ, ମାଟିକୁଣ୍ଡ, ମସ ପ୍ରଭୃତିରେ ତଳି ଉତରାଯାଇ ପାରେ । ତଳିରେ ସାଧାରଣତଃ ମୂଳପଚା (Damping off) ରୋଗ ଲାଗେ । ତେଣୁ ମାଟିକୁ ବିଶୋଧନ କରି ତଳି ଉତରାଯିବା ଆବଶ୍ୟକ । ଶତକଡ଼ା ୨ ଭାଗ ଫାର୍ମାଲିନରେ ମାଟିକୁ ଭିଜାଇ ୪୮ ରୁ ୭୨ ଘଣ୍ଟା ଘୋଡ଼ାଇ ରଖି ଖରାରେ ଶୁଖାଇ ଦିଆଯାଏ । ଏହାପରେ ୧୦ ରୁ ୧୫ ଦିନ ପର୍ଯ୍ୟନ୍ତ ଏହି ମାଟିକୁ ଖରାରେ ଶୁଖାଇ ତାହାପରେ ମଞ୍ଜି ପକାଯାଏ । ଏହା ବ୍ୟତୀତ ମାଟିକୁ ୯୩.୫° ସେଣ୍ଟିଗ୍ରେଡ଼ରେ ୩୦ ମିନିଟ୍ ପର୍ଯ୍ୟନ୍ତ ରଖିଲେ ମାଟି ବିଶୋଧିତ ହୁଏ । ମଞ୍ଜି ଛାଡ଼ି ଛାଡ଼ି ପକାଯାଏ ଓ ଦରକାର ମୁତାବକ ପାଣି ଦିଆଯାଏ । ମଞ୍ଜିକୁ କାପଟାନ, ସେରେସାନ କିମ୍ବା ଆଗ୍ରୋସନ ଜିଏନ୍ ପ୍ରଭୃତିରେ ବିଶୋଧନ କଲେ ମଞ୍ଜିଜନିତ ରୋଗ ଆକ୍ରମଣରୁ ରକ୍ଷା ମିଳିଥାଏ । ଡାଲିଆ, ଫ୍ଲକ୍ସ, ଆଣ୍ଟିରାଇନମ ପ୍ରଭୃତି କେତେକ ଋତୁଜୀବୀ ପୁଷ୍ପର ଚାରାକୁ ଛୋଟ ଅବସ୍ଥାରୁ ଥରେ ଦୁଇଥର ରୋଇ ପରେ ଲଗାଇଲେ ସୁଫଳ ମିଳିଥାଏ ।

ଫୁଲ ପଟାଳି ଓ କୁଣ୍ଡଗୁଡ଼ିକରେ ପ୍ରଚୁର ପରିମାଣରେ ଜୈବିକ ଖତସାର ଦେବା ଆବଶ୍ୟକ । ତଳି ଲଗାଇବା ପାଇଁ ଖୁବ୍ ସକାଳ ବା ସନ୍ଧ୍ୟା ସମୟ ଭଲ । ତେବେ ସନ୍ଧ୍ୟା ସମୟରେ ତଳି ଲଗାଇବା ସବୁଠାରୁ ଭଲ । ତଳି ଲଗାଯିବାର ଦିନେ ଦୁଇଦିନ ପର୍ଯ୍ୟନ୍ତ ଏହା ଉପରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାଗଜର କୋନ ଘୋଡ଼ାଇ ଦେବା ଆବଶ୍ୟକ । ନିମ୍ନରେ ବିଭିନ୍ନ ପ୍ରକାର ଋତୁଜୀବୀ ପୁଷ୍ପମାନଙ୍କର ବର୍ଣ୍ଣନା ଦିଆଗଲା । ପ୍ରତ୍ୟେକ ଫୁଲର କିପରି ଯତ୍ନ ନେବା ଉଚିତ ତାହା ମଧ୍ୟ ଉଲ୍ଲେଖ କରାଗଲା ।

**ଜିନିଆ** (*Zinnia elegans*, Compositae) - ଜିନିଆ ଉଦ୍ୟାନର ଋତୁଜୀବୀ ପୁଷ୍ପମାନଙ୍କ ମଧ୍ୟରେ ଏକ ପ୍ରଧାନ ପୁଷ୍ପ । ଅଳ୍ପ ଯତ୍ନରେ ବର୍ଷସାରା ଏହାକୁ ବଗିଚାରେ ଲଗାଯାଇ ପାରିବ । ଆଜିକାଲି ବିଭିନ୍ନ ଉଚ୍ଚତାର ଶଙ୍କର (Hybrid) ଜିନିଆ ବଗିଚାରେ ଲଗାଯାଉଅଛି । ଏହା ଖୁବ୍ ଶୀଘ୍ର ବଢ଼େ ।




(ଚିତ୍ର-୭୫) ଜିନିଆ

କାଣ୍ଡର ଭିତର ଅଂଶ ଫମ୍ପା । ପତ୍ରଗୁଡ଼ିକ ସମପାର୍ଶ୍ୱୀ ଓ ଲୋମଶ । ଡାଳର ଅଗରେ ନୂଆକଢ଼ ଆସେ । ଫୁଲ ଫୁଟି ସାରିବା ପରେ ଦୁଇ ପଟରୁ ଡାଳ ବାହାରି ଗଛର ଆୟତନ ବଢ଼େ ଓ ଫୁଲ ଫୁଟେ । ଗଛ ପ୍ରକାରଭେଦରେ ୧୦୦ ସେ.ମି. ପର୍ଯ୍ୟନ୍ତ ବଢ଼ିପାରେ । ଶୀତଦିନ ଓ ଖରାଦିନ ଅପେକ୍ଷା ବର୍ଷାଦିନରେ ଗଛଗୁଡ଼ିକ ଉଚ୍ଚ ହୁଏ । ମଞ୍ଜିରୁ ଚାରା ଉତାରି ଗଛ ଲଗାଯାଏ । ନର୍ସରିରେ ମଞ୍ଜି ବୁଣିବାର ଦୁଇରୁ ତିନି ସପ୍ତାହ ମଧ୍ୟରେ ଚଳି ପୁଷ୍ପ ପଟାଳିରେ ଲଗାଇବା ପାଇଁ ଉପଯୁକ୍ତ ହୁଏ । ବିଭିନ୍ନ ଆକୃତି ଓ ରଙ୍ଗର ଜିନିଆ ଫୁଲ ଦେଖିବାକୁ ମିଳେ । ପୁମିଲା, ନାନା, ଲିଲିପୁଟ, ଟାମ୍ଥମ୍ବ ପ୍ରଭୃତି କେତେକ ଜିନିଆ କିସମ ବଗିଚାରେ ଆଦୃତ ହୋଇଥାଏ । ଶେଷ ଦୁଇ ପ୍ରକାର ଜିନିଆରେ ଛୋଟ ଚୋଟ ଫୁଲ ଫୁଟେ । Zinnia angustifolia ଏବଂ Zinnia mexican ଜାତି ପୂର୍ବୋକ୍ତ ଜାତିଠାରୁ ଖର୍ବକାୟ । ତେଣୁ ଏଗୁଡ଼ିକୁ ଏକାଠି ଲଗାଇଲେ କାର୍ପେଟ ଭଳି ଦିଶେ । Zinnia linearis ଛୋଟ ଛୋଟ ସେବତୀପରି ଦିଶେ ଓ ଧଳା କିମ୍ୱା କମଳାରଙ୍ଗର ଫୁଲରେ ମଣ୍ଡି ହୋଇ ବଗିଚାରେ ବହୁଦିନ ପର୍ଯ୍ୟନ୍ତ ଫୁଟେ; କିନ୍ତୁ ଏଲିଗାନସ୍

(*Z. elegance*) ଦେଖିବାକୁ ବହୁତ ସୁନ୍ଦର । ତେଣୁ ବଗିଚାରେ ଏହାର ବହୁଳ ବ୍ୟବହାର କରାଯାଏ ।

**ପାନଜି** (*Viola tricolor* Violaceae)- ଏହି ଖର୍ବକାୟ ଋତୁଜ ପୁଷ୍ପ ଫୁଲର ଗଠନ ଓ ରଙ୍ଗ ଲାଗି ଆଦୃତ ହୋଇଥାଏ । ଗଛଗୁଡ଼ିକ ୧୦ ସେ.ମି. ଉଚ୍ଚକୁ ବଢ଼ିଥାଏ ଏବଂ ଏକ ଦୀର୍ଘ ସ୍ତବକରେ ବିରାଡ଼ିମୁହଁ ଆକୃତିର ଧଳା, ହଳଦିଆ କିମ୍ବା ନୀଳରଙ୍ଗର ଫୁଲ ଫୁଟେ । ଭଲ ମାଟିରେ ନର୍ସରୀରେ ମଞ୍ଜି ବୁଣି ଚାରା ଉତାରି ନଭେମ୍ବର ମାସରେ ଏହାକୁ କୁଣ୍ଡ କିମ୍ବା ଫୁଲ ପଟାଳିରେ ଲଗାଯିବା ଉଚିତ । *Viola odorota* ଏକ ବହୁବାର୍ଷିକ ଶାକୀୟ ଉଭିଦ । ଏହାର ପୁଷ୍ପ ପାନଜି ଠାରୁ ଭିନ୍ନ । ଗଛ ମାଟିରେ ଲଟାଏ ଓ ପୁଷ୍ପଗୁଡ଼ିକ ସୁବାସଯୁକ୍ତ । *V. candensis* ରେ ଧଳା ଏବଂ *V. cornuta* ରେ ବାଇଗଣି ରଙ୍ଗର ଫୁଲ ଫୁଟେ ।

**କ୍ଲାର୍କିଆ** (*Clarkia elegans*, Onagraceae)- କ୍ଲାର୍କିଆ ଫୁଲ ଗଛ ୬୦ ସେ.ମି. ରୁ ଏକ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଶୀତଦିନରେ ଏହାକୁ ଲଗାଯାଏ । ଗଛ ଲଗାଇବା ପରେ ଫୁଲ ଫୁଟିବାକୁ ୩ ମାସ ଲାଗେ । ଗଛରେ ବେଶୀ ପାଣି ଦେବା ଅନୁଚିତ । ହାଲୁକା ମାଟିରେ କିଛି ବାଲି ଓ ପତ୍ରସାର ଦେଇ ଏହାକୁ ଲଗାଇବା ଆବଶ୍ୟକ । ଧଳା, ଗୋଲାପି, ବାଇଗଣି ଓ ବିଭିନ୍ନ ପ୍ରକାର ଲାଲରଙ୍ଗର କ୍ଲାର୍କିଆ ଦେଖିବାକୁ ମିଳେ । ସାମାନ୍ୟ ଛାଇ ସ୍ଥାନରେ କିମ୍ବା ଦୀର୍ଘ ପଟାଳିଗୁଡ଼ିକର ମଧ୍ୟଭାଗରେ ଏହାକୁ ଲଗାଯିବା ଉଚିତ ।

**ଏଲାଇସମ** (*Alyssum saxatile*, **Cruciferae**)- ଖର୍ବକାୟ ଋତୁଜ ପୁଷ୍ପମାନଙ୍କ ମଧ୍ୟରେ ଏଲଇସମ୍ ଅନ୍ୟତମ । ଏହା ୫ ରୁ ୨୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ଏହାର ମଞ୍ଜିକୁ ସିଧା ବେଡ଼ରେ ଲଗାଯାଇପାରେ କିମ୍ବା ଚାରା ଉତରାଯାଇ ଲଗାଯାଏ । ମଞ୍ଜି ଲଗାଯିବାର ଦେଢ଼ ମାସ ମଧ୍ୟରେ ଫୁଲ ଧରିଥାଏ । ହାଲୁକା ମାଟିରେ ଏହା ଭଲ ବଢ଼େ । ପ୍ରଥମ ଫୁଟିଥିବା ଫୁଲପେଣ୍ଡାଗୁଡ଼ିକୁ ଛିଣ୍ଡାଇଦେଲେ ପୁଣି ନୂଆ ଡାଳରେ ପେଣ୍ଡାପେଣ୍ଡା ଫୁଲ ଆସେ । ଧଳା, ନୀଳ ଓ ଈଷତ ହଳଦିଆ ଏଲାଇସମ୍ ଦେଖିବାକୁ ମିଳେ ।



(ଚିତ୍ର-୭୬) ଏଲାଇସମ

ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ । ଲିଟର ଡୋରିଟ୍, କୁଇନ୍, ଭାଏଲେଟ୍ କୁଇନ୍ ଓ ଡ୍ୱାଫକମାକଟ୍ ପ୍ରଭୃତି କିସମର ଏଲାଇସମ୍ ବଗିଚାରେ ଲଗାଯାଇଥାଏ ।

**ଏଗାରେଟମ୍** (*Ageratum mexicanum*, Compositae)- ଏଗାରେଟମ୍ ଶୀତଦିନେ ମଞ୍ଜିରୁ ଚାରା ଉଠରାଯାଇ ଲଗାଯାଏ । ଗଛ ୧୦ ରୁ ୩୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ ଓ ପୋକଶୁଙ୍ଘା ପରି ଦିଶେ । ଗୋଲାକାର ପତ୍ରଗୁଡ଼ିକ ଲୋମଶ ଓ ଗଛର ଅଗ୍ରଭାଗରେ ପେଣ୍ଡା ପେଣ୍ଡା ଫୁଲ ଆସେ । ଫୁଲ ହେବାକୁ ୨ ମାସ ଲାଗେ । ବାଇଗଣି, ଧଳା, ଗୋଲାପି ରଙ୍ଗର ଏଗାରେଟମ୍ ବଗିଚାରେ ଲଗାଯାଏ । ଏହାର ଉତ୍ତମ କିସମ ମଧ୍ୟରେ ଇମ୍ପେରିଆଲ ଡ୍ୱାର୍ଫବ୍ଲୁ ଏବଂ ଫ୍ଲିପି ବ୍ଲୁ ପ୍ରଧାନ ।

**ହରଗଉରା** (*Impatiens balsamina*, Balsaminaceae)- ହରଗଉରା ଏକ ପ୍ରଧାନ ବର୍ଷାଦିନିଆ ପୁଷ୍ପ । ଏହାକୁ ଶୀତଦିନେ ଏବଂ ବର୍ଷାଦିନେ ମଧ୍ୟ ଲଗାଯାଇପାରେ । ଖର୍ବକାୟ ଶଙ୍କର ଜାତିର ହରଗୌରା ବଗିଚାରେ ଲଗାଯାଏ । ଏହା ୧୫ ରୁ ୨୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ଡେଙ୍ଗା ଜାତିର ହରଗୌରାଗୁଡ଼ିକ ୪୦ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । ତଳି ଉଠାରି ଗଛ ଲଗାଯାଏ । ଗଛ ଲଗାଇବାର ୧ ମାସରୁ ୨ ମାସ ମଧ୍ୟରେ ଫୁଲ ଫୁଟେ । କାଣ୍ଡର ପାର୍ଶ୍ୱରୁ



(ଚିତ୍ର-୮୮) ହରଗଉରା

ବାହାରୁ ଥିବା ଡାଳଗୁଡ଼ିକୁ ଛିଣ୍ଡାଇଦେଲେ, ଡାଳଶୂନ୍ୟ କାଣ୍ଡରେ ଫୁଲ ଗୁଚ୍ଛା ହେଲାଭଳି ଫୁଟି ଅତ୍ୟନ୍ତ ସୁନ୍ଦର ଦେଖାଯାଏ । ବହୁଦଳାବରଣ ଏବଂ ଏକଦଳାବରଣ ବିଶିଷ୍ଟ ଧଳା, ଲାଲ, ବାଇଗଣି ରଙ୍ଗର ହରଗୌରା ଦେଖିବାକୁ ମିଳେ । ବହୁତ ପାଖୁଡ଼ା ଥିବା କ୍ୟାମେଲିଆ ଜାତିର ହରଗୌରା ବିଶେଷ ଆଦୃତ ହୋଇଥାଏ । ଗଛରେ ଫୁଲ ଫୁଟିବା ପରେ ମଞ୍ଜି ଧରେ । ଫଳ ଫାଟିବା ପୂର୍ବରୁ ମଞ୍ଜି ସଂଗ୍ରହ କରାଯାଏ । ଗୋଟିଏ ସ୍ଥାନରେ ବହୁତ ହରଗୌରା ଲଗାଇଲେ ବଗିଚାର ସୌନ୍ଦର୍ଯ୍ୟ ବଢ଼ିଥାଏ ।

**ଆଣ୍ଟିରାଇନମ୍** (*Antirrhinum majus*, Scrophulariaceae)- ମଞ୍ଜିରୁ ଚାରା ଉଠାରି ୧ ୧/୨ ମାସର ଆଣ୍ଟିରାନମ୍ ଚାରାଗୁଡ଼ିକୁ ପୁଷ୍ପ ପଟାଳିରେ ଲାଗାଯିବା ଉଚିତ । ଶୀତଦିନରେ ଶେଷ ଭାଗରୁ ଗ୍ରୀଷ୍ମ କାଳର ପ୍ରଥମ ଭାଗ ପର୍ଯ୍ୟନ୍ତ ବଗିଚାରେ ଆଣ୍ଟିରାଇନମ୍ ଫୁଟିଥାଏ । ଏହାର ଉଚ୍ଚତା ପ୍ରକାରଭେଦରେ କୋଡ଼ିଏରୁ ଶହେ କୋଡ଼ିଏ ସେ.ମି. ପର୍ଯ୍ୟନ୍ତ ହୋଇଥାଏ । ଡେଙ୍ଗା ଆଣ୍ଟିରାଇନମ୍‌ଗୁଡ଼ିକ ଦେଖିବାକୁ ସୁନ୍ଦର । ତିନି ମାସ ଭିତରେ ଗଛରେ ଫୁଲ ଆସେ । ହାଲୁକା ଓ ଉର୍ବର ମାଟିରେ ଆଣ୍ଟିରାଇନମ୍ ଭଲ ବଢ଼ିଥାଏ । ଧଳା ହଳଦିଆ, କମଳା, ଲାଲ ରଙ୍ଗର ଆଣ୍ଟିରାଇନମ୍ ଦେଖାଯାଏ । ଲମ୍ୱା ଲମ୍ୱା ଫୁଲ ପଟାଳି ବ୍ୟତୀତ ଏହାକୁ କୁଣ୍ଡରେ ଲଗାଯାଇ ପାରେ । ଏହି ଫୁଲଗୁଡ଼ିକ ଫୁଲଦାନୀ ସଜାଇବାରେ ବ୍ୟବହାର କରାଯାଏ । ତେଣୁ କଟା ପୁଷ୍ପ (cut flower) ବ୍ୟବସାୟ ଲାଗି ଏହା ଚାଷ କରାଯାଇଥାଏ । ଟେଟ୍ରାପ୍ଲଏଡ଼ ଓ ଟିପ୍ ଟିପ୍ ଜାତିର ଆଣ୍ଟିରାଇନମ୍ ବେଶୀ ସୌନ୍ଦର୍ଯ୍ୟଯୁକ୍ତ । ଗଛଗୁଡ଼ିକର ପାର୍ଶ୍ୱରୁ ବାହାରୁଥିବା ଶାଖାଗୁଡ଼ିକୁ ଭାଙ୍ଗିଦେଲେ ଗଛ ବଡ଼ ହୁଏ ଓ ବହୁଦିନ ପର୍ଯ୍ୟନ୍ତ ଫୁଲ ଫୁଟେ ।

**ତ୍ରିରଙ୍ଗୀଖଡ଼ା** (*Amaranthus tricolor*, Amarantaceae)- ତ୍ରିରଙ୍ଗୀ ଖଡ଼ାଗୁଡ଼ିକର ପତ୍ରଗୁଡ଼ିକ ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି । ମଞ୍ଜିରୁ ଚାରା ଉଠାରି ଗଛ ଲଗାଯାଏ । ଗଛ ପ୍ରକାରଭେଦରେ ୪୦ ରୁ ୧୦୦ ସେ.ମି. ଯାଏ ଉଚ୍ଚ ହୁଏ ଓ ଲଗାଯିବାର ୨ ମାସ ମଧ୍ୟରେ ପୁରୁଣା ପତ୍ର ଭିତରୁ ନୂଆ ନୂଆ ତ୍ରିରଙ୍ଗୀ ପତ୍ର ସୃଷ୍ଟି ହୁଏ । ପତ୍ରରେ ସବୁଜ ରଙ୍ଗ ସହିତ ହଳଦିଆ ଓ ବ୍ରୋଞ୍ଜ ରଙ୍ଗ ମିଶିକରି ଥାଏ । ଶେଷ ଆଡ଼କୁ ଗଛ ବେଶୀ ସୁନ୍ଦର ଦିଶେ । ସାମାନ୍ୟ ଛାଇ ପଡୁଥିବା ସ୍ଥାନରେ ଓ ଉତ୍ତମଭାବେ ଜଳ ନିଷ୍କାସିତ ହେଉଥିବା ମାଟିରେ ଏହାକୁ ଲଗାଯିବା ଉଚିତ । ଶୀତଦିନର ଶେଷ ଭାଗରୁ ଗ୍ରୀଷ୍ମକାଳର ପ୍ରଥମ ଭାଗ ପର୍ଯ୍ୟନ୍ତ ଏହା ଭଲ ବଢ଼େ । ଏହି ଖଡ଼ାକୁ କୁଣ୍ଡରେ ଲଗାଯାଇପାରେ । ଅନ୍ୟ ଏକ ପ୍ରକାର ଖଡ଼ା *A. caudatus* (Love lies bleeding) ର ଅଗ୍ରଭାଗରେ ବଡ଼ ବଡ଼ ଜଟା ଆକାରର ଲାଲ ରଙ୍ଗର ଫୁଲ ଫୁଟେ । ଏଗୁଡ଼ିକ ୧୫୦ ସେ.ମି.

ପର୍ଯ୍ୟନ୍ତ ଉଚ୍ଚ ହୁଏ । ଲମ୍ବା ଲମ୍ବା ଫୁଲ ପଟାଳିରେ ଏହାକୁ ଲଗାଇଲେ ସୁନ୍ଦର ଦିଶେ ।

**ଏଷ୍ଟର** (*Callistephus chinensis,* Compositae)- ଶୀତଦିନିଆ ଫୁଲମାନଙ୍କ ମଧ୍ୟରେ ଏଷ୍ଟର ଏକ ପ୍ରଧାନ ପୁଷ୍ପ । ଗଛଗୁଡ଼ିକ ୨୦ ରୁ ୬୦ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । ଗେଡ଼ା ଜାତିର ଏଷ୍ଟରଗୁଡ଼ିକ ସୁନ୍ଦର ଦେଖାଯାଏ । ମଞ୍ଜିରୁ ଚାରା ଉତାରି ଗଛ ଲଗାଯାଏ ଓ ୩/୪ ମାସ ମଧ୍ୟରେ



(ଚିତ୍ର-୭୭) ଏଷ୍ଟର

ଫୁଲ ଆସେ । ଉତ୍ତମରୂପେ ଜଳ ନିଷ୍କାସିତ ହେଉଥିବା ମାଟିରେ ଏଷ୍ଟର ଭଲ ବଢ଼େ । ଧଳା, ବାଇଗଣି, ଈଷତ୍ ହଳଦିଆ, ଲାଲ ପ୍ରଭୃତି ବିଭିନ୍ନ ରଙ୍ଗର ଏଷ୍ଟର ଦେଖିବାକୁ ମିଳେ । କାଲିଫର୍ଣ୍ଣିଆ ଜାତିର ଏଷ୍ଟରଗୁଡ଼ିକ ଗେଡ଼ା କିନ୍ତୁ କମେଟ ପ୍ରକାରର ଫୁଲଗୁଡ଼ିକ ବିଶେଷ ଭାବେ ସୁନ୍ଦର । ପମ୍ପନ୍, ପିଓନି ଭିକ୍ଟୋରିଆ ପ୍ରଭୃତି ଏଷ୍ଟର ଅଧିକ ଭାବେ ଆଦୃତ ହୋଇଥାଏ । ଏହାର ଫୁଲଗୁଡ଼ିକ ଗଛରେ ବେଶୀଦିନ ରହେ । ଫୁଲ ପଟାଳି, କୁଣ୍ଡ ଓ ଗୋଲାକାର ଫୁଲ ପଟାଳିରେ ଏଗୁଡ଼ିକ ଲଗାଇଲେ ବହୁତ ସୁନ୍ଦର ଦିଶେ । ଘର ସଜାଇବା ପାଇଁ ଏହି ଫୁଲର ଚାହିଦା ଥିବାରୁ ଏହାର ଚାଷ ଲାଭଜନକ ଅଟେ ।

**ଆରକ୍ଟୋଟିସ** (*Arctotis stoechadifolia*, Compositae)- ଆରକ୍ଟୋଟିସ ଶୀତଦିନେ ଲଗାଯାଇଥାଏ । ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଏଗୁଡ଼ିକ ଭଲଭାବେ ବଢ଼ିପାରନ୍ତି । ମଞ୍ଜିରୁ ଗଛ ହୁଏ ଓ ସାଢ଼େ ତିନି ମାସ ପରେ ଫୁଲ ଫୁଟେ । ଗେଡ଼ା ଜାତିର ଗଛଗୁଡ଼ିକ ୩୦ ସେ.ମି. ଓ ଢ଼େଙ୍ଗା ଜାତିର ଗଛଗୁଡ଼ିକ ୬୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ଆକ୍ରୋଟିସର ଫୁଲଗୁଡ଼ିକ ଦେଖିବାକୁ ଈଷତ ବାଇଗଣି ରଙ୍ଗର ବଡ଼ ଜେରବେରା ଭଳି । ପୁଷ୍ପଗୁଡ଼ିକ ରାତିରେ ମୁଦିହୋଇଯାଏ ଓ ସକାଳେ ଖୋଲେ ।

**ବେଲିସଢ଼େଜି** (*Bellis perenis*, Compositae)- ବେଲିସଢ଼େଜିଗୁଡ଼ିକୁ ବଗିଚାରେ ବର୍ଷସାରା ଲଗାଯାଇପାରେ । ମଞ୍ଜିରୁ ଗଛ କରାଯାଏ । ପୁରୁଣା ଗଛର ପୁଆକୁ ମଧ୍ୟ ବ୍ୟବହାର କରାଯାଇପାରେ । ଅଳ୍ପ ଆଲୁଅ ପଡୁଥିବା ସ୍ଥାନରେ ଓ ଭଲ ମାଟିରେ ଏହା ଉତ୍ତମଭାବେ ବଢ଼େ । ଅଳ୍ପ ଓ ବହୁତ ପାଖୁଡ଼ା ଥିବା ଜାତିର ଧଳା, ଗୋଲାପି, ଗାଢ଼ଲାଲ ରଙ୍ଗର ବେଲିସ୍‌ଡେଜି ଦେଖିବାକୁ ମିଳେ । ଏଗୁଡ଼ିକ ୧୫ରୁ ୨୫ ସେ.ମି. ପର୍ଯ୍ୟନ୍ତ ବଢ଼ିପାରନ୍ତି ।

**କୁନ୍ତଳପୁଷ୍ପ** (*Cacalia coccinea*, Compositae)- କୁନ୍ତଳପୁଷ୍ପ ଶୀତଦିନେ ଲଗାଯାଏ । ଗେଡ଼ା ଜାତିର ଗଛଗୁଡ଼ିକ ୨୫ ସେ.ମି. ଓ ଉଚ୍ଚା ଜାତିର ଗଛଗୁଡ଼ିକ ୪୫ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । କମଳା, ଗାଢ଼ ରଙ୍ଗର ଲାଲ, ହଳଦିଆ ଓ ଧଳା ରଙ୍ଗର କୁନ୍ତଳପୁଷ୍ପ ବଗିଚାରେ ଲଗା ଯାଇଥାଏ । ଫୁଲଗୁଡ଼ିକ ଛୋଟ ବ୍ରସପରି ଦିଶନ୍ତି ଓ ଗଛ ଲଗାଯିବାର ଦୁଇମାସ ପରେ ଗଛରେ ଫୁଲ ଆସେ । ଲମ୍ବା ଫୁଲ ପଟାଳିରେ ଏହାକୁ ଲଗାଯିବା ଉଚିତ ।

**ବ୍ରାଚିକମ୍‌ଢ଼େଜି** (Brachycome iberidifolia, Compositae)- ଶୀତଦିନେ ଏହି ଫୁଲ ଲଗାଯାଏ । ତଳିରୁ ଗଛ କରି ରୋଇବା କଷ୍ଟକର ହେଉଥିବା ହେତୁ ସିଧା ମଞ୍ଜି ଲଗାଇବା ଉଚିତ । ରାସ୍ତାର ଦୁଇ ପାଖରେ, ଅଣଓସାରିଆ କଟାଳିରେ ଏହାକୁ ଲଗାଯାଏ । ଏହା ବ୍ୟତୀତ ଛୋଟ ଛୋଟ କୁଣ୍ଡରେ ମଧ୍ୟ ଲଗାଯାଇଥାଏ । ଏହାର ଫୁଲଗୁଡ଼ିକ ତାରା ଭଳି । ଧଳା ଓ ଗୋଲାପି କିସମର ବ୍ରାଚିକମ୍‌ଢ଼େଜି ବଗିଚାରେ ବ୍ୟବହାର କରାଯାଇଥାଏ ।

**କୋରିଅପ୍‌ସିସ୍** (*Careopsis tinctoria*, Compositae)- କୋରିଅପ୍‌ସିସ୍ ବର୍ଷସାରା ବଗିଚାରେ ଲଗାଯାଇପାରେ । ଗେଡ଼ା ଜାତିର ଗଛଗୁଡ଼ିକ ୩୦ ସେ.ମି. ଓ ଡେଙ୍ଗା ଜାତିର ଗଛଗୁଡ଼ିକ ୧୦୦ ସେ.ମି. ପର୍ଯ୍ୟନ୍ତ



(ଚିତ୍ର-୬୮) କୋରିଅପ୍‌ସିସ୍

ଉଚ୍ଚକୁ ବଢ଼ିପାରନ୍ତି । ଚାରାଗଛଗୁଡ଼ିକରେ ୬ଟି ପତ୍ର ହେଲା ପରେ ତାହାକୁ ପୁଷ୍ପ ପଟାଳିରେ ରୋଇବା ଉଚିତ । ଗଛ ଲଗାଯିବାର ୩ ମାସ ପରେ ଫୁଲ ଫୁଟେ । ଛିଟ ଥିବା ହଳଦିଆ ରଙ୍ଗର କୋରିଅପ୍‌ସିସ୍ ଫୁଲ ପଟାଳିରେ ଲଗାଯାଇଥାଏ ।

**କାଲେଣ୍ଡୁଲା** (*Calendula officinalis*, Compositae)- କାଲେଣ୍ଡୁଲା ଶୀତଦିନେ ଲଗାଯାଏ । ଏହା ୩୦ ସେ.ମି. ପର୍ଯ୍ୟନ୍ତ ବଢ଼େ ଓ ଗଛ ଲଗାଯିବାର ଦୁଇମାସ ମଧ୍ୟରେ ଫୁଲ ଫୁଟିଥାଏ । ହଳଦିଆ ରଙ୍ଗଠାରୁ ଆରମ୍ଭକରି ଗାଢ଼ କମଳା ରଙ୍ଗ ପର୍ଯ୍ୟନ୍ତ ଅଛ ଓ ବହୁତ ପାଖୁଡ଼ା ଥିବା ଜାତିର

କାଲେଣ୍ଡୁଲା ଲଗାଯାଇଥାଏ । ଶୀତଦିନ ଆଗରୁ ମଞ୍ଜିରୁ ଚାରା ଉତାରି ପଟାଳିରେ ଲଗାଯାଇଥାଏ । ଗଛରେ ୩ ମାସ ପର୍ଯ୍ୟନ୍ତ ଫୁଲ ଫୁଟେ । ମଉଳା ଫୁଲଗୁଡ଼ିକ କାଟିଦେଲେ ଗଛରେ ବେଶୀଦିନ ପର୍ଯ୍ୟନ୍ତ ଫୁଲ ଫୁଟେ ।

**ଈଶ୍ୱରଜଟା** (*Celosia plumosa,* Amaranthaceae)- ଈଶ୍ୱରଜଟା ଫୁଲଗଛ ବର୍ଷର ସବୁ ସମୟରେ ବଗିଚାରେ ଲଗାଯାଇ ପାରିବ । ଗଛଗୁଡ଼ିକ ଦେଖିବାକୁ ଖଡ଼ାଗଛ ପରି ଓ ଏହା ୧ ମିଟର ଯାଏ ବଢ଼ିପାରେ । ପିରାମିଡ୍ ଆକୃତିର ଲମ୍ବା ଲମ୍ବା ବୃନ୍ତରେ ଜଟଭଳି ଫୁଲ ଫୁଟେ । ମଞ୍ଜିରୁ ଚାରା ଉତାରି ଗଛ ଲଗାଯାଏ । ଏହାର ସମଷ୍ଟିଗତ ରୋପଣ (Mass planting) ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାଏ ।

**କୁକୁଡ଼ାଚୂଳ** (*Celosia cristata,* Amaranthaceae)- କୁକୁଡ଼ାଚୂଳଗୁଡ଼ିକ ଖଡ଼ା ଜାତିର ଗଛ । ଏହାକୁ ଶୀତଦିନେ ଲଗାଯାଏ । ଗଛଗୁଡ଼ିକ ୨୦ ରୁ ୪୦ ସେ.ମି. ଯାଏ ବଢ଼ିପାରେ । ଏହାର ଫୁଲଗୁଡ଼ିକ ଦେଖିବାକୁ ଗାଢ଼ ଲାଲ୍ ରଙ୍ଗ ଓ କୁକୁଡ଼ା ଚୂଳ ଆକୃତିର । ଫୁଲପଟାଳି ଓ କୁଣ୍ଡଗୁଡ଼ିକରେ ଏଗୁଡ଼ିକୁ ଲଗାଯାଇ ପାରେ ।

**ଗୋଡ଼ିବାଣ** (*Gomphrena globosa,* Amarantaceae)- ଗୋଡ଼ିବାଣ ଫୁଲଗୁଡ଼ିକ ବଗିଚାରେ ସବୁ ସମୟରେ ଲଗାଯାଇ ପାରେ । ଏହା ୩୦ ରୁ ୪୦ ସେ.ମି. ଉଚ୍ଚ ହୁଏ । ଗଛଗୁଡ଼ିକ ବୁଦା ଆକାରରେ ବଢ଼େ ଓ ଗୋଲାପି ଧଳା ଓ ଗାଢ଼ ଧଳା ରଙ୍ଗର ଗୋଲାକାର ଫୁଲ ପେଣ୍ଡା ପେଣ୍ଡା ହୋଇ ଫୁଟେ । ଚାରା ଛୋଟଥିବା ଅବସ୍ଥାରେ ଏହାକୁ ଲଗାଯାଇଥାଏ । ଲମ୍ବା ଲମ୍ବା ଫୁଲ ପଟାଳିରେ ଓ ରାସ୍ତାର ଦୁଇ ଧାରରେ ଏହାକୁ ଲଗାଯାଇ ପାରେ ।

**ସୂର୍ଯ୍ୟମୁଖୀ** (Helianthus annus, compositae) ସୂର୍ଯ୍ୟମୁଖୀ ବର୍ଷସାରା ବଗିଚାରେ ଲଗାଯାଇ ପାରେ । ପ୍ରକାରଭେଦରେ ଗଛଗୁଡ଼ିକ ୪୦ ସେ.ମି. ରୁ ୨୦୦ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । ଚଳିଗୁଡ଼ିକ ୪ ପତ୍ର ହେବା ଅବସ୍ଥାରେ ଲଗାଯାଏ । ବିଭିନ୍ନ ଆକୃତିର ଓ ବହୁ ପାଖୁଡ଼ା ବିଶିଷ୍ଟ ଶଙ୍କର ଜାତିର ସୂର୍ଯ୍ୟମୁଖୀ ବଗିଚାରେ ଲଗାଯାଏ । ଜାପାନୀ ଜାତିର



(ଚିତ୍ର-୭୯) ସୂର୍ଯ୍ୟମୁଖୀ

ସୂର୍ଯ୍ୟମୁଖୀଗୁଡ଼ିକ ଏକ ଦଳାବରଣ ବିଶିଷ୍ଟ । କିନ୍ତୁ ଋଷ ଦେଶୀୟ ସୂର୍ଯ୍ୟମୁଖୀଗୁଡ଼ିକ ଏକ ଦଳାବରଣ ବିଶିଷ୍ଟ ହେଲେ ବି ଗଛରେ ବହୁତ ଫୁଲ ଫୁଟେ । ଗଛ ଲଗାଇବାର ୨ ମାସ ମଧ୍ୟରେ ଫୁଲ ଫୁଟେ । ସେବତୀ ଫୁଲ ଜାତିର ଡ୍ୱାଫସନ୍‌ଗୋଲ୍ଡ଼ କିସମ ପୂରାପୂରି ବହୁଦଳାବରଣ ବିଶିଷ୍ଟ । ଏହାକୁ ଶୀତଦିନେ ଓ ଖରାଦିନେ ଲଗାଯିବା ଉଚିତ । ବର୍ଷାଦିନେ ଏହାର ପାଖୁଡ଼ାରେ ପାଣି ଜମି ପଚିଯାଏ । ଫୁଲ ପଟାଳି, ରାସ୍ତାଧାର ଓ ଗୃହଠାରୁ ସୂର୍ଯ୍ୟମୁଖୀ ଲଗାଗଲେ ସୁନ୍ଦର ଦିଶେ ।

**ସୁଇଟ୍‌ପି** (*Lathyrus Odoratus,* Leguminaceae)- ସୁଇଟ୍‌ପି. ପାଶ୍ଚାତ୍ୟ ଦେଶ ଉଦ୍ୟାନମାନଙ୍କର ଏକ ପ୍ରଧାନ ପୁଷ୍ପ । ଆମ ଦେଶର

ଏହାକୁ ଶୀତଦିନେ ଲଗାଯାଏ । ଲଗାଇବା ସ୍ଥାନରେ ମଞ୍ଜି ପୋତିଦେଲେ ୧୫/୨୦ ଦିନ ଭିତରେ ଗଜା ହୁଏ । ଗଛ ଉଠିଲା ପରେ ଏହା ମାଡ଼ିବା ପାଇଁ ବାଉଁଶର ଛୋଟ ଛୋଟ ବାଡ଼ି ପୋତିବାକୁ ପଡ଼େ । ଗଛ ଧୀରେ ଧୀରେ ବଢ଼େ ଓ ତଳୁ ଉପର ଆଡ଼କୁ ଆସ୍ତେ ଆସ୍ତେ ଫୁଲ ଫୁଟେ । ସୁଇଟି-ପି ଲଗାଯିବା ସ୍ଥାନକୁ ଭଲଭାବରେ ଖୋଳି ଖତ ଦେବା ଉଚିତ । ବଗିଚାର ଶୋଭା ବଢ଼ାଇବା ଲାଗି



(ଚିତ୍ର-୮୦) ସୁଇଟି ପି.

ବିଭିନ୍ନ ରଙ୍ଗର ସୁଇଟ୍-ପି ଲଗାଯାଇଥାଏ । ଭଲକାନୋ, ମାରିନ ପ୍ରଭୃତି ସୁଇଟ୍-ପିଗୁଡ଼ିକ ଦେଖିବାକୁ ସୁନ୍ଦର । ସୁଇଟ୍-ପି ଦେଖିବାକୁ ମଟରେ ଗଛ ଭଳି; କିନ୍ତୁ ମଞ୍ଜିଗୁଡ଼ିକ ଖେସାରି ମଂଜି ଭଳି । ଗୃହର ସମ୍ମୁଖରେ ବା ଲନ୍‌ର ଚାରିପାଖେ ଏହାକୁ ଲଗାଯାଇ ପାରେ ।

**ଫ୍ଲକ୍ସ** (*Phlox drummondii,* Polomoniaceae) ଶୀତଦିନର ପ୍ରଧାନ ପୁଷ୍ପମାନଙ୍କ ମଧ୍ୟରେ ଫ୍ଲକସ ଅନ୍ୟତମ । ମଞ୍ଜିରୁ ଚାରା ଉତାରି ଗଛ ଲଗାଯାଏ । ଗଛଗୁଡ଼ିକ ୧୦ ଠାରୁ ୫ ସେ.ମି. ଉଚ୍ଚ ହୁଅନ୍ତି; କିନ୍ତୁ ଗୋଟିଏ ଗଛ ଚାରିଆଡ଼କୁ ୫୦ ସେ.ମି. ଆୟତନରେ ମାଡ଼ିପାରେ । ପ୍ରଥମାବସ୍ଥାରେ ଗଛଗୁଡ଼ିକ ଧୀରେ ଧୀରେ ବଢ଼େ । କିନ୍ତୁ ଫୁଲ ଫୁଟିବା ଆଗରୁ ଗଛ ଜୋରରେ ବଢ଼େ । ଡାଳର ଅଗରେ ପେଣ୍ଡା ପେଣ୍ଡା ଫୁଲ ଫୁଟେ । ଧଳା, ହଳଦିଆ, ଗୋଲାପି, ଲାଲ, ବାଇଗଣି, ନୀଳ ପ୍ରଭୃତି ବିଭିନ୍ନ ରଙ୍ଗର ଓ ବିଭିନ୍ନ ଆକୃତିର ପାଖୁଡ଼ାଯୁକ୍ତ ଫ୍ଲକ୍ସ ବଗିଚାରେ ଲଗାଯାଏ । ମିଶ୍ରିତ ଫୁଲ ପଟାଳିରେ ସମ୍ମୁଖରେ ଫ୍ଲକସ ଲଗାଯିବା ଉଚିତ । ଏହି ଫୁଲରେ ବେଶୀ ରୋଗ ପୋକ ଲାଗେ ନାହିଁ ଓ ଫୁଲ ବହୁତ ଦିନ ଧରି ଫୁଟେ ।

**ପିଟୁନିଆ** (*Petunia hybrida,* Solanaceae)- ପିଟୁନିଆ କମ୍ ପାଣିରେ ବଢ଼ିପାରେ । ପିଟୁନିଆର ମଞ୍ଜି ଧୂଆଁପତ୍ରର ମଞ୍ଜିପରି ଖୁବ୍ ସରୁ । ମଞ୍ଜିରୁ ଚାରା ଉତାରି ଗଛ ଲଗାଯାଏ । ପୂର୍ବ ବର୍ଷର ପିଟୁନିଆ ଲଗାଯାଇଥିବା ପଟାଳିରେ ପିଟୁନିଆ ଗଛ ଶୀତଦିନେ ମନକୁ ଉଠେ । ପିଟୁନିଆର ଦୁର୍ବଳ କାଣ୍ଡଗୁଡ଼ିକ ଲଟାଇଲାପରି ୬୦/୭୦ ସେ.ମି. ଉଚ୍ଚ ହୁଏ । ଗଛ ବଢୁଥିବା



(ଚିତ୍ର–୮୧) ପିଟୁନିଆ

ଅବସ୍ଥାରେ ଧୀରେ ଧୀରେ ଫୁଲ ଫୁଟେ । ବାଇଗଣି ଧଳା, ଗୋଲାପି ରଙ୍ଗର ପିଟୁନିଆ ବଗିଚାରେ ଲଗାଯାଏ । ପ୍ରଶସ୍ତ ଉଦ୍ୟାନରେ ଏହାର ସମଷ୍ଟିଗତ ରୋପଣ ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ । ବହୁଦଳଯୁକ୍ତ ପିଟୁନିଆ କୁଣ୍ଡରେ ଲଗାଯାଏ । ଫୁଲ ଗୁଡ଼ିକ ମଧୁର ଗନ୍ଧଯୁକ୍ତ ।

**ପପି** (*Papaver rhoeas,* Papaveraceae)- ପପି ଶୀତଦିନେ ଲଗାଯାଇଥାଏ । ଗଛଗୁଡ଼ିକ ୫୦ ରୁ ୮୦ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । ହାଲୁକା ଓ ନିରିଡ଼ା ମାଟିରେ ଚାରା ଉତାରି ଗଛ ଲଗାଯାଏ । ଲଗାଇବା ସ୍ଥାନରେ ତଳି



(ଚିତ୍ର-୮୨) ପପି

ନ ଲଗାଇ ମଞ୍ଜି ଲାଗଯାଇ ପାରିବ । ଗଛ ଲଗାଇବାର ୨ ମାସ ପରେ ଫୁଲ ଫୁଟେ । ପପିକୁ ଏକାକୀ ନ ଲଗାଇ ଅନ୍ୟ ଫୁଲ ସହିତ ମିଶାଇ ଲଗାଇଲେ ଏହାର ସୌନ୍ଦର୍ଯ୍ୟ ବଢ଼ିଥାଏ । ବହୁଦଳାବରଣବିଶିଷ୍ଟ ପପି କିସମଗୁଡ଼ିକ ଅଧିକ

ଆଦୃତ ହୋଇଥାଏ । ଲାଲ, କମଳା, ଗୋଲାପି, ବାଇଗଣି, ଧଳା ଓ ଗାଢ଼ ଲାଲ ପଫି କିସମ ଦେଖାଯାଏ ।

**ହଲିହକ୍** (*Althea rosea,* Malvaceae)- ହଲିହକ୍ ବର୍ଷସାରା ଲଗାଯାଇପାରେ । ଗଛଗୁଡ଼ିକ ଜାତିଭେଦରେ ୬୦ ରୁ ୨୦୦ ସେ.ମି. ପର୍ଯ୍ୟନ୍ତ ବଢ଼ିଥାନ୍ତି ଗଛ ଲଗାଇବାର ୩/୪ ମାସ ମଧ୍ୟରେ ଫୁଲ ଫୁଟେ । ଧଳା, ବାଇଗଣି, ଲାଲ ରଙ୍ଗର ହଲିହକ୍ ଦେଖାଯାଏ । ବଗିଚା ବ୍ୟତୀତ କୁଣ୍ଡରେ ଓ ମିଶ୍ରିତ ଫୁଲ ପଟାଳିରେ ଏହାକୁ ଲଗାଯାଇ ପାରିବ ।

**ଗିଲାର୍ଡିଆ** (*Gaillardia pulchella,* Compositae)- ଗିଲାର୍ଡିଆ ବର୍ଷସାରା ଯେ କୌଣସି ମାଟିରେ ଲଗାଯାଇପାରେ । ହଳଦିଆ ଓ ଲାଲ ଛିଟା ଥିବାର ଦୁଇ ପ୍ରକାର ଗିଲାର୍ଡିଆ ଦେଖାଯାଏ । ଗଛ ଲଗାଇବାର ୨ ମାସ ପରେ ଫୁଲ ଆସେ । ଗଛଗୁଡ଼ିକ ୨୦ ରୁ ୩୦ ସେ.ମି. ଉଚ୍ଚକୁ ବଢ଼ିଥାନ୍ତି । ଏହା ଫୁଲ ପଟାଳିରେ ୮/୯ ମାସ ପର୍ଯ୍ୟନ୍ତ ରହିପାରେ । କୁଣ୍ଡ ଓ ଲମ୍ବା ଫୁଲ କଟାଳିରେ ଏହାକୁ ଲଗାଯିବା ଉଚିତ । ଗିଲାର୍ଡିଆ ଫୁଲକୁ କଟା ଫୁଲରୂପେ ବ୍ୟବହାର କରାଯାଇପାରେ ।

**କସମସ** (*Cosmos bipinnatus,* Compositae)- ଡେଙ୍ଗା ଜାତିର କସମସ୍‌ଗୁଡ଼ିକ ଶୀତଦିନେ ଓ ଗେଡ଼ାଜାତୀୟ କସ୍‌ମସ୍‌ଗୁଡ଼ିକ ବର୍ଷସାରା ଲଗାଯାଏ । ଗଛର ଉଚ୍ଚତା ୬୦ ରୁ ୧୫୦ ସେ.ମି. ପର୍ଯ୍ୟନ୍ତ ହୁଏ । ଏହାର ପତ୍ର ଦେଖିବାକୁ ଧଣିଆ ପତ୍ରପରି ପକ୍ଷଳ । ଫୁଲଗୁଡ଼ିକ ଡେଙ୍ଗି ଫୁଲପରି । ବଗିଚାରେ ବାଇଗଣୀ, ଗୋଲାପି, ଧଳା ଓ ଲାଲ କିସମର ଦେଖାଯାଏ । ମଞ୍ଜି ଲଗାଇ ଗଛ କରାଯାଏ । ଏହା ଅପେକ୍ଷାକୃତ ଅଧିକ ଜଳ ଆବଶ୍ୟକ କରିଥାଏ । ପ୍ରଶସ୍ତ ଉଦ୍ୟାନ, ଗୃହ ଓ ରାସ୍ତାଠାରୁ ଦୂରରେ ଏହାର କ୍ରମାଗତ ରୋପଣ ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ ।

**ଡେଲଫିନିଅମ୍** (*Delphinium ajacis,* Ranunculaceae)- ଡେଲିଫିନିଅମର ଫୁଲଗୁଡ଼ିକ ଏକ ଲମ୍ବା ବୃନ୍ତରେ ଆସେ । ବାଇଗଣି ଓ ନୀଳ ରଙ୍ଗର ଡେଲଫିନିଅମ୍ ଦେଖିବାକୁ ମିଳେ । ସେପ୍‌ଟେମ୍ବର ମାସରେ ଏହାକୁ

ଲଗାଯିବା ଉଚିତ । ଚାଇନା ଟାଇପ ଡେଲଫିନିଅମ ୩୦ ସେ.ମି. ଉଚ୍ଚ ହୁଏ ଓ ଗଛ ଲଗାଇବାର ୩/୪ ମାସ ପରେ ଫୁଲ ଫୁଟେ । ରାସ୍ତାର ଦୁଇ ଧାରରେ ବା ଲନର ଚାରିପାଖରେ ଏହାକୁ ଲଗାଯିବା ଉଚିତ ।

**ଏଞ୍ଜେଲେନିଆ** (*Angilonia grandiflora*, Scrophulariaceae)- ଏହା ଏକ ବହୁବାର୍ଷିକ ଫୁଲ ଗଛ । କୁଣ୍ଡ ଓ ଫୁଲ ପଟାଳିରେ ଏହାକୁ ଲଗାଯାଇ ପାରେ । ଗଛଗୁଡ଼ିକର ଅଗ୍ରଭାଗରେ ଲମ୍ବା ସ୍ତବକରେ ସାମାନ୍ୟ ବାସ୍ନାଯୁକ୍ତ ଫୁଲ ଫୁଟେ । ବାଇଗଣି, ଧଳା ଓ ନୀଳ ଜାତିର ଏଞ୍ଜିଲେନିଆ ଗଛ ଦେଖାଯାଏ । ଗଛରେ ବର୍ଷସାରା ଫୁଲ ଆସେ । ଡାଳରୁ କଲମି ନୂଆ ଗଛ କରାଯାଏ ।

**ସୁଇଟ ସୁଲତାନ** (*Centaurea moschata*, Compositae)- ସୁଇଟ୍ ସୁଲତାନ ୫୦ ରୁ ୬୦ ସେ.ମି. ପର୍ଯ୍ୟନ୍ତ ବଢ଼େ ଗଛର ଅଗ୍ରଭାଗରେ ଏକ ଗୋଲାକାର ପିଣ୍ଡରେ ସରୁ ସରୁ ପାଖୁଡ଼ାଯୁକ୍ତ ଫୁଲ ଫୁଟେ । ଧଳା, ଲାଲ, ବାଇଗଣି, ହଳଦିଆ ରଙ୍ଗର ସୁଇଟ୍ ସୁଲତାନ ଦେଖାଯାଏ । ଉର୍ବର ଓ ନିଗିଡ଼ା ମାଟିରେ ଚାରା ଉତାରି ଗଛ ଲଗାଯାଏ । ତିନିମାସ ପରେ ଗଛରେ ଫୁଲ ଆସେ । ଶୀତଦିନେ ଲମ୍ବା ଫୁଲ ପଟାଳି କିମ୍ବା କୁଣ୍ଡରେ ଏହାକୁ ଲଗାଯାଇଥାଏ ।

**ସୁଇଟକର୍ଣ୍ଣ** (*Centaurea cyanus*, Compositae)- ସୁଇଟକର୍ଣ୍ଣ ପୁଷ୍ପଗୁଡ଼ିକ ଦେଖିବାକୁ ସୁଇଟ୍ ସୁଲତାନ ପରି । ଶୀତଦିନରେ ଏହାର ଫୁଲ ଲମ୍ବା ଡାଳର ଅଗ୍ରଭାଗରେ ଫୁଟେ । ଫୁଲ ଫୁଟିବାପାଇଁ ୩/୪ ମାସ ଲଗେ । ନୀଳ, ଗୋଲାପି, ଧଳା, ବାଇଗଣି ରଙ୍ଗର ସୁଇଟକର୍ଣ୍ଣ ପୁଷ୍ପ ବଗିଚାରେ ଲଗାଯାଇଥାଏ । କୁଣ୍ଡରେ ଓ ପଟାଳିରେ ଏହାକୁ ଲଗାଯାଇପାରେ । ଏହା ବଢ଼ିବା ସମୟରେ ଅଳ୍ପ ପାଣି ଦରକାର କରେ ।

**ଋତୁଜ ସେବତୀ** (*Chrysanthemum coronarium*, Compositae)- ଋତୁଜ ସେବତୀଗୁଡ଼ିକ ଶୀତଦିନେ ଲଗାଯାଏ । ଏହାର ଗଛଗୁଡ଼ିକ ୪୦/୫୦ ସେ.ମି. ଉଚ୍ଚ ଓ ଗଛର ଅଗ୍ରଭାଗରେ ଡେଜିଭଳି ହଳଦିଆ, ଧଳା, କମଳା ରଙ୍ଗର ଫୁଲ ଫୁଟେ । ଏହାକୁ ଅନ୍ୟ ଫୁଲ ସହିତ ମିଶାଇ ଲଗାଇବା ଉଚିତ ।

**ସାଲଭିଆ** (*Salvia splendens,* Labiateae)- ସାଲଭିଆ ଶୀତଦିନେ ଓ ଖରାଦିନେ ଲଗାଯାଏ । କିସମ ଅନୁସାରେ ଗଛଗୁଡ଼ିକ ୧୫ ସେ.ମି.ରୁ ୧୨୦ ସେ.ମି. ଉଚ୍ଚ ହୁଏ । ଗଛ ଲଗାଇବାର ୪ ମାସ ପରେ ଫୁଲ ଆସେ । ହାଲୁକା ଓ ଉର୍ବର ମାଟିରେ ମଞ୍ଜିରୁ ଚାରା ଉତାରି ଗଛ ଲଗାଯିବା ଉଚିତ । ଏହାକୁ ଗୋଟିଏ ସ୍ଥାନରେ ଲମ୍ବା ଫୁଲ ପଟାଳି କରି ଲଗାଇଲେ ସୁନ୍ଦର ଦିଶେ । ବାଇଗଣି, ଲାଲ, ଗୋଲାପି, ଗାଢ଼ଲାଲ, ଧଳା ଓ ବିଭିନ୍ନ ମିଶାରଙ୍ଗର ସାଲଭିଆ ଦେଖାଯାଏ ।

**ଟିଥୋନିଆ** (*Tithonia speciosa,* Compositae)- ଟିଥୋନିଆର ଗଛଗୁଡ଼ିକ ସୂର୍ଯ୍ୟମୁଖୀ ଗଛପରି ଓ ଫୁଲଗୁଡ଼ିକ ଦେଖିବାକୁ ଲାଲ ସୂର୍ଯ୍ୟମୁଖୀ ପରି । ଗଛଗୁଡ଼ିକ ୨ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି ଓ ଲଗାଇବାର ତିନିମାସ ପରେ ଗଛରେ ଫୁଲ ଆସେ । ଅତି ସହଜରେ ଓ ସବୁ ସ୍ଥାନରେ ଏହାର ତଳି ବା ମଞ୍ଜି ଲଗାଯାଇପାରେ । ଗୋଲାକାର ଫୁଲ ପଟାଳିଗୁଡ଼ିକରେ ଏହାକୁ ଲଗାଯିବା ଉଚିତ । ଟିଥୋନିଆ କମ୍ ପାଣିରେ ଲଗାଯାଇପାରେ । ଏହାର ଫୁଲଗୁଡ଼ିକୁ କଟା ଫୁଲରୂପେ ବ୍ୟବହାର କରାଯାଇପାରିବ ।

**ଭର୍ବିନା** (*Verbena sps.* Verbenaceae)- ଏକ ବର୍ଷଠାରୁ ଆରମ୍ଭକରି ବହୁ ବର୍ଷ ପର୍ଯ୍ୟନ୍ତ ଭର୍ବିନା ଗଛ ବଗିଚାରେ ଲଗାଯାଇପାରେ । ମଞ୍ଜିଗୁଡ଼ିକୁ କୁଣ୍ଡରେ, ଫୁଲ ପଟାଳିରେ, ପ୍ରବେଶ ଦ୍ୱାରରେ ଦୁଇ ପାର୍ଶ୍ୱରେ ଥିବା କୁଣ୍ଡରେ ଓ ଦୋଳାୟମାନ କୁଣ୍ଡ ଗୁଡ଼ିକରେ ଲଗାଯାଇଥାଏ । *V. encelioides* ଏକ ମିଟର ଉଚ୍ଚ ହୁଏ । ଏଥିରେ ଏକଦଳାବରଣ ବିଶିଷ୍ଟ ହଳଦିଆ ଫୁଲ ଫୁଟେ । ଏହାକୁ ବର୍ଷସାରା ଲଗାଯାଇପାରେ । ଏଥିରେ ୨ ମାସପରେ ଫୁଲ ଫୁଟେ । V. hybrida ୩୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ୩/୪ ମାସ ପରେ ଏଥିରେ ଫୁଲ ଫୁଟେ । ଧଳା, ଗୋଲାପି, ଲାଲ ଛିଟଥିବା ଅନେକ ରଙ୍ଗର ଭର୍ବିନା ଦେଖାଯାଏ । ଗଛଗୁଡ଼ିକ ଚାରିଆଡ଼କୁ ଲଟାଉଥିବାରୁ ଦୋଳାୟମାନ କୁଣ୍ଡଗୁଡ଼ିକରେ ଏହାକୁ ଲଗାଯାଇପାରେ । ମନଷ୍ଟର ଓ ଅରିକୁଲା ଏହାର ଦୁଇଟି ଭଲ କିସମ । *V. perenis* ଏକ ବହୁବାର୍ଷିକ ଭର୍ବିନା । ଏଥିରେ ଧଳା, ବାଇଗଣି,

ବାଇଗଣି ମିଶା ଲାଲରଙ୍ଗର ଫୁଲ ଫୁଟିଥାଏ । ଗଛଗୁଡ଼ିକ ଚାରିଆଡ଼କୁ ଲଟେଇକରି ମାଡ଼େ । ତେଣୁ ଗେଟ ପାର୍ଶ୍ୱରେ ଥିବା ଉଚ୍ଚ କୁଣ୍ଡ ଏବଂ ଝରକା ପାର୍ଶ୍ୱରେ ବାକ୍ସଗୁଡ଼ିକରେ ଏହାକୁ ଲଗାଯାଇପାରେ । ଡାଳରୁ ନୂଆ ଗଛ କରାଯାଏ ।

**ଟୋରିନିଆ** (*Torenia fourioieri*, Scrophulariaceae) - ଟୋରିନିଆ ବର୍ଷସାରା ଲଗାଯାଇପାରେ । ଫୁଲ ପଟାଳିରେ ଏଗୁଡ଼ିକର ମଞ୍ଜି ସିଧା ବୁଣାଯାଏ । ଗଛ ଉଠି ସାରିଲା ପରେ ୧୬ ସେ.ମି. ବ୍ୟବଧାନରେ ଗଛ ରଖି ଅଧିକା ଗଛକୁ ଉପାଡ଼ି ଦିଆଯାଏ । ଗଛ ବୁଦା ଆକାରରେ ବଢ଼େ ଓ ଫୁଲ ଫୁଟି ସୁନ୍ଦର ଦିଶେ । ଦେଢ଼ ମାସରୁ ଦୁଇ ମାସ ଭିତରେ ଗଛରେ ଫୁଲ ଫୁଟେ । ଫୁଲଗୁଡ଼ିକ ଦେଖିବାକୁ ଆଣ୍ଟିରାଇନମ୍ ଫୁଲ ପରି । ବାଇଗଣି ଓ ଧଳା ରଙ୍ଗର ଟୋରେନିଆ ବଗିଚାରେ ଲଗାଯାଏ । କୁଣ୍ଡରେ ଓ ଫୁଲ ପଟାଳିରେ ଏହାକୁ ଲଗାଯାଏ । କଟା ଫୁଲରୂପେ ଏହାର ଫୁଲକୁ ବ୍ୟବହାର କରାଯାଇଥାଏ ।

**ସୁଇଟ୍ ଉଇଲିୟମ୍** (*Dianthus barbatus*, Caryophyllaceae)- ଏହା ସୁଇଟି ଉଇଲିୟମ, ଡାଇଆନ୍ଥସ୍ ଜାତି ଅନ୍ତର୍ଗତ । ଗଛଗୁଡ଼ିକ ଦେଖିବାକୁ ଛୋଟ ମକା ଗଛ ପରି ଓ ୧୫ ରୁ ୨୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ମଞ୍ଜିରୁ ଚାରା ଉଠାରି ଗଛ ଲଗାଯାଏ । ପାର୍ବତ୍ୟ ଅଞ୍ଚଳରେ ଏହା ବର୍ଷସାରା ଲଗାଯାଇପାରେ କିନ୍ତୁ ଏହାର barbato-chinensis ଜାତି ସମତଳ ଅଞ୍ଚଳରେ ଶୀତଦିନେ ଲଗାଯାଏ । ମାଟିରେ କିଛି ଚୂନ ଦେଇ ସୁଇଟ ଉଇଲିୟମ ଲଗାଯିବା ଉଚିତ । ଏହାର ଗଛ ଅଗରେ ପେନ୍ଥା ପେନ୍ଥା ହୋଇ ପ୍ରଜାପତି ପରି ରଙ୍ଗ ବେରଙ୍ଗ ଫୁଲ ଆସେ । ବଗିଚାର ଉନ୍ମୁକ୍ତ ଅଂଶଗୁଡ଼ିକରେ ଓ କୁଣ୍ଡରେ ଏହାକୁ ଲଗାଯିବା ଉଚିତ ।

**ଷ୍ଟକ୍** (*Mathiola incana*, Cruciferae)- ଏକବାର୍ଷିକ, ଦ୍ୱିବାର୍ଷିକ, ବହୁବାର୍ଷିକ ଷ୍ଟକ୍ ବଗିଚାରେ ଲଗାଯାଏ । ଶୀତଦିନେ ଏକ ଋତୁଜ ପୁଷ୍ପରୂପେ ଏକବାର୍ଷିକ ଷ୍ଟକଗୁଡ଼ିକ ସମତଳ ଅଞ୍ଚଳରେ ଲଗାଯାଏ । ସମ୍ପୂର୍ଣ୍ଣରୂପେ ନିଗିଡ଼ା ମାଟିରେ ଏହା ବଢ଼େ ଓ ଛାଇ ପଡୁଥିବା ଅଞ୍ଚଳରେ ଏହାକୁ ଲଗାଯିବା ଉଚିତ ।

ଗଛଗୁଡ଼ିକ ୩୦୦ ରୁ ୪୫୦ ସେ.ମି. ଯାଏଁ ବଢ଼େ ଓ ୪/୫ ମାସରେ ଫୁଲ ଧରେ । ଆଗ ଗଜା ହୋଇଥିବା ଗଛରେ ବହୁ ଦଳାବରଣଯୁକ୍ତ ଫୁଲ ଆସେ ।

**ନିକୋଟିଆନା** (*Nicotiana alata,* Solanaceae)- ନିକୋଟିଆନା ତମାଖୁଜାତୀୟ ଉଦ୍ଭିଦ । ଗଛଗୁଡ଼ିକ ତମାଖୁ ଗଛପରି କିନ୍ତୁ; ଏହାର ଅଗ୍ରଭାଗରେ ପେଣ୍ଡା ପେଣ୍ଡା ହୋଇ ଫନେଲ ଆକୃତିର ଧଳା, ଗୋଲାପି



(ଚିତ୍ର-୮୩) ନିକୋଟିଆନା

ଓ ଲାଲ ରଙ୍ଗର ଫୁଲ ଫୁଟେ । ଫୁଲଗୁଡ଼ିକ ସାମାନ୍ୟ ସୁଗନ୍ଧଯୁକ୍ତ । ହାଲୁକା ମାଟିରେ ଶୀତଦିନେ ଏହାକୁ ଲଗାଯାଇପାରେ । ଲମ୍ବା ଫୁଲ ପଟାଳି କିମ୍ବା ଗୋଲାକାର ଫୁଲ ପଟାଳିରେ ବହୁତ ଗଛ ଏକାଠି ଲଗାଇଲେ ସୁନ୍ଦର ଦିଶେ ।

**ପୋର୍ଚ୍ୟୁଲେକା** (*Portulaca grandiflora*, Portulacaceae) - ଏହାକୁ ଟେବୁଲ ଗୋଲାପ ବୋଲି କୁହାଯାଏ । କାରଣ ଫୁଲଗୁଡ଼ିକ ଛୋଟିଆ ଗୋଲାପ ଫୁଲପରି ଦିଶେ । ଶଙ୍କର ଜାତୀୟ ପୋର୍ଚ୍ୟୁଲେକାଗୁଡ଼ିକୁ ବର୍ଷସାରା ଲଗାଯାଇଥାଏ । ବାଲିଆ ମାଟିରେ ଏହା ଭଲ ବଢ଼େ । ଡାଳକଲମି ଓ ମଂଞ୍ଜିରୁ ନୂଆଗଛ କରାଯାଏ । ବାଂରଣ୍ଡା, ଝରକା ଓ ଗେଟ୍‌ର ବକ୍ସଗୁଡ଼ିକରେ ଏହାକୁ ଲଗାଯିବା ଉଚିତ । ଏହା ବ୍ୟତୀତ ଉଚ୍ଚସ୍ଥାନରେ ଫୁଲ ପଟାଳିଗୁଡ଼ିକରେ ଏହାକୁ ଲଗାଯାଇପାରେ । ପୋର୍ଚ୍ୟୁଲେକା ଗଛରେ ସକାଳେ ଫୁଲ ଫୁଟି ମଧ୍ୟାହ୍ନ ବେଳକୁ ମଉଳିଯାଏ । ଆଜିକାଲି ଅନେକ ହାଇବ୍ରିଡ୍ କିସମ ଦେଖାଗଲାଣି ।

**ନାଷ୍ଟ୍ରସିୟମ** (*Tropaeolum* sps. Tropaeolaceae) - ନାଷ୍ଟ୍ରିସିୟମ ଗଛଗୁଡ଼ିକ ଲତାପରି ମାଡ଼େ । ଶୀତଦିନେ ପଟାଳିରେ ମଂଞ୍ଜି ପୋତି ଗଛ କରାଯାଏ । ଗଛଗୁଡ଼ିକର ପତ୍ର ଗୋଲାକାର ଓ ଏହା ୧୫ ରୁ ୨୨ ସେ.ମି. ଉଚ୍ଚକୁ ବଢ଼େ । ମଞ୍ଜି ଲଗାଯିବାର ଦୁଇମାସ ପରେ ପ୍ରକାରଭେଦରେ ଗଛରେ ହଳଦିଆ, ଧଳା ଓ କମଳା ରଙ୍ଗର ଫୁଲ ଫୁଟେ । ଏକଦଳାବରଣ ଓ ବହୁଦଳାବରଣ ବିଶିଷ୍ଟ ନାଷ୍ଟ୍ରସିୟମ୍ ଦେଖାଯାଇଥାଏ । T. minor ଗଛଗୁଡ଼ିକ ଖର୍ବକାୟ କିନ୍ତୁ T.majus ର ଗଛଗୁଡ଼ିକ ସାମାନ୍ୟ ଡେଙ୍ଗା ଓ ବେଶୀ ଲଟାଏ । ଛାଇ ସ୍ଥାନରେ ଏଗୁଡ଼ିକ ଭଲ ବଢ଼େ ।

**କୋଚିଆ** (*Kochia trichophylla*, Chenopodiaceae) - କୋଚିଆ ଖରାଦିନେ ଲଗାଯାଇଥାଏ । ଏହାର ପତ୍ରଗୁଡ଼ିକ ସବୁଜ ଏବଂ ସୁନ୍ଦର । ଗଛ ବଡ଼ ହୋଇଗଲେ ଗୋଟିଏ ଛୋଟ ଝୁଜାଗଛ ପରି ଦିଶେ । ଗଛଗୁଡ଼ିକ ୩୦ ସେ.ମି. ପର୍ଯ୍ୟନ୍ତ ବଢ଼େ ଓ ଏଥିରେ ବାଇଗଣି ରଙ୍ଗର ଫୁଲ ଫୁଟେ; କିନ୍ତୁ ସେଗୁଡ଼ିକ ଗଛର ସୌନ୍ଦର୍ଯ୍ୟ ବଢ଼ାଇ ନ ଥାନ୍ତି । କୁଣ୍ଡ କିମ୍ବା ରାସ୍ତା ଧାରରେ ଧାଡ଼ି ଧାଡ଼ି କରି ଏହାକୁ ଲଗାଯାଇପାରେ । ଗଛରେ ସରୁ ସରୁ ପତ୍ର ଗୁଡ଼ିକ



(ଚିତ୍ର-୮୪) ନାଷ୍ଟ୍ରିସିୟମ

ଏକାଠି କଳସ ଆକୃତି ଭଳି ହେଉଥିବାରୁ କୁଣ୍ଡରେ ଏହାକୁ ଲଗାଇ ବଗିଚାର ରାସ୍ତାଧାର, ବାରଣ୍ଡା ପ୍ରଭୃତିରେ ସଜାଯାଏ ।

**ରୁଡ୍‌ବେକିଆ** (Rudbeckia bicolor, compositae)- ରୁଡ଼୍‌ବେକିଆ ଗଛଗୁଡ଼ିକ ଦେଖିବାକୁ ଛୋଟ ଛୋଟ ଜେରବେରା ଗଛ ପରି ଓ କାଣ୍ଡ ଶୂନ୍ୟ । ପତ୍ରଗୁଡ଼ିକ କଟା ଓ ଘନ ସବୁଜରଙ୍ଗ । ବର୍ଷକର ପୁରୁଣା ଗଛରେ ଶୀତଦିନ ଆରମ୍ଭରେ ୧୫ ସେ.ମି. ଲମ୍ବାର ଏକ ଡେମ୍ଫ ବାହାରି ଗାଢ଼ ହଳଦିଆ ରଙ୍ଗର ଫୁଲ ଫୁଟେ । ଫୁଲଗୁଡ଼ିକ ବହୁଦିନ ରହେ ଓ ଖୁବ୍ ସୁନ୍ଦର ଦିଶେ । ପୁରୁଣା ଗଛରୁ ପୁଆ ସଂଗ୍ରହ କରି ନୂଆଗଛ ଲଗାଯାଏ । ରୁଡ଼୍‌ବେକିଆ ଗଛଗୁଡ଼ିକ ବହୁବାର୍ଷିକ, କିନ୍ତୁ ଏହାର ଅନ୍ୟ ଏକ ଜାତି *R. bicolor superba* ଏକବାର୍ଷିକ ଉଦ୍ଭିଦ ଅଟେ । କୁଣ୍ଡରେ ଓ ବାକ୍ସଗୁଡ଼ିକରେ ଏଗୁଡ଼ିକୁ ଲଗାଯିବା ଉଚିତ । ରୁଡ୍‌ବେକିଆ ଫୁଲ କଟା ଫୁଲ ପାଇଁ ବିଶେଷ ଆଦୃତ ହୋଇଥାଏ ।

**ବୁଢ଼ିଆଣୀ ଫୁଲ** (*Cleome* spinosa, Capparidaceae)- ବୁଢ଼ିଆଣୀ ଫୁଲଗଛଗୁଡ଼ିକ ଦେଖିବାକୁ ଅଣଓସାରିଆ ଗଛ ପରି । ଏଗୁଡ଼ିକ ୧ ୧/୨ ମିଟର ଉଚ୍ଚ ହୁଏ ଓ ଗଛରେ ଶୀତଦିନେ ଫୁଲ ଆସେ । ଏହାକୁ ବର୍ଷାଦିନେ ମଧ ଲଗାଯାଇ ପାରେ । ମଞ୍ଜିରୁ ସିଧା ପଟାଳିରେ ଲଗାଯାଏ କିମ୍ବା ଚାରା ଉତାରି ଲଗାଯାଏ । ଫୁଲଗୁଡ଼ିକର ରଙ୍ଗ ଗୋଲାପି ଓ ଧଳା । ଏଗୁଡ଼ିକ ମିଶ୍ରିତ ଫୁଲ ପଟାଳିରେ କିମ୍ବା ଲମ୍ବା ଫୁଲ ପଟାଳିରେ ଲଗାଯାଇଥାଏ ।

**ଡାଇଆନ୍ଥସ୍** (*Dianthus, chinensis,* Caryophyllaceae)- ଡାଇଆନ୍ଥସ୍ ଶୀତଋତୁର ଏକ ପ୍ରଧାନ ପୁଷ୍ପ । ବିଭିନ୍ନ ରଙ୍ଗ ଓ ଆକୃତିର ପାଖୁଡ଼ା ବିଶିଷ୍ଟ ଡାଇଆନ୍ଥସ୍ ବଗିଚାର ରଙ୍ଗସଜ୍ଜାରେ ବିଶେଷ ସାହାଯ୍ୟ କରିଥାଏ । ଗଛଗୁଡ଼ିକ ୧୫ ରୁ ୩୦ ସେ.ମି. ଭିତରେ ବଢ଼ିଥାନ୍ତି । ସାମାନ୍ୟ ଅମ୍ଳତା ଥିବା ମାଟିରେ ମଞ୍ଜିରୁ ଚାରା ଉତାରି ଗଛ ଲଗାଯାଏ । ଗଛ ଲଗାଇବାର ୩ ମାସ୍ ପରେ ଫୁଲ ଆସେ । ଗଛଗୁଡ଼ିକ ସାଧାରଣତଃ ଦ୍ୱିବାର୍ଷିକ । ଶୀତଦିନ ଶେଷରେ ପୁରୁଣା ଡାଳଗୁଡ଼ିକ କାଟିଦେଲେ ଦ୍ୱିତୀୟ ମୁଣ୍ଡ ଫୁଲ ଆସେ । ଡାଇଆନ୍ଥସ୍‌ରେ



**(ଚିତ୍ର-୮୫) ଡାଇଆନ୍ଥସ୍**

ସବୁପ୍ରକାର ରଙ୍ଗ ଦେଖିବାକୁ ମିଳେ । କୁଣ୍ଡ, ଫୁଲ ପଟାଳି, ମିଶ୍ରିତ ପଟାଳି ପ୍ରଭୃତିରେ ଏହାକୁ ଲଗାଯାଇପାରେ ।

**କାର୍ଣ୍ଣେସନ୍** (***Dianthus caryophyllous*, Caryophyllaceae**)- ପାଶ୍ଚାତ୍ୟ ଦେଶମାନଙ୍କରେ କାର୍ଣ୍ଣେସନକୁ ଏକ ପ୍ରଧାନ ପୁଷ୍ପରୂପେ ଗ୍ରହଣ କରାଯାଇଅଛି । ଆମ ଦେଶର କ୍ଷେତ୍ରମଣ୍ଡଳୀୟ ଅଞ୍ଚଳରେ ଏଗୁଡ଼ିକ ଭଲ ବଢ଼ିଥାଏ । ଗଛଗୁଡ଼ିକ ୨୦ ରୁ ୬୦ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । ଫୁଲଗୁଡ଼ିକ ଦେଖିବାକୁ ଗୋଲାପ ଫୁଲପରି, କିନ୍ତୁ କପଭଳି ଏକ ବୃନ୍ତିରେ ପାଖୁଡ଼ାର ନିମ୍ନାଂଶଗୁଡ଼ିକ ସଜା ହୋଇ ରହିଥାଏ । ଗଛଗୁଡ଼ିକ ବହୁବାର୍ଷିକ ପରି ବଢ଼ିଥାନ୍ତି । ପୁରୁଣା ଗଛରୁ ଡାଳ ସଂଗ୍ରହ କରି ଗଛ ଲଗାଯାଏ କିମ୍ବା ମଞ୍ଜିରୁ ଗଛ କରାଯାଏ । ଫୁଲ ପଟାଳି ଅପେକ୍ଷା ଏଗୁଡ଼ିକୁ କୁଣ୍ଡରେ ଲଗାଯିବା ଉଚିତ । ବିଭିନ୍ନ ରଙ୍ଗର ଫୁଲ ଥିବା କାର୍ଣ୍ଣେସନ ବଗିଚାରେ ଚାଷ କରାଯାଏ । ଗୋଲାପି, ହଳଦିଆ ଓ ଗାଢ଼ଲାଲରଙ୍ଗର କାର୍ଣ୍ଣେସନ ବେଶି ଆଦୃତ ହୋଇଥାଏ । ଫୁଲଗୁଡ଼ିକ ସାମାନ୍ୟ ସୁଗନ୍ଧଯୁକ୍ତ ଓ ସୁନ୍ଦର ଦିଶିବା ହେତୁ ଏହା କଟାଫୁଲରୂପେ ବ୍ୟବହାର କରାଯାଏ । ବାରଣ୍ଡା ପାଖରେ ଛାଇସ୍ଥାନ ଗୁଡ଼ିକରେ ଏହା ଭଲ ବଢ଼େ । ତେଣୁ ବାରଣ୍ଡାପାଖରେ ବଡ଼ ବଡ଼ କୁଣ୍ଡରେ ଏଗୁଡ଼ିକୁ ଲଗାଯିବା ଉଚିତ ।



(ଚିତ୍ର-୮୬) କାର୍ଣ୍ଣେସନ୍

ଗଛଗୁଡ଼ିକର କାଣ୍ଡ ଦୁର୍ବଳ ହୋଇଥିବା ହେତୁ ବାଉଁଶକାଠି ପୋତି ଗଛଗୁଡ଼ିକୁ ସିଧାରେ ରଖାଯାଏ । କାର୍ଣ୍ଣେସନରେ ଠିକ୍ ମୁତାବକ ପାଣି ଦେବା ଆବଶ୍ୟକ ।

**ଡାଇମରଫୋଥିକା** (*Dimorphotheca aurantiaca,* Compositae) ଡାଇମରଫୋଥିକା ଗଛଗୁଡ଼ିକ ଶୀତଦିନେ ଲଗାଯାଏ । ଗଛଗୁଡ଼ିକ ୭୦ ରୁ ୯୦ ସେ.ମି. ଯାଏ ବଢ଼େ । ୩/୪ ମାସପରେ ଫୁଲ ଆସେ । ଧଳା, ହଳଦିଆ ଓ କମଳା ରଙ୍ଗର ଏକ ଓ ବହୁ ଦଳାବରଣଯୁକ୍ତ ସେବତୀ ପରି ଫୁଲ ଫୁଟେ । ଏଗୁଡ଼ିକ ବଗିଚାରେ ଉନ୍ମୁକ୍ତ ପ୍ରାଙ୍ଗଣରେ ଲଗାଯିବା ଉଚିତ ।

**ମୁକ୍ତାପୁଷ୍ପ** (Echium plantagineum, Boraginaceae)- ମୁକ୍ତାଫୁଲଗଡ଼ିକ ଜଙ୍ଗଲି ଗଛପରି ଦିଶେ । କିନ୍ତୁ ଏହାର ନୀଳବର୍ଣ୍ଣର ଫୁଲଗୁଡ଼ିକ ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି । ଧଳା ଓ ବାଇଗଣି ଜାତିର ଫୁଲ କିସମ ମଧ୍ୟ ଦେଖାଯାଏ । ଶୀତଦିନେ ମଂଜିରୁ ଚାରା ଉତାରି ଗଛ ଲଗାଯାଏ । ଯେକୌଣସି ସ୍ଥାନରେ ଅଳ୍ପ ଯତ୍ନରେ ଏହାକୁ ଲଗାଯାଇପାରେ ।

**ଜେରବେରା** (*Gerbera jamisonii,* Compositae)- ଜେରବେରା ଏକ ବହୁବାର୍ଷିକ କାଣ୍ଡଶୂନ୍ୟ ଉଦ୍ଭିଦ । ଏହାର ପତ୍ରଗୁଡ଼ିକ ଲୋମଶ,

ଟାଆଁଶା ଓ ବର୍ଣ୍ଣାକାର । ଜାତିଭେଦରେ ପତ୍ରର ଆକୃତି ଭିନ୍ନ ହୁଏ । ବିଭିନ୍ନ ରଙ୍ଗର କମ୍ ଓ ବହୁ ପାଖୁଡ଼ା ଥିବା ଜେରବେରା ଫୁଲ ଦେଖାଯାଏ । ମଞ୍ଜି କିମ୍ବା ପୁରୁଣା ଗଛର ପୁଆକୁ ସଂଗ୍ରହ କରି ଗଛ ଲଗାଯାଏ । ଉର୍ବର ଓ ନିଗିଡ଼ା ମାଟିରେ ଜେରବେରା ଲଗାଯିବା ଉଚିତ । ବିଶେଷ ଅମ୍ଳଯୁକ୍ତ ମାଟିରେ କିଛି ଚୂନ ମିଶାଇ ଗଛ ଲଗାଇବା ଆବଶ୍ୟକ । ଗଛ ଲଗାଇବାର ୩/୪ ମାସ ପରେ ଫୁଲ ଆସେ । ଗଛ ମଝିରୁ କାଣ୍ଡ ବାହାରି ଅଗରେ ଫୁଲ ଧରେ ଓ ଏହି ଲମ୍ବା ନାଡ଼ଗୁଡ଼ିକ ୨୦ ରୁ ୨୫ ସେ.ମି. ଯାଏ ଲମ୍ବା ହୋଇଥାଏ । ଗଛରେ ଫୁଲଗୁଡ଼ିକ ୧୫ ରୁ ୨୦ ଦିନ ପର୍ଯ୍ୟନ୍ତ ରହେ । ଏହି ହେତୁ କଟାଫୁଲ ରୂପେ ଜେରବେରାକୁ ବ୍ୟବହାର କରାଯାଏ । ଜେରବେରା କୁଣ୍ଡରେ ଭଲ ବଢ଼େନାହିଁ । ତେଣୁ ବଡ଼ ବଡ଼ ଫୁଲ ପଟାଳିରେ ଏଗୁଡ଼ିକୁ ଲଗାଯିବା ଉଚିତ ।

**ହେଲିକ୍ରାଇସମ୍** (*Helichrysum bracteatum*, **Compositae**)- ହେଲିକ୍ରାଇସମ ଶୀତଦିନେ ଓ ଖରାଦିନେ ଲଗାଯାଇଥାଏ । ଗଛଗୁଡ଼ିକ ୧ ମିଟରରୁ ୧୨ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । ଫୁଲ ଫୁଟିବା ବେଳକୁ



(ଚିତ୍ର-୮୭) ହେଲିକ୍ରାଇସମ୍

ପତ୍ରଗୁଡ଼ିକ ଅଗ ଆଡ଼କୁ କ୍ରମେ ଛୋଟ ହୋଇଆସେ ଓ ଗଛରୁ ବହୁତ ଡାଳ ବାହାରେ । ଫୁଲଗୁଡ଼ିକ ୩/୪ ସେ.ମି. ଓସାର ଓ ପାଖୁଡ଼ାଗୁଡ଼ିକ ଭିତର ପଟକୁ ବକ୍ର ହୋଇଥାଏ । ଗଛ ମଉଳିବା ପର୍ଯ୍ୟନ୍ତ ଫୁଲ ଫୁଟି ରହିଥାଏ । ହଳଦିଆ, ଲାଲ ଓ ବାଦାମିରଙ୍ଗର ହେଲିକ୍ରାଇସମ୍ ଦେଖାଯାଏ । ଫୁଲ ଶୁଖିଲା ପରେ ବି ସୁନ୍ଦର ଦିଶେ । କମ ଯତ୍ନରେ ଯେକୌଣସି ସ୍ଥାନରେ ଏହା ଲଗାଯାଇପାରେ । ଅନୁର୍ବର ମାଟିରେ ଏହା ଲଗାଇଲେ ଛୋଟ ଗଛରେ ଫୁଲ ଆସେ ।

**ଲେଡ଼ିସ୍‌ଲେସ** (*Pimpinella monoica,* Umbelliferae)- ଲେଡ଼ିସଲେସ ବା ଉତ୍ତରୀୟ ପୁଷ୍ପଗୁଡ଼ିକ ଧଣିଆ ଜାତିର ଗଛ । ୧୦୦ ରୁ ୧୫୦ ସେ.ମି. ପର୍ଯ୍ୟନ୍ତ ଏହା ବଢ଼େ । ଗଛ ବଢ଼ି ସାରିବା ପରେ ଅଗ୍ରଭାଗରେ ଧଣିଆଫୁଲପରି ଓଢ଼ଣି ଆକାରର ମେଞ୍ଚା ମେଞ୍ଚା ଈଷତ୍ ହଳଦିଆ ରଙ୍ଗମିଶା ଧଳା ଫୁଲ ଫୁଟେ । ବଗିଚାର ଖୋଲାସ୍ଥାନଗୁଡ଼ିକରେ ଗୋଲାକାର ଫୁଲପଟାଳିରେ ଏଗୁଡ଼ିକ ଲଗାଯିବା ଉଚିତ । ଏଗୁଡ଼ିକ ସବୁ ପ୍ରକାର ମାଟିରେ ମଂଜିରୁ ଚାରା ଉତାରି ଲଗାଯାଇପାରେ । ଏହାର ଫୁଲଗୁଡ଼ିକ କଟାଫୁଲରୂପେ ବ୍ୟବହାର କରାଯାଇଥିବାରୁ ଆଜିକାଲି ଏହାର ଚାଷ ଦିନକୁ ଦିନ ବୃଦ୍ଧି ପାଉଛି ।

**ଆଫ୍ରିକାନ ଭାଇଓଲେଟ** (Saintpaulia *ionantha,* Gesneriaceae)- ଆଫ୍ରିକାନ ଭାଇଓଲେଟ୍ ଏକ ବହୁବାର୍ଷିକ କ୍ଷୁଦ୍ର ଉଦ୍ଭିଦ । ଏଥିରେ ଶୀତଦିନେ ଫୁଲଫୁଟେ । ଗଛର ମଧ୍ୟଭାଗରୁ ପତ୍ରଗୁଡ଼ିକ ଚାରିଆଡ଼କୁ ପ୍ରସାରିତ ହୋଇଥାଏ ଓ ମଝିରେ ପେଣ୍ଡା ପେଣ୍ଡା ଫୁଲ ଫୁଟେ । ଫୁଲଗୁଡ଼ିକ ସାଧାରଣତଃ ବାଇଗଣି ରଙ୍ଗର ହୋଇଥାଏ । ଛୋଟ ଛୋଟ ୧୦/୧୨ ସେ.ମି. କୁଣ୍ଡରେ ଏଗୁଡ଼ିକ ଲଗାଯାଇ ଫୁଲ ଫୁଟିଲାବେଳେ ଘର ଭିତରେ ରଖାଯାଏ ।

**ମାଇକେଲମସଡ଼େଜି** (Aster amellus, Compositae)- ମାଇକେଲମସ୍‌ଡ଼େଜି ଏକ ବହୁବାର୍ଷିକ ଉଦ୍ଭିଦ । ଏଥିରେ ବର୍ଷସାରା ଫୁଲ ଫୁଟେ । ଫୁଲଗୁଡ଼ିକ ଦେଖିବାକୁ ଛୋଟ ନୀଳରଙ୍ଗର ଆଷ୍ଟର ଭଳି । ଅଳ୍ପ ଯତ୍ନରେ ଏହି ଗଛଗୁଡ଼ିକ ଲଗାଯାଇପାରେ । ମଞ୍ଜିରୁ ଓ ପୁରୁଣା ଗଛ ମୂଳରୁ ପୁଆ ସଂଗ୍ରହ କରି ନୂଆଗଛ ଲଗାଯାଏ । ଗଛରେ ଫୁଲ ଆସି ସାରିଲା ପରେ ଫୁଲ ଫୁଟୁଥିବା ଡାଳଗୁଡ଼ିକୁ କାଟି ଫିଙ୍ଗିଦେବା ଉଚିତ । ଫିକା ଓ ନୀଳରଙ୍ଗର ଫୁଲଗୁଡ଼ିକ ଫୁଟିଥିବା ବେଳେ ଦୂରକୁ ଏହା ବହୁତ ସୁନ୍ଦର ଦିଶେ । ବାକ୍ସ, ଖୋଲା ପଡ଼ିଆ, ଫୁଲ ପଟାଳି କିମ୍ବା କୁଣ୍ଡରେ ଏଗୁଡ଼ିକୁ ଲଗାଯାଇପାରେ ।

**ଲାର୍କସ୍ପର** (*Delphinium ajacis,* Ranunculaceae)- ଲାର୍କସ୍ପର ଶୀତଦିନରେ ବଗିଚାରେ ଲଗାଯାଇଥାଏ । ଜାତି ଅନୁସାରେ ଗଛର ଉଚ୍ଚତା ୯୦ ରୁ ୧୫୦ ସେ.ମି. ପର୍ଯ୍ୟନ୍ତ ହୁଏ । ଗଛ ସିଧା ବଢ଼େ ଓ ସବୁଜ




**ଲାର୍କସ୍ପର**

ସରୁ ସରୁ ପତ୍ରରେ ପୂର୍ଣ୍ଣ ହୋଇ ରହେ । ଗଛର ଅଗ୍ରଭାଗରେ ଲମ୍ବ ସ୍ତବକରେ ଫୁଲ ଆସେ । ଫୁଲ ଗୁଡ଼ିକ ଏକଦଳ କିମ୍ବା ବହୁଦଳ ବିଶିଷ୍ଟ । ବାଇଗଣି, ନୀଳ ଗୋଲାପି ଫିକାନୀଳ, ନାଲି ଓ ଧଳା ରଙ୍ଗର ଲାର୍କସ୍ପର ଦେଖିବାକୁ ମିଳେ । ମଂଜିରୁ ସିଧା ଲଗାଇବା ସ୍ଥାନରେ ଲଗାଯାଏ । ପରେ ୧୫ ସେ.ମି. ଦୂରତାରେ ଅଧିକ ଗଛକୁ ଓପାଡ଼ି ଫୋପାଡ଼ି ଦିଆଯାଏ । D. paniculatum ୩୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ ଓ ଦେଖିବାକୁ ଖୁବ୍ ସୁନ୍ଦର ଅଟେ ।

॥ ଚତୁର୍ଦ୍ଦଶ ପରିଚ୍ଛେଦ ॥

# ବଲବସ୍ ଶୋଭାବର୍ଦ୍ଧକ ଉଦ୍ଭିଦ

## (Bulbous Plants)

ଶୋଭାବର୍ଦ୍ଧକ ଉଦ୍ଭିଦମାନଙ୍କ ମଧ୍ୟରେ ବଲବସ୍ ଶୋଭାବର୍ଦ୍ଧକ ଉଦ୍ଭିଦମାନଙ୍କର ଏକ ସ୍ୱତନ୍ତ୍ର ପ୍ରାଧାନ୍ୟ ରହିଛି । ଏହି ପ୍ରକାର ଉଦ୍ଭିଦଗୁଡ଼ିକ କିଛି ସମୟ ସୁପ୍ତ ଅବସ୍ଥାରେ ରହୁଥିଲେ ହେଁ ଫୁଲ ଫୁଟିବା ବେଳେ ସେମାନେ ମନୋରମ ସୌନ୍ଦର୍ଯ୍ୟମୟ ପରିବେଶ ସୃଷ୍ଟି କରିଥାନ୍ତି । ଏହି ଶୋଭାବର୍ଦ୍ଧକ ଉଦ୍ଭିଦଗୁଡ଼ିକ ଲୋଭନୀୟ ତଥା ସୁଗନ୍ଧଯୁକ୍ତ ପୁଷ୍ପ ଧାରଣ କରିବା ସଙ୍ଗେ ସଙ୍ଗେ ଅନେକ ସମୟରେ ସୌନ୍ଦର୍ଯ୍ୟମୟ ପତ୍ର ଦ୍ୱାରା ଶୋଭିତ ହୋଇଥାନ୍ତି ।

ବଲବସ୍ ଉଦ୍ଭିଦଗୁଡ଼ିକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଇଛି । ଯଥା ରୂପାନ୍ତରିତ ଚେର ଓ ରୂପାନ୍ତରିତ କାଣ୍ଡ ଜାତୀୟ । ଉଦ୍ୟାନବିତ୍‌ମାନଙ୍କ ମତରେ ଯେଉଁ ଉଦ୍ଭିଦ ଏଇ ଦୁଇପ୍ରକାର ଅଂଶ ଦ୍ୱାରା ଲଗାଯାଆନ୍ତି ସେମାନଙ୍କୁ ବଲବସ୍ ଜାତୀୟ ଉଦ୍ଭିଦ କୁହାଯାଏ । ବିଭିନ୍ନ ପ୍ରକାର ରୂପାନ୍ତରିତ ଚେରମାନଙ୍କ ମଧ୍ୟରେ ସ୍ଫୀତମୂଳ, ଗୁଚ୍ଛମୂଳ ଓ ରୂପାନ୍ତରିତ କାଣ୍ଡମାନଙ୍କ ମଧ୍ୟରେ ଧାବକକାଣ୍ଡ (Runner), ବକ୍ର ଧାବକକାଣ୍ଡ (Stolen), ଖର୍ବ ଧାବକକାଣ୍ଡ (Off set), ମୂଳକାର କାଣ୍ଡ (Rhizomes), ସ୍ଫୀତକାଣ୍ଡ (Tuber), ଗୋଲାକାର କାଣ୍ଡ (Corm) ଶଳକ କାଣ୍ଡ (Bulb) ପ୍ରଭୃତି ଶୋଭାବର୍ଦ୍ଧକ ବଲବସ୍ ଉଦ୍ଭିଦମାନଙ୍କର ବଂଶବିସ୍ତାରରେ ସାହାଯ୍ୟ କରିଥାନ୍ତି । ଏହି ଉଦ୍ଭିଦମାନଙ୍କର ଲଗାଇବା ତଥା ପରିପାଳନ ପ୍ରଣାଳୀ ଅତି ସହଜ । ଏଗୁଡ଼ିକ ହାଲୁକା ମାଟିରେ ୩ ରୁ ୬ ସେ.ମି. ଗଭୀରତାରେ ପୋତିଦିଆ ଯାଇଥାଏ । କେତେକ ମୂଳଜ ଉଦ୍ଭିଦ ଯେଉଁମାନଙ୍କର ଶୋଭା ଅତୀବ ରମଣୀୟ ନିମ୍ନରେ ସେମାନଙ୍କର ପୋତିବାର ଗଭୀରତା ସଂପର୍କରେ ଉଲ୍ଲେଖ କରାଗଲା ।

| ଜାତିର ନାମ | ପୋତିବାର ଗଭୀରତା (ସେଣ୍ଟିମିଟର) | |
|---|---|---|
| ଏଲିଅସ୍ | ୫ | ୭.୫ |
| ଏନିମୋନ୍ | | ୫ |
| ମୂଳଜ ବିଗୋନିଆ | | ୨.୫ |
| କେନା ବା ସର୍ବଜୟା | ୫ | ୭ |
| ଡାଫୋଡ଼ିଲ୍ | | ୧୫ |
| ଡାଲିଆ | ୪ | ୬ |
| ଗ୍ଲାଡ଼ିଓଲସ୍ | ୬ | ୭.୫ |
| ସାଫ୍ରନ ଲିଲି | ୫ | ୭.୫ |
| ଟୁଲିପ | ୬ | ୭.୫ |
| ହାଇସିନ୍ଥ | ୫ | ୧୦ |
| ରଜନୀଗନ୍ଧା | ୫ | ୭.୫ |

ମୂଳଗୁଡ଼ିକୁ ଲଗାଇ ସାରିବା ପରେ କିଛିଦିନପାଇଁ ଅଳ୍ପ ଅଳ୍ପ ପାଣି ଦେବାକୁ ପଡ଼େ । ଗଛଗୁଡ଼ିକର ପତ୍ର ମଉଳି ଆସିଲାବେଳକୁ ଆସ୍ତେ ଆସ୍ତେ ପାଣି ବନ୍ଦ କରିଦେବା ଉଚିତ । ଏହି ଉଦ୍ଭିଦଗୁଡ଼ିକୁ ଲଗାଇବା ପୂର୍ବରୁ କେଉଁ ଜାତି କେଉଁ ଜଳବାୟୁରେ ଲଗାଇଲେ ଉତ୍ତମ ଭାବେ ବଢ଼ିପାରିବ ତାହା ସମ୍ବନ୍ଧରେ ଭଲଭାବରେ ଜାଣିବା ଆବଶ୍ୟକ । ଉଦାହରଣ ସ୍ୱରୂପ ଡାଫୋଡ଼ିଲ ଉଷ୍ଣ ଜଳବାୟୁରେ ବଢ଼ିପାରେ ନାହିଁ । ସେହିପରି ଲିଲି ପ୍ରଭୃତି ଅତି ଶୀତ ଅଞ୍ଚଳରେ ଭଲ ବଢ଼ିପାରେ ନାହିଁ । ଏହି ଜାତିର ଉଦ୍ଭିଦଗୁଡ଼ିକୁ ବର୍ଷରେ ବିଭିନ୍ନ ସମୟରେ ଲଗାଯାଇଥାଏ । ଗୃହର ବହିଃର୍ଦ୍ଦେଶ ତଥା କୁଣ୍ଡରେ ଗୃହର ଅଭ୍ୟନ୍ତରରେ ତଥା ଗୃହସଂଲଗ୍ନ ବାରଣ୍ଡାରେ ଲଗାଯିବା ଉଚିତ । ଏଗୁଡ଼ିକୁ ମାଟି କିମ୍ବା ଚିନାମାଟିରେ ନିର୍ମିତ କୁଣ୍ଡମାନଙ୍କରେ ଲଗାଗଲେ ବେଶୀ ସୁନ୍ଦର ଦିଶନ୍ତି ।

ମୂଳଗୁଡ଼ିକ ଲଗାଇବା ପୂର୍ବରୁ ପୁରୁଣା କୁଣ୍ଡଗୁଡ଼ିକ ଭଲଭାବରେ ଧୋଇଦେବା ଉଚିତ ଏବଂ ନୂଆ କୁଣ୍ଡଗୁଡ଼ିକ ଅଧଘଣ୍ଟାଏ ପାଣିରେ ବୁଡ଼ାଇ

ରଖିବା ବିଧେୟ । ଲଗାଇବା ବେଳେ ମୂଳଗୁଡ଼ିକର ଅଗ୍ରାଂଶ ଉପରକୁ ରହିବା ଆବଶ୍ୟକ । ବିଭିନ୍ନ ପ୍ରକାର ଉଦ୍ଭିଦମାନଙ୍କ ପାଇଁ ବିଭିନ୍ନ ପ୍ରକାର ମାଟି ଦରକାର ହୁଏ । ମୂଳ ଲାଗିସାରିବା ପରେ ବିଭିନ୍ନ ଜାତିର ବଲବସ୍ ଉଦ୍ଭିଦ ଅନୁସାରେ ଜଳଦେବା ଆବଶ୍ୟକ । ପ୍ରତ୍ୟେକକୁଣ୍ଡରେ ଅଧିକାଂଶ କ୍ଷେତ୍ରରେ ଗୋଟିଏ ଗୋଟିଏ କରି ମୂଳ ଲଗା ଯାଇପାରେ । କୁଣ୍ଡଗୁଡ଼ିକ ସାମାନ୍ୟ ଅନ୍ଧାରିଆ ସ୍ଥାନରେ ରଖିଦେଲେ ଚେରଗୁଡ଼ିକ ଶୀଘ୍ର ବାହାରିଆସେ । ବଲବସ୍ ଉଦ୍ଭିଦଗୁଡ଼ିକୁ ମଧ୍ୟ ଛୋଟ ଛୋଟ ଧାତବ ପାତ୍ରରେ ଲଗାଯାଇ ପାରେ । ସୁନୁସୁନିଆ ପ୍ରଭୃତି ଉଦ୍ଭିଦ କୁଣ୍ଡରେ ଭଲ ବଢ଼ିଥାନ୍ତି । ଏହା ବ୍ୟତୀତ ବଲବସ୍ ଜାତୀୟ ଉଦ୍ଭିଦଗୁଡ଼ିକୁ ଲମ୍ବା ଲମ୍ବା ପଟାଳିରେ ଲଗାଇଲେ ଏକା ସମୟରେ ଫୁଲ ଫୁଟି ଅପୂର୍ବ ମନୋମୁଗ୍ଧକର ପରିବେଶ ସୃଷ୍ଟି ହୋଇଥାଏ । ବିଭିନ୍ନ ପ୍ରକାର ଲିଲି, ଡାଲିଆ, କେନା, ଏମାରିଲିସ୍ ଏବଂ ଗ୍ଲାଡ଼ିଓଲସ୍ ପ୍ରଭୃତି ପୁଷ୍ପ ଶଯ୍ୟାରେ ଲଗାଯାଇ ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରାଯାଏ । ଶୋଭାବର୍ଦ୍ଧକ ବଲ୍‌ବସ୍ ଉଦ୍ଭିଦଗୁଡ଼ିକର ଜୀବନଚକ୍ର ସାଧାରଣତଃ ତିନୋଟି ଭାଗରେ ବିଭକ୍ତ କରାଯାଏ ଯଥା- ସୁପ୍ତାବସ୍ଥା, ଉଦ୍ଭିଦ ଗଠନାବସ୍ଥା ଓ ପୁଷ୍ପଧାରଣ ଅବସ୍ଥା । ପୁଷ୍ପଧାରଣ ସମୟରେ ଏହା ବହୁତ ଜଳ ଆବଶ୍ୟକ କରେ ଏବଂ ସୁପ୍ତାବସ୍ଥାରେ କମ୍ ଜଳ ଆବଶ୍ୟକ କରେ । ଫୁଲ ଫୁଟି ମଉଳିବା ପରେ ମୂଳଗୁଡ଼ିକ ସଂଗ୍ରହ କରି ରଖାଯାଏ । ତେବେ ଏହିପ୍ରକାର କେତେକ ଉଦ୍ଭିଦରେ କିଛି ବ୍ୟତିକ୍ରମ ଦେଖାଯାଇଥାଏ । ରକ୍ତରଙ୍ଗ ଲିଲିରେ ପ୍ରଥମେ ଫୁଲ ଫୁଟି ପରେ ଗଛ ବଢ଼ି ନୂଆ ବଲବ ତିଆରି ହୁଏ । ବଲବସ୍ ଜାତୀୟ ଉଦ୍ଭିଦଗୁଡ଼ିକର ମୂଳସଂଗ୍ରହ ଏକ କଠିନ କାର୍ଯ୍ୟ । ଠିକ୍ ସମୟରେ ଏହି କାର୍ଯ୍ୟ ନ କଲେ ମୂଳଗୁଡ଼ିକ ନଷ୍ଟ ହୋଇଯାଏ । ନିମ୍ନରେ କେତେଗୁଡ଼ିଏ ପ୍ରଧାନ ପ୍ରଧାନ ସୌନ୍ଦର୍ଯ୍ୟ ବର୍ଦ୍ଧକ ମୂଳଜାତୀୟ ଉଦ୍ଭିଦମାନଙ୍କର ଲଗାଇବା ସମ୍ବନ୍ଧରେ ବିଶେଷ ବିବରଣୀ ଦିଆଗଲା ।

**ଦୋଳନ ଚମ୍ପା** (*Hedychium* sp. *Zingiberaceae*)- ଦୋଳନଚମ୍ପାକୁ ଅଦାଲିଲି ବା ପ୍ରଜାପତିଆ ଲିଲି ବୋଲି କୁହାଯାଏ । ଏହି ଗଛଗୁଡ଼ିକ ଦେଖିବାକୁ ଅଦାଗଛ ପରି । ଦୋଳନଚମ୍ପାର ଚାରିଟି ଉପଜାତି ଅଛି । ଏଗୁଡ଼ିକ ସମୁଦ୍ରପତନଠାରୁ ବହୁ ଉଚ୍ଚ ପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ସବୁଠାରେ

ଲଗାଯାଇପାରେ । ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ । ଗଛ ମଝିରୁ ଗୋଟିଏ କାଣ୍ଡ ବାହାରି ପୁଷ୍ପ ଧରିଥାଏ । ଏହାର ମୂଳଗୁଡ଼ିକ ଦେଖିବାକୁ ଅଦାପରି । ଦୋଳନଚମ୍ପା ସାଧାରଣତଃ ଉର୍ବରମାଟି ଦରକାର କରିଥାଏ । ଓଦା ରହୁଥିବା ମାଟିରେ ଏହା ଭଲଭାବରେ ବଢ଼େ । ମଞ୍ଜି ଓ ରୂପାନ୍ତରିତ କାଣ୍ଡଦ୍ୱାରା ଏହାର ବଂଶବିସ୍ତାର କରାଯାଏ । ଏଗୁଡ଼ିକ ଜମି ପତନଠାରୁ କମ୍ ଗଭୀରରେ ଲଗାଯାଏ । ଫୁଲଗୁଡ଼ିକ ସାଧାରଣତଃ ଜୁଲାଇଠାରୁ ଅକ୍ଟୋବର ମାସ ମଧ୍ୟରେ ଫୁଟିଥାଏ । ଶୀତଦିନେ ଗଛଗୁଡ଼ିକ ହଳଦିଆ ପଡ଼ି ଶୁଖିଯାଏ । ଏହାପରେ ଗଛଗୁଡ଼ିକ ଖୋଳି ପରବର୍ତ୍ତୀ ବର୍ଷପାଇଁ ରଖାଯାଏ । କୂଅର ଚାରିପଟରେ କିମ୍ବା କେନାଲର ଦୁଇ ପାଖରେ ହେଡ଼ିକିଅମ୍ ଲଗାଇଲେ ସୁନ୍ଦର ଦିଶେ । ଗୃହର ସନ୍ନିକଟରେ ବା ଝରକା ନିକଟରେ ଏଗୁଡ଼ିକୁ ଲଗାଇଲେ ଘର ଭିତରକୁ ସୁଗନ୍ଧ ଆସେ । ଭାରତରେ ଲଗାଯାଉଥିବା ହେଡ଼ିକିୟମାନଙ୍କ ମଧ୍ୟରେ କରୋନାରିୟମ୍ କକ୍‌ସିନିୟମ୍, ଫ୍ଲାବମ୍, ଗାର୍ଡ଼େନେରିଆମ୍, ଏଲିପ୍‌ଟିକମ୍ ଏବଂ ଗ୍ରାସାଇଲ ପ୍ରଭୃତି ପ୍ରଧାନ ।

**ରକ୍ତରଙ୍ଗ ଲିଲି** (***Hemanthus multiflorus*, Amaryllidaceae**)- ଫୁଟବଲ ଲିଲିକୁ ରକ୍ତରଙ୍ଗ ଲିଲି କୁହାଯାଏ । ପୃଥିବୀରେ ଏହାର ୪୦ ରୁ ଅଧିକ ପ୍ରକାରର ଜାତି ଥିବା ଅନୁମାନ କରାଯାଏ । ଉଷ୍ଣ ଜଳବାୟୁ ମଣ୍ଡଳ ଓ ଦକ୍ଷିଣ ଆଫ୍ରିକୀୟ ଅଞ୍ଚଳ ଏହାର ଜନ୍ମଭୂମି ବୋଲି ଜଣାଯାଏ । ଗ୍ରୀଷ୍ମକାଳରେ ଏହାର ସୌନ୍ଦର୍ଯ୍ୟ ଅତୀବ ରମଣୀୟ । ରକ୍ତରଙ୍ଗ ଲିଲିର ପତ୍ରଗୁଡ଼ିକ ୧୫-୩୦ ସେ.ମି. ଲମ୍ବ ଓ ମୋଟା । ବର୍ଷାଦିନେ ଗଛଗୁଡ଼ିକ ସବୁଜ ପତ୍ରରେ ବିମଣ୍ଡିତ ହୋଇ ବଢ଼ନ୍ତି ଏବଂ ଶୀତଦିନରେ ଏଗୁଡ଼ିକ ଶୁଖିଯାନ୍ତି । ଗଛଗୁଡ଼ିକ ଶୁଖିଲା ପରେ ପିଆଜପରି ଏହାର ମୂଳଗୁଡ଼ିକ ବାହାର କରାଯାଇ ସାଇତା ଯାଏ । ଖରାଦିନ ଆରମ୍ଭରୁ ଏହାରକୁ ହାଲୁକା ମାଟିରେ ଲଗାଯାଏ । ଲଗାଯାଇଥିବା ସ୍ଥାନରେ ପାଣି ଯେପିର ନ ଜମେ ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ଗଛଗୁଡ଼ିକ ସଂପୂର୍ଣ୍ଣ ବାହାରେ କିମ୍ବା ଅର୍ଦ୍ଧଛାୟା ସ୍ଥାନମାନଙ୍କରେ ଲଗାଯାଇପାରେ । ମୂଳ ଲଗାଇବାର ୧୫ ଦିନ ପରେ ଗୋଟିଏ ଛୋଟ ପତ୍ର ବାହାରେ ଓ ପରେ ପରେ ପୁଷ୍ପର କାଣ୍ଡ ବାହାରେ । ଏକ ମାସ ଭିତରେ ଏହା

୨୦-୩୦ ସେ.ମି. ବଢ଼େ ଏବଂ ଫୁଟ୍‌ବଲ ଆକାରର ଗୋଟିଏ ବଡ଼ ଫୁଲ ଧରେ । ଫୁଲଗୁଡ଼ିକ ସାଧାରଣତଃ ୧୦-୧୨ ଦିନ ପର୍ଯ୍ୟନ୍ତ ରହେ । ଫୁଲ ଶୁଖିଗଲା ପରେ ଏହାର ମଞ୍ଜି ସଂଗ୍ରହ କରି ରଖିବା ଉଚିତ । ଫୁଲଗୁଡ଼ିକ ଫୁଟି ସାରିଲା ପରେ ଏହାକୁ ଗୃହର ଅଭ୍ୟନ୍ତରରେ ସାଜସଜ୍ଜାଲାଗି ବ୍ୟବହାର କରାଯାଇପାରେ । ଅନେକ ସମୟରେ ଗଛଗୁଡ଼ିକ ବଗିଚାରେ ମାଟିତଳେ ରହି ଖରାଦିନେ ପୁଷ୍ପଧାରଣ କରନ୍ତି । ମାଲଟିଫ୍ଲୋରସ୍ ବ୍ୟତୀତ ଆହୁରି ଲାଲରଙ୍ଗର ସୁପରବସ୍ ଏବଂ ଧଳାରଙ୍ଗର କ୍ୟାଣ୍ଡିଡସ୍ ଆମଦେଶରେ ମଧ୍ୟ ଲଗାଯାଏ ।

**କୃଷ୍ଣକେଳି** (*Mirabilis jalapa*, Nyctaginaceae)- ପୃଥିବୀରେ ୧୨ ରୁ ଅଧିକ ଜାତିର କୃଷ୍ଣକେଳି, ବଧୁଲି ବା ରଙ୍ଗଣୀ ଦେଖାଯାଏ । ଗଛଗୁଡ଼ିକ ଶାକୀୟ ଜାତୀର ବହୁବାର୍ଷିକ ଉଦ୍ଭିଦ । ଉଷ୍ଣ ମଣ୍ଡଳୀୟ ଆମେରିକା ଏହାର ଜନ୍ମସ୍ଥାନ । ସଂଧ୍ୟାବେଳ ପୂର୍ବରୁ କୃଷ୍ଣକେଳି ଫୁଟିଥିବାରୁ ଏହାକୁ ଫୋର- ଓ କ୍ଲକ (4 ' O Clock ) ଗଛ ବୋଲି କୁହାଯାଏ । ଫୁଲଗୁଡ଼ିକ ସକାଳେ ମଉଳିଯାଆନ୍ତି । ଲାଲ, ଗୋଲାପି, ଧଳା, ହଳଦିଆ ତଥା ନାନା ଛିଟଯୁକ୍ତ କୃଷ୍ଣକେଳି ଦେଖିବାକୁ ମିଳେ । ସ୍ଫୀତମୂଳ ଓ ମଞ୍ଜିଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ଗଛଗୁଡ଼ିକ ୩୦-୪୦ ସେ.ମି. ଉଚ୍ଚ ହୋଇଥାନ୍ତି । ଏହାର ପତ୍ରଗୁଡ଼ିକ ଦେଖିବାକୁ ସୁନ୍ଦର ଏବଂ ଫୁଲଗୁଡ଼ିକ ବୃନ୍ତହୀନ । ଫୁଲଗୁଡ଼ିକ ସାମାନ୍ୟ ସୁଗନ୍ଧଯୁକ୍ତ । ଗଭୀର ମାଟିରେ ଏଗୁଡ଼ିକ ଲଗାଯିବା ଉଚିତ । କିନ୍ତୁ ନୀରସ ହାଲୁକା ମାଟିରେ ଏହା ମଧ୍ୟ ବଢ଼ିପାରେ । ଉପଯୁକ୍ତ ସୂର୍ଯ୍ୟାଲୋକ ପାଉଥିବା ସ୍ଥାନରେ ସ୍ଫୀତମୂଳଗୁଡ଼ିକୁ ଲଗାଯିବା ଉଚିତ । ଏହା ଅତି ସହଜରେ ବଢ଼ି ପୁଷ୍ପପ୍ରଦାନ କରନ୍ତି । ଲନ ଚତୁଃପାର୍ଶ୍ୱ ବାରଣ୍ଡାର ତଳ ଓ ବଗିଚାର ଲମ୍ବା ଲମ୍ବା ପୁଷ୍ପଶର୍ଯ୍ୟାରେ ଏହାକୁ ଲଗାଯାଇପାରେ । କାରଣ ଏହାର ପତ୍ରଗୁଡ଼ିକ ସାମାନ୍ୟ ବୃତ୍ତାକାର ଓ ସୁନ୍ଦର । ଫୁଲର ବିଭିନ୍ନତା ଯୋଗୁଁ ଏହା ଉପରେ ବହୁତ ଗବେଷଣା କରାଯାଉଛି ।

**ଡାଲିଆ** (*Dahlia* sp., Compositae)- ଶୀତଦିନରେ ମନୋମୁଗ୍ଧକର ପୁଷ୍ପମାନଙ୍କ ମଧ୍ୟରେ ଡାଲିଆ ପ୍ରଧାନ ସ୍ଥାନ ଅଧିକାର

କରିଥାଏ । ଡାଲିଆର ୧୨ ପ୍ରକାର ଜାତି ଥିବାର ଜଣାଯାଏ । ଗଛଗୁଡ଼ିକ ମାଟିତଳେ ଏକ ଷ୍ଟୀତମୂଳ ସୃଷ୍ଟି କରିଥାନ୍ତି । ପୃଥିବୀରେ ବିଭିନ୍ନ ଦେଶମାନଙ୍କରେ ଡାଲିଆ ସୋସାଇଟିମାନ ଗଠନ କରାଯାଇଛି । ଫ୍ରାନସ, ଇଂଲଣ୍ଡ, ଜର୍ମାନ, ହଲାଣ୍ଡ ଏବଂ ଆମେରିକା ପ୍ରଭୃତି ଦେଶରେ ଏହି ଚାଷ ବହୁଳ ପରିମାଣରେ କରାଯାଏ । ଲଣ୍ଡନର ଜାତୀୟ ଡାଲିଆ ସୋସାଇଟି ଡାଲିଆକୁ ପୁଷ୍ପଆକୃତି ଭେଦରେ ଏଗାର ଭାଗରେ ବିଭକ୍ତ କରିଛନ୍ତି, ଯଥା ସିଙ୍ଗଲ (Single), ଆନିମୋନ (Anymone), ପିୟୋନି (Peaony), ଫର୍ମାଲଡେକୋରେଟିଭ (Formal decorative), ଇନଫର୍ମାଲ ଡେକୋରେଟିଭ (Informal decorative), ସୋ (Show), କାକ୍‌ଟସ (Cactus), ସେମି କାକଟସ (Semi cactus), ପମ୍ପାନ (Pumpon), ଷ୍ଟାର (Star), ଏବଂ କୋଲାରିଟି (Collariette) । D. rosea ଏବଂ D. pinnata ର ଶଂକରଣ ଫଳରେ ବହୁ କିସମ ଡାଲିଆ ତିଆରି ସମ୍ଭବପର ହୋଇପାରୁଛି । ବଗିଚାର ଉନ୍ମୁକ୍ତ ପ୍ରାଙ୍ଗଣରେ ଗଭୀର ଉର୍ବର ମାଟିକୁ ଖୋଳି କିଛିଦିନ ପାଇଁ ଖରାଖୁଆଇବା ଉଚିତ ଏବଂ ମାଟି ସମାନ କରିବା ପୂର୍ବରୁ ଯଥେଷ୍ଟ ପରିମାଣର ଗୋବରଖତ ଦେବା ଆବଶ୍ୟକ । ଡାଲିଆର ବଂଶବିସ୍ତାର ମଞ୍ଜି ଓ ଡାଳକଲମି ଦ୍ୱାରା ହୋଇଥାଏ । ମଞ୍ଜିଗୁଡ଼ିକୁ ଅଗଷ୍ଟ ସେପ୍‌ଟେମ୍ବର ମାସରେ ମଞ୍ଜିକୁଣ୍ଡରେ (seed pan) ଲଗାଯାଏ । ଗଛଗୁଡ଼ିକ ୩ ସପ୍ତାହର ହୋଇଗଲେ ତାକୁ ତଳିଘରା କିମ୍ବା କୁଣ୍ଡରେ ଲଗାଇ ମାସକ ପରେ ଅଗ ଛିଣ୍ଡାଇଦେଲେ ଅନେକ ଡାଳ ବାହାରେ । ସେଗୁଡ଼ିକୁ ଡାଲକଲମି କରାଯାଏ । ଷ୍ଟୀତମୂଳରୁ ଗଛ ଉତାରିବା ବିଧେୟ । ଷ୍ଟୀତମୂଳଗୁଡ଼ିକୁ ସେପ୍‌ଟେମ୍ବର ମାସରେ ପ୍ରଥମେ ବାଲିରେ ପୋତି ଦିଆଯାଏ । ସେଗୁଡ଼ିକରୁ ବାହାରୁଥିବା ଡାଳଗୁଡ଼ିକୁ କଲମି କରାଯାଇ ଲଗାଯାଏ । ଡାଳକଲମିଗୁଡ଼ିକରେ ୧୫ ରୁ ୨୦ ଦିନରେ ଚେର ଲାଗେ । ଚେରଲାଗିଲା ପରେ ଏଗୁଡ଼ିକ ନେଇ ପଟାଳିରେ ଲଗାଯାଏ । ଗଛଗୁଡ଼ିକ ବିଭିନ୍ନଜାତି ଅନୁସାରେ ୪୫ ରୁ ୧୫୦ ସେଣ୍ଟିମିଟର ଦୂରତାରେ ଲଗାଯାଏ । ଗଛଗୁଡ଼ିକୁ ଦରକାର ଅନୁସାରେ ପାଣିଦେବା ଉଚିତ । ଅଧିକ ପାଣି ଦେଲେ ଗଛଗୁଡ଼ିକ ରୋଗାକ୍ରାନ୍ତ ହୋଇଥାନ୍ତି । ଡାଲିଆଗଛରେ ଫୁଲଫୁଟିବାକୁ ତିନିମାସ ସମୟ ଲାଗେ ।

ପ୍ରଦର୍ଶନୀଯୋଗ୍ୟ ବଡ଼ଫୁଲ କରିବା ପାଇଁ ବଡ଼କଢ଼ଟିକୁ ରଖି ଅନ୍ୟ କଢ଼କୁ ଛିଣ୍ଡାଇଦେବା ଉଚିତ । କଢ଼ ଅବସ୍ଥାରେ ଗଛରେ ସୁପରଫସଫେଟ୍ ଦେଲେ ଫୁଲର ରଙ୍ଗ ଏବଂ ଆକୃତି ବଢ଼ିଥାଏ । ବେଶୀ ଫୁଲ ପାଇବାକୁ ହେଲେ କଢ଼ ଆସିବା ପୂର୍ବରୁ ଗଛର ଅଗ ଛିଣ୍ଡାଇଦେବା ଦ୍ୱାରା ବେଶୀ ଡାଳ ବାହାରି ସେଥିରେ ଅନେକ ଫୁଲ ଫୁଟେ । ଡାଲିଆ ଗଛଗୁଡ଼ିକରେ ମାର୍ଚ୍ଚମାସ ପରେ ଫୁଲଫୁଟିବା ବନ୍ଦ ହୋଇଯାଏ । ଗଛର ମୂଳ ଖୋଳିବା ପୂର୍ବରୁ କିଛିଦିନ ପାଇଁ ପାଣି ଦେବା ବନ୍ଦ କରାଯାଏ । ଗଛଗୁଡ଼ିକୁ ଖୋଳି ଖରାରେ ସାମାନ୍ୟ ଶୁଖାଇ ପୂର୍ବରୁ କିଛିଦିନ ପାଇଁ ପାଣିଦେବା ବନ୍ଦ କରାଯାଏ । ଗଛଗୁଡ଼ିକ ମାଟିରୁ ୨.୫ ସେ.ମି. ଉଚ୍ଚରେ କାଟି ଫିଙ୍ଗିଦିଆଯାଏ । କନ୍ଦାଗୁଡ଼ିକୁ ଖୋଳି ଖରାରେ ସାମାନ୍ୟ ଶୁଖାଇ ଘରଭିତରେ ଥଣ୍ଡା ସ୍ଥାନରେ ରଖିଦିଆଯାଏ । କନ୍ଦାଗୁଡ଼ିକ ପାକଳ ହୋଇ ନ ଥିଲେ ପଚିଯାଏ । କନ୍ଦାଗୁଡ଼ିକୁ ରୋଗ ନିରୋଧ ଔଷଧରେ ବୁଡ଼ାଇ ରଖିଲେ ଏଗୁଡ଼ିକ ବେଶୀ ଦିନ ରୁହେ । ଲନର ଚତୁଃପାର୍ଶ୍ୱରେ ବଡ଼ ବଡ଼ ପୁଷ୍ପଶର୍ଯ୍ୟା, ଉଦ୍ୟାନର ମଧ୍ୟଭାଗରେ, ବୃହତଗୋଲାକାର ଶଯ୍ୟା ତଥା ରାସ୍ତାର ଦୁଇପାର୍ଶ୍ୱରେ ଥିବା ଅତି ଦୀର୍ଘ ପୁଷ୍ପଶଯ୍ୟାମାନଙ୍କରେ ଡାଲିଆ ଲଗାଯାଏ । ଏହା ବ୍ୟତୀତ ବାରଣ୍ଡା, ଛାତ ଉପର ଏବଂ ଗୃହର ସମ୍ମୁଖ ସଜାଇବା ପାଇଁ କୁଣ୍ଡରେ ଡାଲିଆ ଲଗାଯାଏ ।

**ଗ୍ଲୋରିଲିଲି** (*Gloriosa superba,* Liliaceae) ଗ୍ଲୋରିଲିଲି ଆମଦେଶର ବିଭିନ୍ନ ଅଞ୍ଚଳରେ ଏକ ଜଙ୍ଗଲି ଗଛରୂପେ ବଢ଼ିଥାଏ । ଏହାର ପାଞ୍ଚଗୋଟି ଲମ୍ବା ପାଖୁଡ଼ା ଥାଏ ଏବଂ ଗଛ ଲତା ପରି ବଢ଼େ । ବହୁ ପ୍ରକାରର ଗ୍ଲୋରିଲିଲି ଦେଖିବାକୁ ମିଳେ । ଭାରତୀୟ ଉଦ୍ଭିଦ ଔଷଧ ପରିଷଦ ବର୍ତ୍ତମାନ ୬୦ ରୁ ଅଧିକ ଜାତିର ଗ୍ଲୋରିଲିଲି ଚାଷ କରୁଛନ୍ତି । ତେବେ ଏମାନଙ୍କ ମଧ୍ୟରୁ ଛଅଟି ଜାତି ସୌନ୍ଦର୍ଯ୍ୟ ପାଇଁ ବଗିଚାରେ ଲଗାଯାଇ ପାରେ । ବର୍ଷା ଋତୁରେ ଫୁଲ ଫୁଟେ । ବର୍ଷାଦିନ ପରେ ଗଛଗୁଡ଼ିକ ମରିଯାନ୍ତି ଏବଂ ମୂଳଟି ମାଟି ଭିତରେ ସୁପ୍ତ ଅବସ୍ଥାରେ ଥାଏ । ପୁଣି ବର୍ଷାଦିନେ ଏହା ବଢ଼ି ଫୁଲ ଫୁଟେ । ଫୁଲଗୁଡ଼ିକର ପାଖୁଡ଼ା ଉପର ଅଂଶ ଲାଲ ଓ ତଳ ଅଂଶ ହଳଦିଆ । ପଟୁମାଟିରେ ଏହା ଭଲ ବଢ଼ିପାରେ । ରୂପାନ୍ତରିତ କାଣ୍ଡଦ୍ୱାରା ଏହାର ବଂଶବିସ୍ତାର କରାଯାଏ । ଏହାକୁ



ଗ୍ଲୋରିଲିଲି

ପଟୁମାଟିରେ ୨.୫ ରୁ ୩.୫ ସେ.ମି. ଗଭୀରର ସିଧା ଭାବରେ ପୋତିଦେବାକୁ ହୁଏ । ଜୁନ ମାସରେ ଏଗୁଡ଼ିକୁ ଲଗାଯାଏ । ଏହି ଗଛଗୁଡ଼ିକ ଲତାପରି ବଢ଼ୁଥିବାରୁ ବାଉଁଶର ଛୋଟ ଛୋଟ କୁଞ୍ଚ କରି, ବାଡ଼ ତିଆରି କରି ତା ଦେହରେ ମଡ଼ାଇବା ଉଚିତ । ଗଛରୁ ବେଶୀ ଫୁଲ ପାଇବା ପାଇଁ ତରଳସାର (Liquid manure) ଦେବା ଆବଶ୍ୟକ । ଗ୍ଲୋରିଲିଲିକୁ କୁଣ୍ଡରେ ଚାଷ କରାଯାଇପାରେ । କୁଣ୍ଡଗୁଡ଼ିକ ପୂରା ଖରା ପାଉଥିବା ସ୍ଥାନରେ ରଖାଯିବା ବିଧେୟ । ଏହି ଗଛରେ ବେଳେ ବେଳେ ସାଁବାଳୁଆ ପୋକ ଲାଗନ୍ତି । ସେଗୁଡ଼ିକ ହାତରେ ବାହାର କରିଦେବା ଉଚିତ ।

**ପଦ୍ମ** (*Nelumbium nelumbo,* Nymphaeaceae)- ଭାରତର ଜାତୀୟ ପୁଷ୍ପ ପଦ୍ମ ବଲବସ୍ ପୁଷ୍ପମାନଙ୍କ ମଧ୍ୟରେ ଅନ୍ୟତମ । ହଳଦିଆ ଓ ଗୋଲାପି ରଙ୍ଗର ପଦ୍ମ ଦେଖିବାକୁ ମିଳେ । ହଳଦିଆ ରଙ୍ଗର ପଦ୍ମ ଦକ୍ଷିଣ ଆମେରିକା ଓ ଗୋଲାପି ରଙ୍ଗର ପଦ୍ମ ପ୍ରାଚ୍ୟ ଭୂଖଣ୍ଡରୁ ସମ୍ଭୂତ ବୋଲି ଜଣାଯାଏ । ପଦ୍ମର ବଂଶବିସ୍ତାର ରୂପାନ୍ତରିତ କାଣ୍ଡ ଦ୍ୱାରା କରାଯାଏ । ଏହା ଉର୍ବର ପଙ୍କୁଆ ମାଟିରେ ଭଲ ବଢ଼ିଥାଏ । ଜଳୋଦ୍ୟାନ (Water gardens), ଗୁଡ଼ିକରେ ମଞ୍ଜି ତଥା ରୂପାନ୍ତରିତ କାଣ୍ଡ ଲଗାଯାଏ । ପଦ୍ମ ଲଗାଯିବା ପୂର୍ବରୁ

ଛୋଟ ଛୋଟ ବାଉଁଶ ଭୋଗେଇ କିମ୍ବା ତାଳପତ୍ର ଭୋଗେଇରେ ଭଲ ଖତ ମିଶା ମାଟିଦେଇ କାଣ୍ଡ କିମ୍ବା ମଞ୍ଜି ଲଗାଯାଇଥାଏ । ତାପରେ ଦଉଡ଼ି ସାହାଯ୍ୟରେ ଆସ୍ତେ ଆସ୍ତେ ଗଛ ବଢ଼ିବା ଅନୁପାତରେ ତଳକୁ ଖସାଇ ଦିଆଯାଏ । ନଚେତ୍ ମାଟିତଳେ ଏହାକୁ ୭.୫ ରୁ ୧୨.୬ ସେ.ମି. ଗଭୀରରେ ପୋତିବା ଦରକାର । ଫୁଲ ଫୁଟିବା ପାଇଁ ଅତି କମ୍‌ରେ ୪୫ ସେ.ମି. ଗଭୀର ପାଣି ଆବଶ୍ୟକ । ପଦ୍ମ ଶରତ ଋତୁଠାରୁ ଆରମ୍ଭକରି ବର୍ଷା ଆରମ୍ଭଯାଏ ଫୁଟିଥାଏ । ବହୁତ ପାଣି ହୋଇଗଲେ ଏହା ଫୁଟେ ନାହିଁ । ବିଭିନ୍ନ ଜାତିର ପଦ୍ମମାନଙ୍କ ମଧ୍ୟରେ *N. lutea* ଓ *N. nucifera* ପ୍ରଧାନ ।

**କଇଁ** (*Nymphaea lotus*, Nymphaeaceae)- ଗାଁଗହଳର ପୋଖରୀରେ ଫୁଟୁଥିବା ପୁଷ୍ପମାନଙ୍କ ମଧ୍ୟରେ କଇଁ ଏକ ପ୍ରଧାନ ପୁଷ୍ପ । ଏହାର ଜନ୍ମସ୍ଥାନ ଅଷ୍ଟ୍ରେଲିଆ କିମ୍ବା ଦକ୍ଷିଣ ଆଫ୍ରିକା ବୋଲି ଅନୁମାନ କରାଯାଏ । ପୃଥିବୀର ଚାରିଆଡ଼େ ୪୦ ପ୍ରକାର ଜାତିର କଇଁ ଥିବା ଜଣାଯାଏ । ଗଛଗୁଡ଼ିକ



କଇଁ

୫-୬୦ ସେ.ମି. ଉଚ୍ଚତାବିଶିଷ୍ଟ । ପତ୍ରଗୁଡ଼ିକ ଗୋଲାକାର । ଫୁଲ ଦେଖିବାକୁ ରମଣୀୟ । ଆମ ଦେଶରେ ସାଧାରଣତଃ ଗୋଲାପି, ଲାଲ, ହଳଦିଆ ନାଳ

ଓ ଧଳା ରଙ୍ଗର କଇଁଫୁଲ ଦେଖିବାକୁ ମିଳେ । ଜଳୋଦ୍ୟାନଗୁଡ଼ିକରେ ଏଗୁଡ଼ିକୁ ୪୫ ରୁ ୬୦ ସେ.ମି. ଦୂରତାରେ ଲଗାଇବାକୁ ହୁଏ । ନୂଆ ତିଆରି ଜଳୋଦ୍ୟାନଗୁଡ଼ିକରେ ତଳେ ୩୦ ସେ.ମି. ବହଳରେ ମାଟି ବିଛାଇଦେଇ ଏଥିରେ କଇଁ ଲଗାଯାଏ । ନଚେତ ଛୋଟ ଛୋଟ କୁଣ୍ଡ କିମ୍ବା ଅନ୍ୟ ପ୍ରକାର ପାତ୍ରରେ କଇଁ ମୂଳକୁ ଲଗାଯାଏ । ମଞ୍ଜିରୁ କଇଁ ଗଛ ଲଗାଇବାକୁ ହେଲେ ତାହାକୁ ପ୍ରଥମେ ପାତ୍ରରେ ଲଗାଇ ୨୨° ରୁ ୨୭° ସେଣ୍ଟିଗ୍ରେଡ଼ ଉତ୍ତାପରେ ରଖି ଗଛ ପ୍ରସ୍ତୁତ କରାଯାଏ । ତା ପରେ ସେଗୁଡ଼ିକୁ ତାଳପତ୍ର ବା ବାଉଁଶ ପାତ୍ରରେ ଲଗାଇ ପାଣି ଭିତରକୁ ଛାଡ଼ି ଦିଆଯାଏ ।.ମାର୍ଚ୍ଚ ଏବଂ ଏପ୍ରିଲ ମାସ ଗଛ ଲଗାଇବାର ପ୍ରକୃଷ୍ଟ ସମୟ । ବର୍ଷାଦିନେ ପ୍ରଚୁର ଫୁଲ ଫୁଟେ ଓ ଶୀତଦିନେ କମିଯାଏ । ଜଳୋଦ୍ୟାନ କେନାଲର କୂଳେ କୂଳେ, ଅଫିସ୍ ବା କୋଠା ଅଭ୍ୟନ୍ତରସ୍ଥ ଛୋଟ ଛୋଟ ଜଳୋଦ୍ୟାନଗୁଡ଼ିକରେ ଏଗୁଡ଼ିକୁ ଲଗାଯାଇପାରେ । ବଗିଚାରେ ଲଗାଯାଉଥିବା ସୌନ୍ଦର୍ଯ୍ୟବର୍ଦ୍ଧକ କଇଁମାନଙ୍କ ମଧ୍ୟରେ *N. odorata* ଅନ୍ୟତମ । ଏହାର ଫୁଲ ଦେଖିବାକୁ ଧଳା ଓ ସୁଗନ୍ଧଯୁକ୍ତ । ଏହା ସକାଳେ ଫୁଟି ସନ୍ଧ୍ୟାବେଳେ ମୁଦି ହୋଇଯାଏ ଓ ନୀଳ କଇଁ (N. caerulea) କମ୍ ଗଭୀର ଜଳରେ ଫୁଟେ । ଏହାର ପାଖୁଡ଼ାଗୁଡ଼ିକ ତୀକ୍ଷ୍ଣାଗ୍ର । ଫୁଲଗୁଡ଼ିକ ସକାଳେ ଫୁଟି ଅପରାହ୍ନବେଳକୁ ବନ୍ଦ ହୋଇଯାଏ । N. lutea ର ଫୁଲଗୁଡ଼ିକ ଦେଖିବାକୁ ଧଳା ଓ ସୁଗନ୍ଧହୀନ । ଏହା ସନ୍ଧ୍ୟାବେଳେ ପ୍ରସ୍ଫୁଟିତ ହୋଇ ରାତ୍ରିସାରା ଜଳୋଦ୍ୟାନର ଶୋଭା ବଢ଼ାଏ ଓ ସକାଳକୁ ବନ୍ଦ ହୋଇଯାଏ । ଚନ୍ଦ୍ରାୟିତ ଉଦ୍ୟାନ (Moonlit garden) ରେ ଏହାକୁ ଲଗାଯିବା ଉଚିତ । ସେହିପରି *N. pygmaeahelvola* ର ଫୁଲ କ୍ଷୁଦ୍ର ଓ ହଳଦିଆ । ୩୦ ସେ.ମି. ରୁ କମ୍ ଗଭୀରରେ ଏହାକୁ ଲଗାଯିବା ଉଚିତ । ଅନ୍ୟ କେତେକ ଜାତି ଭିତରେ N. pubescens, N. stellata ଏବଂ N. flava ପ୍ରଭୃତି ଅନ୍ୟତମ ।

**ସୁନସୁନିଆ** (*Oxalis* sp. Oxalidaceae)- ସୁନସୁନିଆ ଏକ ସୌନ୍ଦର୍ଯ୍ୟବର୍ଦ୍ଧକ ବଳବସ୍ ଉଦ୍ଭିଦ । ପୃଥିବୀରେ ୮୦୦ ଜାତିର ସୁନସୁନିଆ ଦେଖାଯାଏ । ଏହା ବାଡ଼ି ବଗିଚାରେ ବାଳୁଙ୍ଗା ଭଳି ବଢ଼ିଥାଏ । ପତ୍ରରେ ୩ଟି ଉପପତ୍ର ଥାଏ । ଫୁଲଗୁଡ଼ିକ ଦେଖିବାକୁ ହଳଦିଆ, ଧଳା, ଗୋଲାପି ଓ ଲାଲ ।

ଈଷତ୍ ଛାଇ ସ୍ଥାନରେ ଓ ଉର୍ବର ମାଟି ବା ପତ୍ର ପଡ଼ି ପଚିଥିବା ଅଞ୍ଚଳରେ ଭଲ ବଢ଼େ । ଗଛର ମୂଳ ଓ ପୁଆଗୁଡ଼ିକୁ ନେଇ ଏହାର ବଂଶବିସ୍ତାର କରାଯାଏ । ପୁଆ ବା ଗଛର ମୂଳଗୁଡ଼ିକୁ ମାଟିଠାରୁ ୨.୫ ସେ.ମି. କମ୍ ଗଭୀରତାରେ ପୋତାଯାଏ । ସୁନସୁନିଆକୁ ଅକ୍ଟୋବର ମାସରେ ଲଗାଯାଏ ଏବଂ ବସନ୍ତ କାଳରେ ଏଥିରେ ଫୁଲ ଫୁଟେ । ଫୁଲ ସରିଗଲେ ପତ୍ରଗୁଡ଼ିକ ମେ ମାସରେ ହଳଦିଆ ପଡ଼ି ଗଛ ମରିଯାଏ । ଏହା ପରେ ମୂଳଗୁଡ଼ିକୁ ସଂଗ୍ରହ କରି ପୁନର୍ବାର ଲଗାଇବା ସମୟ ପର୍ଯ୍ୟନ୍ତ ଘର ଭିତରେ ଥଣ୍ଡା ସ୍ଥାନରେ ରଖାଯାଏ । ଅରଣ୍ୟ ଉଦ୍ୟାନ, ବାରଣ୍ଡାପାଖ ବାକ୍ସ କିମ୍ବା ବାରଣ୍ଡାରେ ଝୁଲାଯାଇଥିବା ଛୋଟ ଛୋଟ କୁଣ୍ଡରେ ଏହାକୁ ଲଗାଯାଇ ପାରେ । ଆମ ଦେଶରେ *O. corniculata, O.rosea, O. cemtta, O. acetosella* ଓ *O. deppei* ଜାତିର ସୁନସୁନିଆ ଦେଖାଯାଏ ।

**ପରୀଲିଲି** (Zephyranthes sps., Amaryllidaceae)- ଉଦ୍ୟାନର ଘାସପଡ଼ିଆରେ ଅନାବନା ଗଛରୂପେ ପରୀଲିଲିଗୁଡ଼ିକ ଶୋଭାବର୍ଦ୍ଧନ କରିଥାନ୍ତି । ଏହା ଆମେରିକା ଉଷ୍ଣ ଜଳବାୟୁ ମଣ୍ଡଳର ଉଭିଦ । ପୃଥିବୀରେ ୫୩ଟି ଜାତିର ପରୀଲିଲି ଦେଖାଯାଏ । ଗଛଗୁଡ଼ିକ ଦେଖିବାକୁ ଛୋଟ ଘାସ ଗଛ ପରି । ଏହାର ମଝିରୁ ବାହାରୁଥିବା କାଣ୍ଡର ଅଗରେ ଗୋଟିଏ ଫୁଲ ଫୁଟେ । ମୂଳଗୁଡ଼ିକ ଦେଖିବାକୁ ଛୋଟ ଛୋଟ ପିଆଜ ପରି । ଧଳା, ଗୋଲାପି, ଲାଲ, ହଳଦିଆ ପ୍ରଭୃତି ରଙ୍ଗର ଜେଫିରାନ୍ଥସ ଦେଖିବାକୁ ମିଳେ । ଏଗୁଡ଼ିକ ବଢ଼ିବା ପାଇଁ ଉର୍ବର ମାଟି ଉପଯୁକ୍ତ ଅଟେ । ସାମାନ୍ୟ ଶୁଷ୍କ ଓ ପ୍ରଚୁର ସୂର୍ଯ୍ୟାଲୋକ ପାଉଥିବା ସ୍ଥାନରେ ଏହାକୁ ଲାଗାଯିବା ଉଚିତ । ବଲବଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । କନ୍ଦଗୁଡ଼ିକୁ ଫେବୃୟାରୀ କିମ୍ବା ମାର୍ଚ୍ଚ ମାସରେ ୧୫ ସେ.ମି. ଦୂରତାରେ ପୋତିଦେଇ ପାଣି ଦିଆଯିବା ଉଚିତ । ମେ ପରଠାରୁ ଫୁଲଫୁଟିବା ଆରମ୍ଭ ହୁଏ ଓ ଜୁଲାଇ ମାସରେ ସର୍ବାଧିକ ଫୁଲ ଆସେ । ଫୁଲ ଫୁଟିସାରିବା ପରେ ଗଛଗୁଡ଼ିକ ମରିଯାଏ । ଏହାପରେ କନ୍ଦଗୁଡ଼ିକ ସଂଗ୍ରହ କରି ବାଲି କିମ୍ବା କାଠ ବାକ୍ସରେ ରଖିଦିଆଯାଏ । ବେଳେବେଳେ ଗଛ ଲଗାଇବା ସ୍ଥାନରେ ସେଗୁଡ଼ିକୁ ଛାଡ଼ି ଦିଆଯାଏ । ବର୍ଷାଦିନେ ଏଗୁଡ଼ିକ ପୁନର୍ବାର ବଢ଼ି ସୌନ୍ଦର୍ଯ୍ୟ

ବଢ଼ାଇଥାନ୍ତି । ପରୀଲିଲି କୁଣ୍ଡରେ, ବାରଣ୍ଡାର ପୁଷ୍ପବାକ୍ସ, ସିମେଣ୍ଟରେ ତିଆରି ସାମାନ୍ୟ ଉଚ୍ଚର ଫୁଲଶର୍ଯ୍ୟା ପ୍ରଭୃତି ସ୍ଥାନରେ ଲଗାଯାଇ ପାରେ । ଏହା ବ୍ୟତୀତ ରାସ୍ତାର ଦୁଇ ପାଖରେ ଏଗୁଡ଼ିକ ଲଗାଇଲେ ପଥଧାରର ସୌନ୍ଦର୍ଯ୍ୟ ବଢ଼ିଥାଏ । ବାତାୟନ ପାର୍ଶ୍ୱରେ ଏହାକୁ ବି ଲଗାଯାଇ ପାରେ । *Z. ajax, Z. aurea, Z. glandiflora* ଓ *Z. robusta* ପ୍ରଭୃତି ପ୍ରଧାନ ପ୍ରଧାନ ପରୀଲିଲି ଅଟନ୍ତି ।

**ରଜନୀଗନ୍ଧା** (*Polianthes tuberosa*, Amaryllidaceae)- ସୁଗନ୍ଧଯୁକ୍ତ ପୁଷ୍ପମାନଙ୍କ ମଧ୍ୟରେ ରଜନୀଗନ୍ଧା (tube rose) ଅନ୍ୟତମ । କଟାଫୁଲ ବ୍ୟବସାୟ ପାଇଁ ଲଗାଯାଉଥିବା ପୁଷ୍ପମାନଙ୍କ ମଧ୍ୟରେ ଏହାର ପ୍ରାଧାନ୍ୟ ବେଶୀ । ମେକ୍ସିକୋ ଏହାର ଜନ୍ମଭୂମି ବୋଲି ବିଶ୍ୱାସ କରାଯାଏ । ଏଥିରେ ସବୁଦିନେ ଫୁଲ ଫୁଟୁଥିଲେ ବି ବର୍ଷାଦିନେ ବେଶୀ ଫୁଲ ଫୁଟେ । ଗଛଗୁଡ଼ିକ ୫୦ ରୁ ୮୦ ସେ.ମି. ଉଚ୍ଚ ହୁଏ । ଓସାରିଆ ଘାସ ପରି ପତ୍ରଗୁଡ଼ିକ ୧୫ ରୁ ୨୫ ସେ.ମି. ଲମ୍ବା ହୁଏ । ଗଛ ମଝିରୁ ଗୋଟିଏ ଶଣ୍ଢା ବାହାରି ସେଥିରେ ଫୁଲ ଫୁଟେ । ଫୁଲଗୁଡ଼ିକ ଦେଖିବାକୁ ଛୋଟ ଛୋଟ ଫନେଲ ପରି ଓ ଏହାର ରଙ୍ଗ ମହମ ଧଳା ଓ ମୃଦୁ ସୁବାସିତ । ଏକପାଖୁଡ଼ା ଓ ବହୁପାଖୁଡ଼ାଯୁକ୍ତ ଦୁଇପ୍ରକାର ରଜନୀଗନ୍ଧା ଦେଖିବାକୁ ମିଳେ । ମୂଳଗୁଡ଼ିକ ଦେଖିବାକୁ ଧଳା ଏବଂ ପୁରୁଣା ମୂଳର ଚାରିପାଖରେ ବହୁ ଛୋଟ ଛୋଟ ମୂଳ ବାହାରିଥାଏ । ସମଶୀତୋଷ୍ଣ ଜଳବାୟୁରେ ରଜନୀଗନ୍ଧାଗୁଡ଼ିକ ଭଲ ବଢ଼ନ୍ତି । ଈଷତ୍ ଛାୟାଯୁକ୍ତ ସ୍ଥାନ ଓ ଦୋରସା ମାଟି ରଜନୀଗନ୍ଧା ଚାଷପାଇଁ ଉପଯୁକ୍ତ । ବଲବ ଦ୍ୱାରା ଏହାର ବଂଶବିସ୍ତାର କରାଯାଏ । ମାର୍ଚ୍ଚ-ଏପ୍ରିଲ ମାସରେ ମୂଳଗୁଡ଼ିକୁ ୫-୭୫ ସେଣ୍ଟିମିଟର ଗଭୀରରେ ଓ ୧୫ ସେ.ମି. ଦୂରତାରେ ଲଗାଯାଏ । ବଡ଼ ବଡ଼ ବଲବଗୁଡ଼ିକରୁ ୩/୪ ମାସରେ ଫୁଲ ଫୁଟେ; କିନ୍ତୁ ଛୋଟ ବଲ୍‌ବଗୁଡ଼ିକରେ ୮/ ୧୦ ମାସ ବଢ଼ିବା ପରେ ସେଥିରେ ଫୁଲ ଆସେ । ମଝିରେ ମଝିରେ ତରଳ ସାର ଓ ଭଲ ଭାବରେ ସଢ଼ିଥିବା ଗୋବରଖତ ଗଛମୂଳରେ ଦେବା ଉଚିତ । ଗୋଟିଏ ସ୍ଥାନରେ ଏହାକୁ ବେଶୀଦିନ ରଖିଲେ ଗଛ ଗହଳିଆ ହୋଇଯାଏ । ତେଣୁ ପୁରୁଣା ପଟାଳିରୁ ମୂଳଗୁଡ଼ିକ ବାହାର କରିଦେଇ ଅନ୍ୟ ସ୍ଥାନରେ ଲଗାଯିବା ଉଚିତ । ରଜନୀଗନ୍ଧା ଘର ନିକଟସ୍ଥ ଫୁଲପଟାଳି ଓ ଲନ

ଚାରିପାଖରେ ଲଗାଯାଏ । ଟ୍ୟୁବରୋଜ କଟାଫୁଲ (Cut flower) ରୂପେ ଆଦୃତ ହେଉଥିବା ଦୃଷ୍ଟିରୁ ଏକଦଳ ଜାତିକୁ ବେଶୀ ଚାଷ କରାଯାଏ । କାରଣ ଏଗୁଡ଼ିକ ବହୁଦଳାବରଣଠାରୁ ଅଧିକ ସୁଗନ୍ଧଯୁକ୍ତ ଏବଂ ଶୀଘ୍ର ଫୁଲ ଫୁଟେ । ତେବେ ବହୁଦଳାବରଣ ଜାତିର ଶଣ୍ଢାଗୁଡ଼ିକ ଦେଖିବାକୁ ଅପେକ୍ଷାକୃତ ଅଧିକ ସୁନ୍ଦର ।

**ସର୍ବଜୟା** (*Canna* sps. Cannaceae)- ସର୍ବଜୟା ବା କେନା ଉଦ୍ୟାନର ଆକର୍ଷଣୀୟ ପୁଷ୍ପମାନଙ୍କ ମଧ୍ୟରେ ମୁଖ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଆଧୁନିକ ଯୁଗର ପ୍ରଶସ୍ତ ଉଦ୍ୟାନଗୁଡ଼ିକର ଶୋଭାବର୍ଦ୍ଧନ ପାଇଁ କେନା ଯଥେଷ୍ଟ ସାହାଯ୍ୟ କରିଥାଏ । ସର୍ବଜୟାର ରଙ୍ଗବେରଙ୍ଗ ପୁଷ୍ପପେଣ୍ଡାମାନ ବହୁଦୂରରୁ ଦର୍ଶକମାନଙ୍କର ଦୃଷ୍ଟି ଆକର୍ଷିତ କରିଥାଏ । ପୃଥିବୀରେ ୫୦ ରୁ ଅଧିକ ଜାତିର ସର୍ବଜୟା ଥିବାର ଅନୁମାନ କରାଯାଏ । କିନ୍ତୁ ବର୍ତ୍ତମାନ ଶଙ୍କର ମଞ୍ଜି ଉତ୍ପାଦନ ଯୋଗୁ ଗୋଟିଏ ଜାତିର ବହୁପ୍ରକାର କେନା ଚାଷ କରାଯାଉଛି । ଏହା ଆମେରିକା ଓ ଏସିଆର ଉଷ୍ଣ ଜଳବାୟୁ ମଣ୍ଡଳରୁ ଉତ୍ପତି ହୋଇଅଛି । ସାଧାରଣତଃ ବଗିଚାରେ ଦୁଇପ୍ରକାର ସର୍ବଜୟା ଦେଖିବାକୁ ମିଳେ, ଯଥା– ଅର୍କିଡ ଫୁଲ ଜାତୀୟ ଓ ପେଣ୍ଡା ଫୁଲ ଜାତୀୟ । ପ୍ରଥମଟିରେ ଫୁଲଗୁଡ଼ିକ କ୍ରମାନ୍ୱୟରେ ବହୁଦିନ ପର୍ଯ୍ୟନ୍ତ ଫୁଟେ; କିନ୍ତୁ ଶେଷଟିରେ ଏକାବେଳେ ବହୁ ଫୁଲ ଫୁଟି ଶୀଘ୍ର ମଉଳିଯାଏ । କେନାଗଛଗୁଡ଼ିକ ଦେଖିବାକୁ ଛୋଟ କଦଳି ଗଛପରି । ଏହାର ମାୟା କାଣ୍ଡରୁ (Pseudostem) ଏକ ସଣ୍ଢା ବାହାରି ସେଥିରେ ଫୁଲ ଫୁଟେ । ଗଛଗୁଡ଼ିକ ମାଟିଉପରେ ସିଧା ବଢ଼ନ୍ତି । ମାଟିତଳେ ରୂପାନ୍ତରିତ କାଣ୍ଡ ଅଦାପରି ବଢ଼େ ଓ ସେଥିରୁ ଅନେକ ପୁଆ ବାହାରେ । ଗୋଟିଏ ପୁଆରେ ଥରେ ଫୁଲ ଫୁଟି ସାରିବା ପରେ ତାହାକୁ କାଟି ଫିଙ୍ଗି ଦିଆଯାଏ । ସଣ୍ଢା ଅଗରେ ଫୁଲଗୁଡ଼ିକ ଏକ ଅସୀମ ସ୍ତବକ (raceme)ରେ ଫୁଟନ୍ତି । ଉଦ୍ଭିଦବିଦ୍ୟା ଦୃଷ୍ଟିକୋଣରୁ ଫୁଲଗୁଡ଼ିକ ସୃଷ୍ଟିର ଏକ ବିସ୍ମୟକର ପରିପ୍ରକାଶ । କାରଣ ପାଖୁଡ଼ାପରି ପରିଦୃଷ୍ଟ ହେଉଥିବା ଅଂଶଗୁଡ଼ିକ ହେଉଛି ଦଳାଭ ପୁଂକେଶର (Petaloid stamen) । ପ୍ରକୃତ ପାଖୁଡ଼ାଗୁଡ଼ିକ ଏହି ଅପ୍ରାକୃତ ପାଖୁଡ଼ାମାନଙ୍କ ତଳେ ରହିଥାନ୍ତି । ସେମାନଙ୍କର ସୌନ୍ଦର୍ଯ୍ୟ ନ ଥାଏ । କେନା ଲଗାଇବା ପାଇଁ

ଉର୍ବରମାଟି ଆବଶ୍ୟକ । ଏହାର ଭୂବିସ୍ତାରୀ କାଣ୍ଡଗୁଡ଼ିକ ମାଟିର ଖୁବ୍ କମ୍ ତଳେ ପ୍ରସାରିତ ହେଉଥିବାରୁ ମାଟିରେ ଥିବା ଜୈବିକ ଅଂଶ ଉପରେ ଏହାର ଅଭିବୃଦ୍ଧି ନିର୍ଭର କରିଥାଏ । ଗଛଗୁଡ଼ିକ ପ୍ରଚୁର ପରିମାଣରେ ଜଳ ଆବଶ୍ୟକ କରୁଥିଲେ ହେଁ ଜଳ ନିଷ୍କାସିତ ନ ହେଉଥିବା ମାଟିରେ ଏହା ଭଲ ବଢ଼ିପାରେ ନାହିଁ । କେନା ଲଗାଇବା ପୂର୍ବରୁ ମାଟିକୁ ଏକ ମିଟର ପର୍ଯ୍ୟନ୍ତ ଖୋଳିଦେଇ କିଛିଦିନ ଖରା ଖୁଆଇବା ଦରକାର । ତାହାପରେ ପ୍ରତି ୧୦ ବର୍ଗମିଟର ସ୍ଥାନ ପ୍ରତି ଏକଗାଡ଼ି ସଢ଼ା ଗୋବରଖତ କିମ୍ବା ପୋତାଖତ ଦେବା ଉଚିତ । ପିଲ ବା ପୁଆ ଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ମଂଞ୍ଜିରୁ ମଧ୍ୟ ଗଛ କରାଯାଇ ପାରେ । ମଞ୍ଜିକୁ ଗଜାହେବା ପାଇଁ ଏକମାସ ଲାଗେ । ତେଣୁ ସାମାନ୍ୟ ଗରମପାଣିରେ(୪୦ ଡିଗ୍ରୀ ସେ.) ୨୪ ରୁ ୪୦ ଘଣ୍ଟା ରଖିଦେଲେ ଶୀଘ୍ର ଗଜା ହୁଏ । ପୁଆଗୁଡ଼ିକ ସିଧା ଲଗାଯାଇ ପାରେ; କିନ୍ତୁ ଧାବକ କନ୍ଦ (Rhizome) ଲଗାଇଲାବେଳେ ଏଗୁଡ଼ିକୁ ୧୫ ସେ.ମି. ଲମ୍ବାରେ ୨/୩ଟି ଆଖି ଥାଇ ସଂଗ୍ରହ କରିବାକୁ ହୁଏ ଏବଂ ଅଧମିଟରରୁ ଏକମିଟର ଦୂରତାରେ ଲଗାଇବା ପରେ ଅଳ୍ପ ଅଳ୍ପ ପାଣି ଦେଇ ଗଛ ବଢ଼ିବା ଅନୁପାତରେ ଜଳସେଚନର ଅନୁପାତ ବଢ଼ାଯାଇଥାଏ । ଗଛଗୁଡ଼ିକ ଉପଯୁକ୍ତ ଭାବରେ ବଢ଼ିଲେ ଲଗାଯିବାର ୨/୩ ମାସ ମଧ୍ୟରେ ଫୁଲ ଫୁଟେ । ସର୍ବଜୟା ପଟାଳିଗୁଡ଼ିକରେ ବର୍ଷସାରା ଫୁଲ ଫୁଟେ । ପ୍ରତିବର୍ଷ ମେ ମାସରେ ପଟାଳି ଗୁଡ଼ିକୁ ୧୫ ଦିନ ପାଣିଦେବା ବନ୍ଦକରି ଧାବକ କନ୍ଦଗୁଡ଼ିକୁ ସଂଗ୍ରହ କରି ପୁଣି ଜୁନମାସରେ ଲଗାଯିବା ଉଚିତ । ଗୋଟିଏ ସ୍ଥାନରେ ଗଛ ବହୁଦିନଧରି ରହିଲେ ସର୍ବଜୟା ଗଛ କ୍ରମେ ମରିଯାଏ ଏବଂ ଭଲ ଫୁଲ ଧରେ ନାହିଁ । ବଡ଼ ବଡ଼ ଲନ୍‌ର ଚତୁଃପାର୍ଶ୍ୱ, ରାସ୍ତାର ଦୁଇ ଧାର କିମ୍ବା ଉଦ୍ୟାନର ମଧ୍ୟମଭାଗରେ ଗୋଲାକାର ପଟାଳିରେ ତଥା କୃତ୍ରିମ ହ୍ରଦଧାର ପାର୍ଶ୍ୱରେ ସର୍ବଜୟା ଲଗାଯାଇପାରେ । ପ୍ରଦର୍ଶନୀଯୋଗ୍ୟ ବଡ଼ଫୁଲ ପାଇଁ ୪୦ ସେ.ମି. ବ୍ୟାସାର୍ଦ୍ଧ ବିଶିଷ୍ଟ କୁଣ୍ଡରେ ଏହାକୁ ଲଗାଯାଇପାରେ । ବିଭିନ୍ନ ଜାତିର କେନାମାନଙ୍କ ମଧ୍ୟରେ *C. indica*, *C. feasida*, C. Specios ଓ C. latifolia ପ୍ରଧାନ ।

**ଚିତାଲିଲି** (*Belamcanda chinensis*, Iridaceae) - ଚିତାଲିଲି ବା ବେଲମକାଣ୍ଡା ଆମଦେଶର ହିମାଳୟ ପାଦଦେଶରେ ଏକଅନାବନା ଗଛରୂପେ ବଢ଼ିଥାଏ । କାଶ୍ମୀର ଉପତ୍ୟକାର ଚାରିଆଡ଼େ ବସନ୍ତକାଳରେ ଏହି ପୁଷ୍ପ ଦେଖିବାକୁ ମିଳିଥାଏ । ଗଛଗୁଡ଼ିକ ୧ ମିଟରରୁ ୧$^{1}/_{2}$ ମିଟର ଯାଏ ବଢ଼େ । ଫୁଲଗୁଡ଼ିକ ପେଣ୍ଡା ପେଣ୍ଡା ହୋଇ ଆସେ ଓ କ୍ରମାନ୍ୱୟରେ ଗୋଟିଏ ଗୋଟିଏ ଫୁଟେ । ପାଖୁଡ଼ା ଭଳି ଦେଖାଯାଉଥିବା ଅଂଶଗୁଡ଼ିକ ପ୍ରକୃତରେ ପରିଦଳ । ଉର୍ବର ଓ ନିଗିଡ଼ା ବାଲିଆମାଟିରେ ଏଗୁଡ଼ିକ ଭଲ ବଢ଼େ । ସାମାନ୍ୟ ଛାଇ ପଡୁଥିବା ସ୍ଥାନରେ ଏହାକୁ ଲଗାଇଲେ ବହୁଦିନଧରି ଫୁଲ ଫୁଟେ । ଫୁଲଗୁଡ଼ିକ ସାଧାରଣତଃ କଟା ଫୁଲରୂପେ ବ୍ୟବହାର କରାଯାଇଥାଏ । ମଞ୍ଜି ତଥା ହ୍ରସ୍ୱ ଧାବକ (Offset) ସାହାଯ୍ୟରେ ଏହାର ବଂଶବିସ୍ତାର ହୋଇଥାଏ । ଆମ ପ୍ରଦେଶରେ ଗଛରେ ମଞ୍ଜିଧରେ ନାହିଁ । ତେଣୁ ହ୍ରସ୍ୱଧାବକଗୁଡ଼ିକୁ ୮-୧୦ ସେ.ମି. ଗଭୀରରେ ପୋତିଦେଇ ଧୀରେ ଧୀରେ ପାଣି ଦିଆଯାଏ । ଗଛରେ ଫୁଲ ଫୁଟିବା ପାଇଁ ଏକ ବର୍ଷରୁ ଅଧିକ ସମୟ ଲଗେ । ଫୁଲ ଖରାଦିନ ଠାରୁ ଆରମ୍ଭ କରି ବର୍ଷା ଶେଷଯାଏ ଫୁଟିଥାଏ । ଫୁଲ ଫୁଟି ସାରିଲା ପରେ ଗଛଗୁଡ଼ିକୁ ମାଟିରୁ ଖୋଳି ନେଇ ପୁଣି ଥରେ ଲଗାଯାଏ ।

**ଚିତ୍ରସାରୁ** (Caladium sps. Araceae)- ଚିତ୍ରସାରଗୁଡ଼ିକର ଚିତ୍ରିତ ପତ୍ର ସୌନ୍ଦର୍ଯ୍ୟମୟ । ବିଭିନ୍ନ ରଙ୍ଗ ଓ ଆକୃତିର ପତ୍ରଗୁଡ଼ିକ ବର୍ଷା ଓ ଶୀତଦିନର ଆରମ୍ଭରେ ଉପଯୁକ୍ତ ଭାବରେ ବଢ଼ି ସୌନ୍ଦର୍ଯ୍ୟ ବିତରଣ କରିଥାନ୍ତି । ଖରାଦିନମାନଙ୍କରେ ଉଦ୍ଭିଦଗୁଡ଼ିକର ପତ୍ର ହଳଦିଆ ପଡ଼ି ଶୁଖିଯାଏ । ଉଷ୍ଣମଣ୍ଡଳୀୟ ଆମେରିକା ଏହାର ଜନ୍ମଭୂମି । ଉର୍ବର ଓ ଅଧିକ ଜୈବିକ ଅଂଶ ଥିବା ମାଟିରେ ଏହା ଭଲ ବଢ଼ିପାରେ । କାଦୁଆ ଓ ଚିକିଟା ମାଟି ଥିବା ସ୍ଥାନରେ, ବାଲିଆ ଓ ଦୋରସା ମାଟିରେ ସମପରିମାଣରେ ପତ୍ରସାର ମିଶାଇ ଏହାକୁ ଲଗାଇବା ଉଚିତ । ମାଟିରେ କିଛି ବାଲି ଓ ଗୁଣ୍ଡ କୋଇଲା ମିଶାଇଲେ ଗଛ ଭଲ ବଢ଼େ । ଚିତ୍ରସାରୁ ରୂପାନ୍ତରିତ କାଣ୍ଡଦ୍ୱାରା (Bulb) ବଂଶବିସ୍ତାର କରିଥାଏ । ଏହାର ଗୋଲାକାର ଧାବକ କନ୍ଦଗୁଡ଼ିକ ଖଣ୍ଡ ଖଣ୍ଡ କରି କାଟିଦେଇ

କିଛି ସମୟ ବାହାରେ ରଖିଦେଇ ଲଗାଯାଏ । ମେ ମାସରେ ଚିତ୍ରସାରୁ ଲଗାଇବା ଉଚିତ । ଏହାକୁ କୁଣ୍ଡରେ. ଲଗାଯାଇ ପାରେ । ଏହାଛଡ଼ା ବାରଣ୍ଡାର ବାକସ, ଝରକା ନିକଟରେ ବକସରେ ଏଗୁଡ଼ିକ ଲଗାଯାଇଥାଏ । ସାଧାରଣତଃ ଏହା କମ୍ ଛାୟାଯୁକ୍ତ ସ୍ଥାନମାନଙ୍କରେ ଭଲ ବଢ଼ିପାରନ୍ତି । ତେବେ ପ୍ରଚୁର ପାଣିର ସୁବିଧା ଥିଲେ ଏଗୁଡ଼ିକ ଖୋଲା ପଡ଼ିଆରେ ଲଗାଯାଇପାରିବ । ଚିତ୍ରସାରୁର ପ୍ରକୃତ ସୌନ୍ଦର୍ଯ୍ୟ ବର୍ଷାଦିନେ ଦେଖିବାକୁ ମିଳେ । ବର୍ଷାଦିନ ପରେ ପତ୍ରଗୁଡ଼ିକ ଶୁଖିଗଲେ ମୂଳଗୁଡ଼ିକୁ ଖୋଳି ୧୨ ଡିଗ୍ରୀରୁ ୧୬ ଡିଗ୍ରୀ ସେଣ୍ଟିଗ୍ରେଡ଼ ଉତ୍ତାପରେ ସାଇତି ରଖିବା ଉଚିତ । କୁଣ୍ଡରେ ଏହା ଲଗାଇ ବାରଣ୍ଡାରେ ଝୁଲାଇ ରଖିଲେ ମଧ୍ୟ ଖୁବ୍ ସୁନ୍ଦର ଦିଶେ । ଗଛ ସାମାନ୍ୟ ପୁରୁଣା ହୋଇଗଲେ ଏହାର ମଝିରୁ ଫୁଲ ବାହାରେ । ଏଗୁଡ଼ିକ ଦେଖିବାକୁ ଛୋଟିଆ ଡଙ୍ଗା ପରି । ଏଗୁଡ଼ିକୁ ପୁଷ୍ପସଜ୍ଜା ନିମନ୍ତେ ବ୍ୟବହାର କରାଯାଇ ପାରେ । ଏହା ବ୍ୟତୀତ କାଲାଡିୟମ୍‌ର ପତ୍ରଗୁଡ଼ିକ ସାମୟିକ ପୁଷ୍ପସଜ୍ଜାରେ ବ୍ୟବହାର କରାଯାଏ । ବଗିଚାରେ ଲଗାଯାଉଥିବା କାଲାଡ଼ିୟମ୍ ଜାତିମାନଙ୍କ ମଧ୍ୟରେ *C. bicolor* ଏବଂ *C. picturatum* ପ୍ରଧାନ ।

**ମାଣସାରୁ** (*Alocasia* sps. Araceae)- ଏଗୁଡ଼ିକ ଦେଖିବାକୁ ଚିତ୍ରସାରୁ ପରି; କିନ୍ତୁ ଏହାର ପତ୍ରଗୁଡ଼ିକର ଡେଙ୍ଗ ଚିତ୍ରସାରୁ ଠାରୁ ଲମ୍ବା । ବର୍ଷା ଆରମ୍ଭଠାରୁ ଶୀତଋତୁର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଏଗୁଡ଼ିକ ବଗିଚାର ସୌନ୍ଦର୍ଯ୍ୟବର୍ଦ୍ଧନ କରିଥାନ୍ତି । ଏହାର ପତ୍ରଗୁଡ଼ିକ ବିଭିନ୍ନ ଆକୃତିର ଓ ବିଭିନ୍ନ ରଙ୍ଗର ହୋଇଥାନ୍ତି । ଏହାର ପୁଷ୍ପସ୍ତବକ ଏକ ସଚ୍ଛଦ ସ୍ତବକ (Spadix) ଅଟେ । କାଲିଡ଼ିୟମ ଅପେକ୍ଷା ଏଥିରେ କମ୍ ଡିମ୍ବକ ଥାଏ । ମାଣସାରୁ ଉର୍ବର ବାଲିଆ ମାଟିରେ ଭଲ ବଢ଼େ । ଏଗୁଡ଼ିକ ବାରଣ୍ଡା ସଜାଇବା ପାଇଁ କୁଣ୍ଡରେ ଲଗାଯାଇପାରେ । କିନ୍ତୁ ଘର ପାଖର ଈଷତ୍ ଛାଇ ଅଞ୍ଚଳରେ ଏଗୁଡ଼ିକ ଭଲ ବଢ଼େ । ଧାବକ କାଣ୍ଡଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ମଞ୍ଜି ଓ ମୂଳରେ କାଣ୍ଡଭଳି ଥିବା ଅଂଶ ଓ ଭୂସ୍ତାରୀକୁ ଏହାର ବଂଶ ବିସ୍ତାର ପାଇଁ ବ୍ୟବହାର କରାଯାଇଥାଏ । ଗଛ ବଢ଼ିଲାବେଳେ ତରଳ ସାର ଦେଲେ ଗଛ ଭଲ ବଢ଼େ । ଏଗୁଡ଼ିକ ମାର୍ଚ୍ଚ ମାସରେ ଲଗାଯାଏ । ନିମ୍ନରେ କେତେକ ମାଣସାରୁର ନାମ ଦିଆଗଲା । *A. indiaca, A. macrorrniza* ଏବଂ *A. sanderiana.*

**ସୌନ୍ଦର୍ଯ୍ୟବର୍ଦ୍ଧକ ସାରୁ** (Colocasia sps. Araceae)- ଏଗୁଡ଼ିକ ଦେଖିବାକୁ କାଲାଡ଼ିଅମ ପରି । ହିମାଳୟର ପାଦଦେଶରେ ଏଗୁଡ଼ିକ ଦେଖାଯାଏ । କୋଲୋକାସିଆର ୭ ପ୍ରକାର ଜାତି ଥିବା ଅନୁମାନ କରାଯାଏ । ଏହାର ପତ୍ର ଡେମ୍ଫଗୁଡ଼ିକ କାଲାଡ଼ିଅମ ଠାରୁ ଲମ୍ବା ଏବଂ ମୂଳଗୁଡ଼ିକ ଗୋଲାକାର ସ୍ଫୀତକନ୍ଦ ଅଟେ । ଏହାର କେତେକ ଜାତିକୁ ଖାଦ୍ୟ ରୂପେ ବ୍ୟବହାର କରାଯାଇଥାଏ, କାରଣ କାଣ୍ଡରେ ଅନେକ ଶର୍କରା ଅଂଶ ଥାଏ । କନ୍ଦଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । କନ୍ଦଗୁଡ଼ିକ ଜୁନ୍ ମାସ ଆରମ୍ଭରେ ୧୦ ସେ.ମି. ଦୂରତାରେ ଲଗାଯାଏ । କୁଣ୍ଡରେ ଲଗାଇବା ପାଇଁ ୨୦ ସେ.ମି. ବ୍ୟାସାର୍ଦ୍ଧ ବିଶିଷ୍ଟ କୁଣ୍ଡ ଆବଶ୍ୟକ ହୋଇଥାଏ । କାଲାଡ଼ିଅମ ଭଳି ଏହାର ଯତ୍ନ ନିଆଯିବା ଉଚିତ । ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି ମଧ୍ୟରେ *C. afinis* ହେଉଛି ପ୍ରଧାନ । ଏଗୁଡ଼ିକ କୁଣ୍ଡରେ ଲଗାଇଲେ ଗଛଗୁଡ଼ିକ ଭଲ ବଢ଼ିଥାନ୍ତି । କମ୍ ଛାଇ ପଡୁଥିବା ସ୍ଥାନରେ କାଲାଡ଼ିଅମ୍ ସଙ୍ଗରେ ଏହାକୁ ମିଶାଇ ଏକାଠି ଲଗାଯାଇପାରେ ।

**ଏଚିମେନ୍ସ୍** (*Achimens grandiflora*, Gesneriaceae)- ଉଷ୍ଣମଣ୍ଡଳୀୟ ଆମେରିକାରେ ଜାତ ହୋଇଥିବା ଏହି ଉଦ୍ଭିଦ ୧୫ ରୁ ୨୫ ସେ.ମି. ଉଚ୍ଚା ହୁଏ । ବର୍ଷାଦିନ ସାରା ଏଥିରେ ଫୁଲ ଫୁଟେ । ଫୁଲର ରଙ୍ଗ ଓ ଆକୃତି ବିଭିନ୍ନ ପ୍ରକାର ହୋଇଥାଏ । ଏହାର ସ୍ଫୀତମୂଳ କୋନ୍ ଆକୃତିର ଓ ତାର ଚାରିପାଖେ ଅନେକ କାତି ଥାଏ । ଏହା ସହଜରେ ଭାଙ୍ଗିଯାଏ । ଏଚିମେନସ୍ କୁଣ୍ଡରେ ଲଗାଯାଏ । ୩୦ ସେ.ମି. ବ୍ୟାସାର୍ଦ୍ଧ ବିଶିଷ୍ଟ କୁଣ୍ଡର ୮/୧୦ଟି ଏଚିମେନସ୍ ମୂଳ ଲଗାଯିବା ଉଚିତ । ମୂଳଗୁଡ଼ିକ ଲଗାଇବାବେଳେ ଏହାର ତଳେ କିଛି ବାଲି ଦେବା ବିଧେୟ । ଲଗାଯାଇଥିବା କୁଣ୍ଡକୁ ଛାଇରେ ରଖାଯାଏ । ଗଛଗୁଡ଼ିକ ଚାରିଇଞ୍ଚ ଉଚ୍ଚା ହେଲା ପରେ ଏହାର ଅଗ୍ରଭାଗ ଛିଣ୍ଡାଇଦେବା ଉଚିତ । ଏହାଦ୍ୱାରା ଗଛ ବୁଦାଭଳି ବଢ଼େ । ଗଛ ଲଗାଇବାର ୩½ ମାସ ପରେ ଫୁଲ ଫୁଟିସାରିବା ପରେ ଗଛ ମରିଯାଏ ଏବଂ ତା'ପରେ ମୂଳଗୁଡ଼ିକ ସଂଗ୍ରହ କରି ଥଣ୍ଡା ସ୍ଥାନରେ ରଖାଯାଏ । ଆମ ଦେଶରେ ଏଗୁଡ଼ିକ ଏପ୍ରିଲ ମାସରେ ଲଗାଯିବା ଉଚିତ । ଏଚିମେନ୍ସ୍ କନ୍ଦଦ୍ୱାରା ଲଗାଯାଉଥିଲେ ହେଁ

ଏହାର ନୂତନ ଡାଳଗୁଡ଼ିକୁ କାଟି ବାଲିରେ ପୋତିଦେଲେ ଡାଲିଆ ପରି ଖୁବ୍ ଶୀଘ୍ର ଚେର ଲାଗିଯାଏ । ଏହା ନୂଆ ଭେରାଇଟି ମଞ୍ଜିରୁ କରାଯାଏ । କୁଣ୍ଡ ବ୍ୟତୀତ ଏନିମେନ୍‌ସକୁ ଅରଣ୍ୟ ଉଦ୍ୟାନ, ଦୋଳନ ବକ୍ସ, ବାରଣ୍ଡା ପାର୍ଶ୍ୱ ଓ ବାତାୟନ ପାର୍ଶ୍ୱରେ ଲଗାଯାଇ ପାରେ । ବାଇଗଣି ରଙ୍ଗର ଫୁଲ ଫୁଟୁଥିବା ଏଚିମେନ୍‌ସ୍ ସମତଳ ଅଞ୍ଚଳରେ ଭଲ ବଢ଼େ । ଏହାର ଭେରାଇଟି ଆଲବା ମାକ୍ସିମାରେ ବଡ଼ ବଡ଼ ଧଳା ଫୁଲ ଫୁଟେ ।

**ଏସିଡ଼ାନ୍ଥେରା** (*Acidanthera bicolor,* **Iridaceae**)- ଉଷ୍ଣମଣ୍ଡଳୀୟ ଦକ୍ଷିଣ ଆଫ୍ରିକାରେ ଏହାର ୨୦ଟି ଜାତି ଥିବାର ଅନୁମାନ କରାଯାଏ । ଏହା ଗ୍ଲାଡ଼ିଓଲସ୍‌ର ନିକଟ ସମ୍ପର୍କୀୟ ଉଦ୍ଭିଦ ଅଟେ । ଭାରତରେ ଏଗୁଡ଼ିକ ଶୀତଦିନେ ଫୁଟେ । ଧନୁପରି ଏହାର କାଣ୍ଡଗୁଡ଼ିକ ୭୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଏ । ସୁଗନ୍ଧଯୁକ୍ତ ଫୁଲଗୁଡ଼ିକ ଛାଡ଼ି ଛାଡ଼ି ଫୁଟେ । ଏହାର ଧନକନ୍ଦା (Corm) ଗୁଡ଼ିକ ଗୋଲାକାର ଅଟେ । ଗଛଗୁଡ଼ିକ ଧନକନ୍ଦା ବା ମଞ୍ଜିଦ୍ୱାରା ଲଗାଯାଏ । ଲଗାଯିବାର ୨/୩ ମାସ ପରେ ଫୁଲ ଫୁଟେ । ଏଗୁଡ଼ିକ କୁଣ୍ଡ, ଅରଣ୍ୟ ଉଦ୍ୟାନ ଏବଂ ଶାକୀୟ ଶୋଭାବର୍ଦ୍ଧକ ଉଦ୍ଭିଦ ପଟାଳିଗୁଡ଼ିକରେ ଲଗାଯାଏ । ଏହାର ସ୍ତବକଗୁଡ଼ିକ ଗୃହ ସଜାଇବା ପାଇଁ କଟା ଫୁଲ ରୂପେ ବ୍ୟବହାର କରାଯାଇଥାଏ ।

**ଏଗାପାନ୍ଥସ୍** (*Agapanthus africanus,* Liliaceae)- ଏଗୁଡ଼ିକ ସାଧାରଣତଃ ସମୁଦ୍ରପତନଠାରୁ ଆରମ୍ଭ କରି ୨୦୦୦ ରୁ ୩୦୦୦ ଫୁଟ ଉଚ୍ଚ ସ୍ଥାନରେ ଲଗାଯାଇ ପାରିବ । ଗଛଗୁଡ଼ିକ ବହୁବର୍ଷୀ । ଆର୍ଦ୍ର ଜଳବାୟୁରେ ଏହା ଭଲ ବଢ଼େ ନାହିଁ । ଗଛଗୁଡ଼ିକର ଉଚ୍ଚତା ୧ ମିଟର ପର୍ଯ୍ୟନ୍ତ ହୁଏ । ପତ୍ରଗୁଡ଼ିକ ଚିରହରିତ୍ । ଫୁଲଗୁଡ଼ିକ ଗୋଟିଏ ଉଚ୍ଛତ୍ର (Umbel) ସ୍ତବକରେ ଫୁଟେ ଓ ଦେଖିବାକୁ ଛୋଟ କାହାଳୀ ପରି ଓ ବିଭିନ୍ନ ଜାତିରେ ବିଭିନ୍ନ ରଙ୍ଗର ଫୁଲଫୁଟେ । ଏହାର ହ୍ରସ୍ୱଧାବକ (Offset) କାଣ୍ଡଦ୍ୱାରା ଗଛ ଲଗାଯାଏ । ଉର୍ବର ଓ ଉତ୍ତମ ଜଳ ନିଷ୍କାସନ ହେଉଥିବା ସ୍ଥାନରେ ଏହା ଭଲ ବଢ଼େ । ଥରେ ଗଛ ଲାଗିଲେ ଏହାକୁ ୩/୪ ବର୍ଷଯାଏ ବଦାଳଇବା ଅନୁଚିତ । ଏଗୁଡ଼ିକ କୁଣ୍ଡ, କେନାଲକୂଳ

ଓ ବହୁବାର୍ଷିକ ଶାକୀୟ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦ ପଟାଳିରେ ଲଗାହୁଏ । ଏହାର ଜାଇଗାଣ୍ଟିଅସ (Giganteus) କିସମର ଗଛ ୧½ ମିଟରେ ଯାଏ ବଢ଼େ । ଏହାର ଫୁଲର ରଙ୍ଗ ଗାଢ଼ନୀଳ, କିନ୍ତୁ ମଲ୍‌ଟିଫ୍ଲୋରସ୍ ଓ ମ୍ୟାକ୍‌ସିମସ୍ ଜାତିରେ ନୀଳରଙ୍ଗର ଫୁଲ ଫୁଟେ ।

**ଏମାରିଲିସ୍** (Hippeastrum sps. Amaryllidaceae) - ଦକ୍ଷିଣ ଆମେରିକୀୟ ଏହି ଉଦ୍ଭିଦର ସୌନ୍ଦର୍ଯ୍ୟଯୁକ୍ତ ପୁଷ୍ପ ପାଇଁ ବହୁ ପରିମାଣରେ ଚାଷ କରାଯାଏ । ଗ୍ରୀଷ୍ମକାଳରେ କ୍ରାନ୍ତିମଣ୍ଡଳରେ ଯେତେବେଳେ ବଗିଚାର ସୌନ୍ଦର୍ଯ୍ୟ ହ୍ରାସ ପାଇବାକୁ ବସେ ସେତେବେଳେ ଏମାରିଲିସ୍ ବଗିଚାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ଗଛଗୁଡ଼ିକ ଦେଖିବାକୁ ଲିଲି ଗଛ ପରି । ଏହାର ମଝିରୁ ଗୋଟିଏ ସଣ୍ଢା ବାହାରି ତାହାରି ଅଗ୍ରରେ ୨ ରୁ ୪ଟି ତୂରୀପରି ଫୁଲ ଫୁଟେ । ଫୁଲଗୁଡ଼ିକର ରଙ୍ଗ ଧଳାଠାରୁ ଆରମ୍ଭକରି ଗାଢ଼ଲାଲ ପର୍ଯ୍ୟନ୍ତ ହୋଇଥାଏ । ବେଳେବେଳେ ଫୁଲଗୁଡ଼ିକରେ ଛୋଟ ଛୋଟ ଦାଗ ଥାଏ । ଏଗୁଡ଼ିକ ଲନ ଚାରିପାଖ, ଗୃହର ଚତୁଃପାର୍ଶ୍ୱରେ ଓ କୁଣ୍ଡରେ ଲଗାଯାଇପାରେ । ରାସ୍ତାର ଦୁଇପାଖରେ ଏଗୁଡ଼ିକ ଲଗାଇଲେ ବଗିଚାରେ ସୌନ୍ଦର୍ଯ୍ୟ ବଢ଼ିଥାଏ । ଏଗୁଡ଼ିକୁ ହ୍ରସ୍ୱଧାବଙ୍କ କାଣ୍ଡ ଦ୍ୱାରା ଲଗାଯାଇଥାଏ । ଗଛଗୁଡ଼ିକୁ ଜାନୁୟାରୀ କିମ୍ବା ଡିସେମ୍ବର ମାସରେ ଲଗାଯାଏ । ୧୫ ସେ.ମି. ବ୍ୟାସର୍ଦ୍ଧବିଶିଷ୍ଟ କୁଣ୍ଡରେ ଏହାକୁ ଲଗାଯାଏ । ଗଛରେ ଫେବୃୟାରୀ ମାସରେ ଫୁଲ ଫୁଟେ । ଫୁଲ ଫୁଟି ଝଡ଼ିସାରିବା ପରେ ମୂଳଗୁଡ଼ିକୁ ସଂଗ୍ରହକରି ଥଣ୍ଡା ଜାଗାରେ ରଖାଯାଏ ।

**ଏନିମୋନ** (*Anemone* sps. Ranunculaceae) - ଏନିମୋନ ଫୁଲଗୁଡ଼ିକ ଦେଖବାକୁ ସେବତୀ ପରି । ଗଛଗୁଡ଼ିକ ଖର୍ବାକୃତି । ଏହାର ବଂଶବିସ୍ତାର କନ୍ଦା ଓ ମଞ୍ଜି ଦ୍ୱାରା ହୋଇଥାଏ । ଏଗୁଡ଼ିକ ସାଧାରଣତଃ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଲଗାଯାଏ । ୨୫ ସେ.ମି. କୁଣ୍ଡରେ ୩ ସେ.ମି. ଗଭୀରରେ ୨/୩ଟି କନ୍ଦା ଗୋଟିଏ ବାଲିର ଆସ୍ତରଣ ଦେଇ ପୋତି ଦିଆଯାଏ । ଏଗୁଡ଼ିକ ଅଗଷ୍ଟ ସେପ୍‌ଟେମ୍ବରରେ ଲଗାଯାଏ ଓ ୬ ମାସରେ ଫୁଲ ଫୁଟେ । ପୁରୁଣା ଗଛରେ ବଡ଼ ବଡ଼ ଫୁଲ ଫୁଟେ । *A. coronaria* ଶଙ୍କର ଜାତୀୟ ଅଟେ ।

**କ୍ଲିଭିଆ** (Clivia sps. Amaryllidaceae)- ଦକ୍ଷିଣ ଆଫ୍ରିକୀୟ ଏହି ଉଦ୍ଭିଦଗୁଡ଼ିକ ଦେଖିବାକୁ ଲିଲି ପରି । ପତ୍ରଗୁଡ଼ିକର ରଙ୍ଗ ସବୁଜ ଓ ଏଥିରେ ଫନେଲ ଆକୃତିର ହଳଦିଆ ଫୁଲ ଫୁଟେ । ଫୁଲଗୁଡ଼ିକ ଗୋଟିଏ ଯୌଗିକ ସ୍ତବକରେ ଫୁଟିଥାଏ । ଏଗୁଡ଼ିକ ସାଧାରଣତଃ ୨୫ ସେ.ମି. ବ୍ୟାସାର୍ଦ୍ଧବିଶିଷ୍ଟ କୁଣ୍ଡରେ ଲଗାଯାଏ । ମୂଳ କନ୍ଦା ଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ଏହାର ମଞ୍ଜିରୁ ଗଛ କଲେ ଫୁଲ ଫୁଟିବାକୁ ୩/୪ ବର୍ଷ ଲଗେ । ଡିସେମ୍ବର ମାସରେ ଗଛ ଲଗାଯିବା ଉଚିତ । ଖରାଦିନେ ଏଥିରେ ଫୁଲ ଫୁଟେ । C. miniara ରେ କମଳା ରଙ୍ଗର ଫୁଲ ଫୁଟେ ।

**ସୁଖଦର୍ଶନ** (Crinum sps. Amaryllidaceae)- ଏଗୁଡ଼ିକ ଭାରତର ସବୁ ଉଦ୍ୟାନରେ ପ୍ରାୟ ଦେଖାଯାଇଥାଏ । ଗଛଗୁଡ଼ିକ ଦେଖିବାକୁ ଆମାରିଲିସ ପରି । ଫୁଲର ରଙ୍ଗ ଧଳା କିମ୍ବା ଲାଲ ଦାଗଯୁକ୍ତ ହୋଇଥାଏ । ଖରାଦିନେ ଏଥିରେ ଫୁଲ ଫୁଟେ । ସୁଖଦର୍ଶନ ସାଧାରଣତଃ ୨ ପ୍ରକାରର । ପ୍ରଥମଟି ଚିରହରିତ ଓ ଦ୍ୱିତୀୟଟି ଋତୁପାତୀ (deciduous) ଅଟେ । ଏଗୁଡ଼ିକର ବଂଶବିସ୍ତାର ହ୍ରସ୍ୱଧାବକ ଦ୍ୱାରା ହୋଇଥାଏ । ଗଛଗୁଡ଼ିକ ଅଳ୍ପ ଯତ୍ନରେ ବଢ଼ିପାରନ୍ତି । ଭଲ ମାଟି ଓ ପ୍ରଚୁର ସୂର୍ଯ୍ୟାଲୋକ ପାଉଥିବା ସ୍ଥାନରେ ଏଗୁଡ଼ିକ ଭଲ ବଢ଼ନ୍ତି । ଫୁଲ ଆସିବା ସମୟରେ ଗଛଗୁଡ଼ିକରେ ସାଁବାଳୁଆ ଲାଗିବାର ଦେଖାଯାଏ । ବିଭିନ୍ନ ପ୍ରକାରର ସୁଖଦର୍ଶନମାନଙ୍କ ମଧ୍ୟରେ *A. asiaticum, C. longiflorum* ଓ *C. mooreii* ପ୍ରଧାନ ।

**କୁପେରାନ୍ଥସ୍** (*Cooperanthus* sps. Amaryllidaceae)- ଏଗୁଡ଼ିକ ଦେଖିବାକୁ ଜେଫରାନ୍ଥସ୍ ପରି । ଧଳା, ଗୋଲାପି, କମଳା ଓ ହଳଦିଆ ରଙ୍ଗର ଫୁଲ ଏଥିରେ ଫୁଟିଥାଏ । ଜେଫିରାନ୍ଥସ ଭଳି ଏହା ବର୍ଷାଦିନେ ନ ଫୁଟି ବସନ୍ତକାଳରେ ଫୁଟେ । ଏଗୁଡ଼ିକର ଲଗାଇବା ପ୍ରଣାଳୀ ଜେଫିରାନ୍ଥସ ଭଳି ।

**କୋଷ୍ଟସ** (Costus sps. Zingiberaceae)- ଏହାରେ ସୌନ୍ଦର୍ଯ୍ୟବର୍ଦ୍ଧକ ପତ୍ରଗୁଡ଼ିକ ଓ ଯୌଗିକ ସ୍ତବକରେ ଫୁଟିଥିବା ଫୁଲ ପାଇଁ ଏହାକୁ ବଗିଚାରେ ଚାଷ କରାଯାଇଥାଏ । ବେଶୀ ଜୈବିକ ଅଂଶ ଥିବା ମାଟି ଏବଂ କମ୍

ଆଲୋକ ପଡୁଥିବା ସ୍ଥାନରେ ଭଲ ବଢ଼େ । ଗଛଗୁଡ଼ିକ ଅରଣ୍ୟ ଉଦ୍ୟାନ ଓ କୁଣ୍ଡରେ ଲଗାଯାଇଥାଏ । ଏହାର ବଂଶବିସ୍ତାର ଧାବକ କନ୍ଦା ଦ୍ୱାରା ହୋଇଥାଏ । *C. speciosus* ର ଫୁଲଗୁଡ଼ିକ ଧଳା ଓ ଏହାର ଉଚ୍ଚତା ୧୨୦ ରୁ ୧୫୦ ସେ.ମି. ମଧ୍ୟରେ ହୋଇଥାଏ । C. igneus ରେ କମଳାରଙ୍ଗର ଫୁଲ ଫୁଟେ ଓ ଏହା ୬୦ ସେ.ମି. ଉଚ୍ଚ ହୁଏ । ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତିଗୁଡ଼ିକ ମଧ୍ୟରେ *C. elegance, C. pictus* ପ୍ରଭୃତି ପ୍ରଧାନ ।

**ସାଇକ୍ଲାମେନ୍** (*Cyclamen* sps. Primulaceae) ସାଇକ୍ଲାମେନ ହିମାଳୟ'ପାଦଦେଶରେ ଥିବା ଗ୍ରୀଷ୍ମନିବାସଗୁଡ଼ିକରେ ଦେଖିବାକୁ ମିଳେ । ସମତଳ ଅଞ୍ଚଳରେ ଏଗୁଡ଼ିକ ଲଗାଯାଇପାରିବ ନାହିଁ । କାରଣ ଏହା ୧୦° ରୁ ୧୫° ସେ. ମଧ୍ୟରେ ବଢ଼ିଥାଏ । ଫୁଲଗୁଡ଼ିକ ଦାର୍ଜିଲିଂ, ସିମଳା ପ୍ରଭୃତି ଅଞ୍ଚଳରେ ଅକ୍ଟୋବର ମାସରେ ଫୁଟିଥାଏ । ବିଭିନ୍ନ ରଙ୍ଗର ସାଇକ୍ଲାମେନ ଦେଖିବାକୁ ମିଳିଥାଏ । ବଗିଚାରେ ଲଗାଯାଉଥିବା ସାଇକ୍ଲାମେନ୍‌ର ବିଭିନ୍ନ୍‌ଜାତି ମଧ୍ୟରେ *C. perspicum, C. africanum, C. ebericum, C. neopolitamum* ପ୍ରଭୃତି ପ୍ରଧାନ । ଏହାର କନ୍ଦାଗୁଡ଼ିକ ୧୫ ରୁ ୩୦ ସେ.ମି. କୁଣ୍ଡରେ ଲଗାଯାଏ । ଲଗାଯିବାର ୮/୧୦ ମାସ ପରେ ଫୁଲ ଫୁଟେ । ଏଗୁଡ଼ିକୁ ଚିନାମାଟିରେ କୁଣ୍ଡର ଲଗାଇଲେ ଏହାର ସୌନ୍ଦର୍ଯ୍ୟ ବଢ଼ିଥାଏ । ଗୋଟିଏ କୁଣ୍ଡରେ ପ୍ରାୟ ୩୦ ରୁ ୪୦ ଯାଏ ଫୁଲ ଫୁଟେ । ଫୁଲ ଫୁଟିସାରିଲା ପରେ କୁଣ୍ଡଗୁଡ଼ିକୁ ନେଇ ଗୃହରେ ଅଭ୍ୟନ୍ତରରେ ସଜାଇଲେ ସୁନ୍ଦର ଦେଖାଯାଏ ।

**ନାର୍ସିସସ୍** (Narcissus sps. Amaryllidaceae)- ନାର୍ସିସସ୍ (Daffodil) ହିମାଳୟର ପାଦଦେଶରେ ଥିବା ପାର୍ବତ୍ୟ ଅଞ୍ଚଳରେ ଏବଂ କାଶ୍ମୀର ଉପତ୍ୟକାରେ ବହୁଳ ଭାବରେ ଫୁଟେ । ଏହାର ଫୁଲ ଆକୃତିକୁ ତୁଳନା କରି ଏହାକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା- ଟ୍ରମ୍ପେଟ ନାର୍ସିସସ, ଲାର୍ଜକପ, ସ୍ମଲକପ ଓ ସାଇକ୍ଲାମେନ । ନାର୍ସିସସ୍‌ର ହଳଦିଆରଙ୍ଗ ଫୁଲ ଜାତିକୁ ଡାଫୋଡିଲ ଏବଂ ଧବଳରଙ୍ଗ ଜାତିକୁ ନାର୍ସିସସ୍ କହନ୍ତି । ନାର୍ସିସସ୍‌ର କନ୍ଦାକୁ ଜମିରେ ୮/୧୦ ସେ.ମି. ଗଭୀରରେ ଓ ୨୦ ସେ.ମି. ଦୂରତାରେ

ଲଗାଯାଇ କିଛି ପାଳ ଘୋଡ଼ାଇଦେବା ଉଚିତ । କନ୍ଦାଗୁଡ଼ିକ ଗଜା ହେଲା ପରେ ସେଗୁଡ଼ିକୁ ନିୟମିତ ଭାବରେ ପାଣିଦେବା ଦରକାର । ଥରେ ଗଛ ଲାଗିଲେ ତାକୁ ୩/୪ ବର୍ଷ ପର୍ଯ୍ୟନ୍ତ ବଦଳାଇବା ଦରକାର ପଡ଼େନାହିଁ । ଫୁଲଗୁଡ଼ିକ ବସନ୍ତ ଋତୁରେ ଫୁଟେ । ପ୍ରଧାନ ପ୍ରଧାନ ଡାଫୋଡ଼ିଲ ଜାତିଗୁଡ଼ିକ ହେଲା *N. pseudonarcissus, N. trianires, N. tazetta, N. jonquilla* ଓ *N. poeticus* ।

**ୟୁକାରିସ୍** (*Eucharis grandiflora*, Amaryllidaceae)- ୟୁକାରିସ ୪୫ ସେ.ମି. ପର୍ଯ୍ୟନ୍ତ ଉଚ୍ଚା ହୁଏ । ଫୁଲଗୁଡ଼ିକ ରଙ୍ଗ ଧଳା ଓ ସୁଗନ୍ଧଯୁକ୍ତ । ସଣ୍ଢାରେ ୫ ରୁ ୭ ଟି ଫୁଲ ଫୁଟେ । ଏହାର ମୂଳଗୁଡ଼ିକୁ ବର୍ଷାଦିନେ ଲଗାଯାଏ । ଫୁଲଗୁଡ଼ିକ ଶୀତଦିନେ ଫୁଟେ । ଗଛ ବଢ଼ିବା ବେଳେ ତରଳସାର ସର ଦେବା ଉଚିତ । ଏହାକୁ କୁଣ୍ଡରେ ଲଗାଇବା ଉଚିତ ।

**ୟୁରିକ୍ଲେସ୍** (Eurycles sylvestris, Amaryllidaceae)- ଏହା ବ୍ରିସବେନଲିଲି ନାମରେ ପରିଚିତ । ଫୁଲଗୁଡ଼ିକର ରଙ୍ଗ ଧଳା ଓ ଦେଖିବାକୁ ୟୁକାରିସ ଫୁଲ ପରି । ସଣ୍ଢାର ଉଚ୍ଚତା ୩୦ ରୁ ୫୦ ସେ.ମି. ହୋଇଥାଏ । ଏହାକୁ କୁଣ୍ଡରେ ଲଗାଯିବା ଉଚିତ ।

**ଫ୍ରିସିଆ** (*Fricia refracta*, Iridaceae)- ଏଗୁଡ଼ିକ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଫୁଟିଥାଏ । ପତ୍ରଗୁଡ଼ିକ ସଂକୀର୍ଣ୍ଣ ଓ କ୍ଷୁଦ୍ରାକାର । ସଣ୍ଢାର ଗୋଟିଏ ପଟେ ଚଳୁ ଉପରଯାଏ ଫୁଲ ଫୁଟେ । ହାଲୁକା ଉର୍ବର ମାଟିରେ ଧନକନ୍ଦଗୁଡ଼ିକ ଅକ୍ଟୋବର ମାସରେ ଲଗାଯିବା ଉଚିତ । ଗୋଟିଏ ୩୦ ସେ.ମି. କୁଣ୍ଡରେ ୫/୬ଟି କନ୍ଦ ଲଗାଯାଇପାରେ । କନ୍ଦ ଲଗାଇବା ପାରେ କୁଣ୍ଡ ଅନ୍ଧକାର ସ୍ଥାନରେ ପତ୍ର ବାହାରିବା ପର୍ଯ୍ୟନ୍ତ ରଖାଯାଏ । ଫୁଲ ଧରିଲା ପରେ ଗୋଟିଏ କାଠିରେ ଏହାକୁ ବାନ୍ଧି ଉପରକୁ ଟେକି ରଖାଯାଏ । ଏହାର ଫୁଲ ଧଳା କିନ୍ତୁ Odorata ଉପଜାତିର ଫୁଲ ହଳଦିଆରଙ୍ଗ ଅଟେ । ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତିମାନଙ୍କ ମଧ୍ୟରେ F. armstongi ଗୋଲାପ ଫୁଲ ଓ F. hybrida ରେ ବିଭିନ୍ନ ରଙ୍ଗର ପୁଷ୍ପ ଅଟେ ।

**ଗ୍ଲାଡ଼ିଓଲସ୍** (Gladiolus sps. Iridaceae)- କଟାଫୁଲ ମାଇଁ ବ୍ୟବସାୟକ ଭିତ୍ତିରେ ଚାଷ କରାଯାଉଥିବା ଫୁଲମାନଙ୍କ ଭିତରେ ଗ୍ଲାଡ଼ିଓଲସ୍ ଏକ ପ୍ରଧାନ ପୁଷ୍ପ । ସାମାନ୍ୟ ଉତ୍ତାପ ଓ ବାୟୁରେ ଅଧିକ ଜଳୀୟ ଅଂଶ ଥିବା ସ୍ଥାନଗୁଡ଼ିକରେ ଏଗୁଡ଼ିକ ଭଲ ବଢ଼ିଥାଏ । ସମତଳ ଅଞ୍ଚଳଗୁଡ଼ିକରେ ଏହା ବସନ୍ତକାଳରେ କିନ୍ତୁ ପାର୍ବତ୍ୟ ଅଞ୍ଚଳରେ ଜୁଲାଇଠାରୁ ସେପ୍‌ଟେମ୍ବର ମାସରେ ଫୁଟିଥାଏ । ଗ୍ଲାଡ଼ିଓଲସ୍‌ରେ ପ୍ରାୟ ସବୁରଙ୍ଗର ଫୁଲ ଦେଖିବାକୁ ମିଳିଥାଏ । ଏହାର ଉଚ୍ଚତା ୭୫ ସେ.ମି. ରୁ ୧୭୫ ସେ.ମି. ଯାଏ ହୋଇଥାଏ । ଫୁଲଗୁଡ଼ିକ ଦେଖିବାକୁ ଫନେଲ ଭଳି ଓ ସଣ୍ଢାରେ ତଳୁ ଉପରଯାଏ ଆସ୍ତେ ଆସ୍ତେ ଫୁଟେ । ଗ୍ଲାଡ଼ିଓଲସ୍ ଫୁଲର ଆକୃତିକୁ ଧରି ତିନିଭାଗରେ ବିଭକ୍ତ କରାଯାଏ, ଯଥା– ଗ୍ରାଣ୍ଡିଫ୍ଲୋରା, ପ୍ରାଇମୁଲାକୃତି ଓ କ୍ଷୁଦ୍ର ପ୍ରାଇମୂଲାକୃତି । ସାମାନ୍ୟ ଅମ୍ଳ ମାଟିରେ ଏହା ଭଲ ବଢ଼େ । ଗ୍ଲାଇଓଲସ ଲଗାଯିବା ପୂର୍ବରୁ ଫୁଲ ପଟାଳିଗୁଡ଼ିକରେ ଯଥେଷ୍ଟ ପରିମାଣରେ ଖତ ଓ କୁଣ୍ଡଗୁଡ଼ିକରେ ପତ୍ରଖତ ଦେବା ଉଚିତ । କୁଣ୍ଡ ମିଶ୍ରଣରେ କିଛି ବାଲି ଓ କୋଇଲାଗୁଣ୍ଡ ମିଶାଇଲେ ଗଛ ଭଲ ବଢ଼େ । ଗ୍ଲାଡ଼ିଓଲସ୍‌ର ବଂଶବିସ୍ତାର ଧନକନ୍ଦା କିମ୍ବା ଉପଧନକନ୍ଦାଗୁଡ଼ିକ ଦ୍ୱାରା ହୋଇଥାଏ । ମଞ୍ଜି ଗଛରେ ଫୁଲ ଫୁଟିବାକୁ ୪ ବର୍ଷ ଲାଗେ । କନ୍ଦାଗୁଡ଼ିକୁ ମାଟିରେ ଉର୍ବରତା ଅନୁସାରେ ୧୦-୧୫ ସେ.ମି. ଗଭୀରତାରେ ପୋତାଯାଏ । କନ୍ଦା ଲଗାଯିବାର ୨/୩ ମାସ ପରେ ଫୁଲ ଆସେ । ସମତଳ ଅଞ୍ଚଳରେ ଅକ୍ଟୋବର ମାସରେ ଓ ପାର୍ବତ୍ୟ ଅଞ୍ଚଳରେ



ଗ୍ଲାଡ଼ିଓଲସ୍

ଫେବୃୟାରୀ ମାସରେ ଗଛ ବଢ଼ିଲାବେଳେ ତରଳସାର ଦେବା ଉଚିତ। ଗ୍ଲାଡ଼ିଓଲସ୍ ଦୁଇମାସ ପର୍ଯ୍ୟନ୍ତ ଫୁଟେ। ଏହାକୁ ଫୁଲ ପଟାଳି, ପଥଧାର, ଅରଣ୍ୟ ଉଦ୍ୟାନ ଓ କୁଣ୍ଡରେ ଲଗାଯାଇପାରେ। ସୌନ୍ଦର୍ଯ୍ୟବର୍ଦ୍ଧକ ଗ୍ଲାଡ଼ିଓଲସ୍ ଜାତିମାନଙ୍କ ମଧ୍ୟରେ G. primulinus (ଧଳାଫୁଲ) G. blandas (ଲାଲାଫୁଲରେ ଧଳାଦାଗ) G. Saundersiip (କମଳା ରଙ୍ଗର ଫୁଲ), G. alatus (ଗୋଲାପି ଫୁଲ) ଏବଂ G. biflorus (ନୀଳ ରଙ୍ଗର ଫୁଲ) ପ୍ରଭୃତି ପ୍ରଧାନ।

**ଫ୍ରିଟିଲାରିଆ** (*Fritillaria imperialis,* Liliaceae)- ଏଗୁଡ଼ିକ ହିମାଳୟ ଓ ନୀଳଗିରିର ପାର୍ବତ୍ୟ ଅଞ୍ଚଳରେ ଜଙ୍ଗଲି ଗଛରୂପେ ଦେଖାଯାଏ। ଗଛଗୁଡ଼ିକରେ ମାର୍ଚ୍ଚ ଓ ଏପ୍ରିଲ ମାସରେ ଫୁଲ ଆସେ। ପତ୍ରଗୁଡ଼ିକ ବିପରୀତପାର୍ଶ୍ୱୀ ଓ ୧୨ ରୁ ୧୫ ସେ.ମି. ଦୈର୍ଘ୍ୟ। ମୂଳ ଦ୍ୱାରା ଏହାର ବଂଶବିସ୍ତାର କରାଯାଏ। ମୂଳଗୁଡ଼ିକୁ ଲଗାଇସାରିବା ପରେ ଏହାକୁ ସୂର୍ଯ୍ୟ ଉତ୍ତାପରୁ ଦୂରେଇ ରଖିବା ଉଚିତ। ଗଛ ବଢ଼ିବା ସମୟରେ ତରଳସାର ଦେଲେ ଭଲ ବଢ଼େ। ଗଛ ଲଗାଯିବାର ବର୍ଷକ ପରେ ସାଧାରଣତଃ ଫୁଲ ଆସେ। ସମୟେ ସମୟେ ଏଥିରୁ ହ୍ରସ୍ୱଧାବକ ବାହାରେ। ସେଗୁଡ଼ିକୁ ସାଙ୍ଗେ ସାଙ୍ଗେ କାଟି ଲଗାଇବା ଉଚିତ। ଏହାର ଫୁଲ ତାମ୍ରବର୍ଣ୍ଣ। ଅରଣ୍ୟଉଦ୍ୟାନ, କୁଣ୍ଡ, ଲନର ଚାରିପଟେ ଏହାକୁ ଲଗାଯାଇପାରେ। ଏହାର ଫୁଲ ସଣ୍ଢାଗୁଡ଼ିକୁ ଅନେକ ସମୟରେ କଟାଫୁଲରୂପେ ବ୍ୟବହାର କରାଯାଇପାରେ। F. roylei ଜାତିର ଫୁଲର ରଙ୍ଗ ହଳଦିଆ ଓ ଏହାର ଫୁଲଗୁଡ଼ିକ ସାପଫଣା ପରି ଦେଖାଯାଏ।

**ଗ୍ଲକ୍ସିନିଆ** (*Gloxinia maculata,* Gesneriaceae)- ଗ୍ଲକ୍ସିନିଆ ଗଛଗୁଡ଼ିକ ୩୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୁଅନ୍ତି। ଏଗୁଡ଼ିକର ବ୍ରୋଞ୍ଜରଙ୍ଗର ପତ୍ର ଓ ନୀଳରଙ୍ଗର ପୁଷ୍ପ ଉଦ୍ୟାନରେ ଏହାର ପ୍ରାଧାନ୍ୟ ବଢ଼ାଇଥାଏ। ଉର୍ବର ଓ ନିଗିଡ଼ା ମାଟିରେ ବର୍ଷାଋତୁ ପୂର୍ବରୁ କନ୍ଦାଗୁଡ଼ିକ ଲଗାଯାଏ। ଈଷତ ଆଲୁଅ ପଡୁଥିବା ଅଞ୍ଚଳରେ ଗଛ ଭଲ ବଢ଼େ। ଅକ୍ଟୋବର ଓ ନଭେମ୍ବର ମାସରେ ଗଛରେ ଫୁଲ ଫୁଟେ। ଡିସେମ୍ବର ମାସବେଳକୁ ଗଛ

ଶୁଖିଯାଏ ଓ ମୂଳଗୁଡ଼ିକ ମାଟିଭିତରେ ସୁପ୍ତ ଅବସ୍ଥାରେ ଥାଏ । କୁଣ୍ଡ, ଦୋଳାୟମାନ କୁଣ୍ଡ ଓ ଗୃହ ସନ୍ନିକଟ ପୁଷ୍ପପଟାଳି ଏବଂ ଅରଣ୍ୟୋଦ୍ୟାନରେ ଏଗୁଡ଼ିକୁ ଲଗାଯାଏ ।

**ଦିବାଲିଲି** (*Hemerocallis* sps. Liliaceae)- ଏହି ଲିଲି ଭାରତର ସବୁ ଉଦ୍ୟାନରେ ଦେଖିବାକୁ ମିଳେ । ଏହାର ପତ୍ରଗୁଡ଼ିକ ଅଣଓସାରିଆ । ଏହାର ମାଂସାଳ କନ୍ଦାଗୁଡ଼ିକୁ ଜୁଲାଇମାସରେ ୬୦ ସେ.ମି. ଦୂରତାରେ ଓ ୪ ସେ.ମି. ଗଭୀରରେ ଲଗାଯିବା ଉଚିତ । ଫୁଲ ବସନ୍ତକାଳରୁ ଗ୍ରୀଷ୍ମକାଳ ପର୍ଯ୍ୟନ୍ତ ଫୁଟେ । ଗୋଟିଏ ସଣ୍ଢାରେ ୩ଟି ରୁ ୪ଟି ଫୁଲ ଫୁଟେ । ଫୁଲଗୁଡ଼ିକ ଦିନକ ପରେ ମଉଳିଯାଏ । ଏଗୁଡ଼ିକୁ ଲନ ଚତୁଃପାର୍ଶ୍ୱ, କାଛଧାର ବକସମାନଙ୍କରେ ଲଗାଯିବା ଉଚିତ । ବଗିଚାରେ ଲଗାଯାଉଥିବା ଜାତିଗୁଡ଼ିକ ମଧ୍ୟରେ **H. aurantiaca** (କମଳାରଙ୍ଗ), **H. dumortieri** (ହଳଦିଆ) ଓ ସୁଗନ୍ଧଯୁକ୍ତ **H. flava**(ଇଟା ବା ତାମ୍ରରଙ୍ଗର) ଓ ବେଶୀ ସୁଗନ୍ଧଯୁକ୍ତ **H. flava**(ଲେମ୍ବୁରଙ୍ଗର) ପ୍ରଭୃତି ପ୍ରଧାନ ।

**ରମ୍ଭାଲିଲି ବା ହୋଷ୍ଟ** (*Hosta plantaginea*, Liliaceae)- ଏହା ଜାପାନ ଓ ଚାଇନା ଦେଶର ଗଛ । ପତ୍ରଗୁଡ଼ିକ ବୃତ୍ତାକାର ଓ ୩୦ ସେ.ମି. ଦୈର୍ଘ୍ୟ ଓ ୧୫ ରୁ ୨୦ ସେ.ମି. ପ୍ରସ୍ଥବିଶିଷ୍ଟ । ଏଗୁଡ଼ିକର ଧାବକ କନ୍ଦାଗୁଡ଼ିକୁ ମାର୍ଚ୍ଚ ମାସରେ ଲଗାଯାଏ । ଫୁଲ ପରବର୍ଷ ମେ ମାସ ପରେ ଫୁଟେ । ଫୁଲର ରଙ୍ଗ ଧଳା ଓ ସୁଗନ୍ଧଯୁକ୍ତ ଓ ଦେଖିବାକୁ ଫନେଲ ଭଳି ।

**ହାଇସିନ୍ଥସ୍** (*Hyacinthus azureus*, Liliaceae)- ଭୂମଧ୍ୟସାଗରୀୟ ଅଞ୍ଚଳରୁ ଏଗୁଡ଼ିକୁ ଆମଦେଶକୁ ଆସିଅଛି । ଫୁଲଗୁଡ଼ିକର ରଙ୍ଗ ଧଳା, ନୀଳ, ହଳଦିଆ ଓ ଲାଲ । ଭାରତର ସର୍ବତ୍ର ଏହା ଲଗାଯାଇପାରେ କିନ୍ତୁ ପାର୍ବତ୍ୟଅଞ୍ଚଳରେ ଏଗୁଡ଼ିକ ସୌନ୍ଦର୍ଯ୍ୟ ବିଶେଷ ଭାବରେ ବିକଶିତ ହୋଇଥାଏ । ଏହାର ବଂଶବିସ୍ତାର ପୂରୁଣାମୂଳ ଓ ମଞ୍ଜିଦ୍ୱାରା କରାଯାଏ । ଗଛ ଲଗାଯିବାର ୨/୩ ମାସପରେ ଫୁଲ ଫୁଟେ । ଉପଯୁକ୍ତ ଉର୍ବର ଓ ଅଧିକ ଜୈବିକ ଅଂଶ ଥିବା ମାଟିରେ ଏହା ଭଲ ବଢ଼େ । ଏହାକୁ ସାଧାରଣତଃ କୁଣ୍ଡରେ

ଲଗାଯାଇଥାଏ । ତେବେ ଏହା ବ୍ୟତୀତ ଅରଣ୍ୟଉଦ୍ୟାନ, ଫୁଲପଟାଳି ଓ ରାସ୍ତାର ଦୁଇପାଖରେ ଏହାକୁ ଲଗାଯାଇପାରେ ।

**ବୁଢ଼ିଆଣୀ ଲିଲି** (*Hymenocallis calathivia*, **Amaryllidaceae**)- ଏଗୁଡ଼ିକ ଭାରତର ପାର୍ବତ୍ୟ ଅଞ୍ଚଳରେ ୫୦୦୦ ଫୁଟ ଉଚ୍ଚ ପର୍ଯ୍ୟନ୍ତ ସ୍ଥାନରେ ଲଗାଯାଇପାରେ । ଏହାର ୪୦ ପ୍ରକାର ଜାତି ଥିବାର ଜଣାଯାଏ । ଫୁଲଗୁଡ଼ିକ ଗୋଟିଏ ଛତାପରି ସ୍ତବକରେ ଫୁଟେ । ଏହାର ରଙ୍ଗ ଧଳା ଓ ସୁଗନ୍ଧଯୁକ୍ତ । ବର୍ଷା ଆରମ୍ଭରୁ ଏହାର ହ୍ରସ୍ୱଧାବକଗୁଡ଼ିକୁ ଉର୍ବର ମାଟିରେ ୨୨ ସେ.ମି. ଦୂରତା ଓ ୭ ସେ.ମି. ଗଭୀରରେ ପୋତିଦିଆଯାଏ ।

**ଆଇରିସ** (Iris sps. Iridaceae)- ଏହାର ୨୦୦ ପ୍ରକାର ଜାତି ଦେଖାଯାଏ । ଫୁଲର ଆକୃତି ଭେଦରେ ଏହାକୁ ୧୧ଭାଗରେ ବିଭକ୍ତ କରାଯାଇଛି । ଶୀତ ଅଞ୍ଚଳରେ ଏହା ଏକ ପ୍ରଧାନ ପୁଷ୍ପ । ଆମ ଦେଶରେ ୭୦୦୦ ଫୁଟ ଉପରେ ଏହାକୁ ଲଗାଯାଇପାରେ । ମଞ୍ଜି, ଧାବକକନ୍ଦ ଓ କନ୍ଦାଦ୍ୱାରା ଏହାର ବଂଶବିସ୍ତାର କରାଯାଏ । ସାମାନ୍ୟ ଅମ୍ଳ ସ ଜୈବିକ ଅଂଶ ଥିବା ମାଟିରେ ଏଗୁଡ଼ିକୁ ୧୫ ସେ.ମି. ଦୂରତା ଓ ୧୦ ସେ.ମି. ଗଭୀରରେ ପୋତାଯାଏ । ଫୁଲଗୁଡ଼ିକ ଦେଖିବାକୁ ଅର୍କିଡ଼ ଫୁଲପରି ଓ ବିଭିନ୍ନ ରଙ୍ଗର ଫୁଲ ଫୁଟିଥାଏ ।

**ଆଫ୍ରିକା ଲିଲି** (*Ixia virdiflora*, Iridaceae)- ଏଗୁଡ଼ିକ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ କେବଳ ଲଗାଯାଇପାରିବ । ଏହାର ଧନକନ୍ଦାଗୁଡ଼ିକ ଫେବୃୟାରୀ ଏବଂ ମାର୍ଚ୍ଚ ମାସରେ ୨୫ ସେ.ମି. ବ୍ୟାସାର୍ଦ୍ଧବିଶିଷ୍ଟ କୁଣ୍ଡରେ ଲଗାଯାଏ । ଫୁଲଗୁଡ଼ିକ ସେପ୍‌ଟେମ୍ବର ଠାରୁ ଅକ୍ଟୋବର ମାସ ମଧ୍ୟରେ ଫୁଟେ ଓ ଗଛର ଉଚ୍ଚତା ୩୦ ସେ.ମି. ହୁଏ । ଫୁଲଗୁଡ଼ିକର ରଙ୍ଗ ସବୁଜ ଓ ତା ଦେହରେ ବାଇଗଣି ଓ କଳାଦାଗ ଥାଏ ।

**କାଇମ୍ଫେରିଆ** (*Kaempferia rotunda*, Zingiberaceae)- ଏହା ଭାରତରେ ଏକ ନିଜସ୍ୱ ଉଦ୍ଭିଦ । ଗଛଗୁଡ଼ିକ ୧୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚା ହୁଅନ୍ତି । ଫୁଲଗୁଡ଼ିକର ରଙ୍ଗ ଧଳା କିମ୍ବା ବାଇଗଣି । ଉର୍ବର ମାଟିରେ ଏହାର

କନ୍ଦାଗୁଡ଼ିକ ବର୍ଷାଦିନରେ ଲଗାଯିବା ଉଚିତ । ଏହାକୁ ସାଧାରଣତଃ କୁଣ୍ଡରେ ଲଗାଯାଇଥାଏ । ଗଛଗୁଡ଼ିକ ଛାଇରେ ଭଲଭାବେ ବଢ଼େ । ଗଛ ବଢ଼ିବା ସଙ୍ଗେ ସଙ୍ଗେ ଫୁଲ ମଧ ଫୁଟେ । ଶୀତଋତୁରେ ଗଛଗୁଡ଼ିକ ହଳଦିଆ ପଡ଼ି ମରିଯାଏ । ଏଗୁଡ଼ିକ ବାରଣ୍ଡାରେ, ଦୋଳୟମାନ କୁଣ୍ଡରେ ରଖିଲେ ଗଛର ସୌନ୍ଦର୍ଯ୍ୟ ବଢ଼ିଥାଏ ।

**ସୂର୍ଯ୍ୟଲିଲି** (*Kniphofia uvaria,* Liliaceae)- ଏଗୁଡ଼ିକୁ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଲଗାଯାଇପାରିବ । ଏହାର ଧାବକ କନ୍ଦାଗୁଡ଼ିକ କୁଣ୍ଡରେ ଲଗାଯାଏ । ଶରତ ଋତୁରେ ଫୁଲ ଫୁଟେ । ଗଛର ଉଚ୍ଚତା ୨ ମିଟର ଯାଏ ହୁଏ । ଗଛରେ ଗୋଟିଏ ଲମ୍ବା ବୃନ୍ତରେ ଫୁଲଗୁଡ଼ିକ ତଳକୁ ଝୁଲିରହିଥାଏ । ଫୁଲର ରଙ୍ଗ ଗାଢ଼ ଲାଲ କିନ୍ତୁ ବୃନ୍ତ ଆଡ଼କୁ ହଳଦିଆ ଦାଗ ଥାଏ । K. modesta ର ଫୁଲ ଧଳା ଓ K. foliosa ର ଫୁଲ ହଳଦିଆ ରଙ୍ଗ ଅଟେ ।

**ଲିଲି** (Lilium sps., Liliaceae)- ପୃଥିବୀରେ ୧୦୦ରୁ ଅଧିକ ଜାତିର ଲିଲି ଦେଖିବାକୁ ମିଳେ । ପଟଳକ (Imbricate) ମୂଳଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ଲିଲିକୁ ସେମାନଙ୍କର ଚେରର ଆକୃତି ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇଛି । ପ୍ରଥମ ପ୍ରକାରର ପିଆଜ ସଦୃଶ ମୂଳ । ଦ୍ୱିତୀୟ ପ୍ରକାର ଲିଲିରେ ପ୍ରଥମେ ଚେରଗୁଡ଼ିକ ରୂପାନ୍ତରିତ ଚେରରୁ ବାହାରି ପରେ କାଣ୍ଡରୁ ମଧ ବାହାରିଥାଏ । ନିଗିଡ଼ା ଓ ଉର୍ବର ମାଟିରେ ଏହାର ମୂଳଗୁଡ଼ିକୁ ଲଗାଯାଏ । ଗଛ ବାହାରିବା ପର୍ଯ୍ୟନ୍ତ ପାଣି ଛିଞ୍ଚିବା ଉଚିତ । ମୂଳଗୁଡ଼ିକୁ ବର୍ଷାଦିନେ ଲଗାଯାଏ ଓ ଏଥିରେ ଖରାଦିନେ ଫୁଲଫୁଟେ । ଅକ୍ଟୋବର ମାସ ପରେ ମୂଳଗୁଡ଼ିକୁ ସଂଗ୍ରହକରି ବଗିଚାରେ ଲଗାଯାଏ । ଲିଲିମାନଙ୍କ ମଧରେ L. Longiflorum ପ୍ରଖ୍ୟାତ । ଏହାର ଫୁଲର ରଙ୍ଗ ଧଳା ଓ ଏହା ବସନ୍ତକାଳରେ ଫୁଟିଥାଏ । L. tigrinim ୧ $^{୧}/_{୨}$ ମିଟର ଯାଏ ଉଚ୍ଚ ହୁଏ । ଫୁଲଗୁଡ଼ିକ କମଳାରଙ୍ଗ ଓ ଦେହରେ ବାଇଗଣି ଦାଗ ଥାଏ । L. candidum ର ଫୁଲ ଧଳା ସୁଗନ୍ଧଯୁକ୍ତ । ଫୁଲଗୁଡ଼ିକରେ ପୁଂକେଶର ଚକ୍ର ନଥାଏ ।

**ପାନାକ୍ରାସିଅମ୍** (*Pancratium* sps. Amaryllidaceae)- ହାଇମେନ କାଲିସ ଓ ପାନକ୍ରାସିଅମ୍ ଗଛଗୁଡ଼ିକ ମଧରେ ଯଥେଷ୍ଟ ସାଦୃଶ୍ୟ

ଥାଏ । ପତ୍ରଗୁଡ଼ିକ ଦୀର୍ଘ ଓ ଧଳା ଫୁଲଗୁଡ଼ିକ ସୁଗନ୍ଧଯୁକ୍ତ । ପାଖୁଡ଼ା ଅଳ୍ପ ସାମାନ୍ୟ ଦନ୍ତୁରିତ । ସନ୍ତସନ୍ତିଆ ମାଟିରେ ଏଗୁଡ଼ିକ ଲଗାଯିବା ଉଚିତ । ଏହା ଯତ୍ନରେ ବଢ଼େ । ହ୍ରସ୍ୱଧାବକ ଦ୍ୱାରା ଏହାର ବଂଶବିସ୍ତାର ହୋଇଥାଏ । ବାରଣ୍ଡା ସଜାଇବା ପାଇଁ ଏହାକୁ କୁଣ୍ଡରେ ଲଗାଇବା ଉଚିତ ।

**କାକପଦୀ ଲିଲି** (*Ranunculus asiaticus*, Ranunculaceae)- ରାନୁନ୍‌କୁଲସର ୨୦୦ ପ୍ରକାର ବିଭିନ୍ନ ଜାତି ଥିବାର ଅନୁମାନ କରାଯାଏ । କିନ୍ତୁ ଏମାନଙ୍କ ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ ଜାତିକୁ ଚାଷ କରାଯାଏ । ଭାରତର ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଏହାକୁ ଲଗାଯାଇ ପାରେ । ଫୁଲ ଆକୃତି ଓ ସୌନ୍ଦର୍ଯ୍ୟ ଗୁଣଭେଦରେ ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଯଥା-ପରସିଆନ (Persian) ଓ ଟରବାନ (Turban) । ପର୍ସିଆନ ଜାତି ଅନ୍ତର୍ଗତ କିସମଗୁଡ଼ିକ ଟରବାନ ଜାତିଠାରୁ ଅଧିକ ସୌନ୍ଦର୍ଯ୍ୟମୟ । ଏହାର ପତ୍ରଗୁଡ଼ିକ ଅଖଣ୍ଡ (entire) ଓ ଫୁଲର ରଙ୍ଗ ଧଳା, ଲାଲ କିମ୍ବା ହଳଦିଆ । ଏହାର ବଂଶବିସ୍ତାର ଡାଲିଆର ମୂଳ ପରି ସ୍ଫୀତ କନ୍ଦଦ୍ୱାରା ହୋଇଥାଏ । ନିଗିଡ଼ା ପ୍ରଚୁର ଜଳୀୟଅଂଶ ରହୁଥିବା ମାଟିରେ ଏଗୁଡ଼ିକ ଭଲ ବଢ଼େ । କମ୍ଛାଇ ପଡୁଥିବା ସ୍ଥାନରେ ଅଧିକ ପତ୍ରସାର ଦେଇ ଏହାକୁ ଲଗାଯାଏ । ଅକ୍ଟୋବର ମାସରେ ଏହାକୁ ଲଗାଯିବା ଉଚିତ । ଗଛ ଲଗାଯିବାର ବର୍ଷକ ପରେ ସେଥିରେ ଫୁଲ ଆସେ । R. acris, R. crentatus ଏବଂ R. germinifolius ପ୍ରଭୃତି ଶୋଭାବର୍ଦ୍ଧକ ଜାତିଗୁଡ଼ିକ ମଧ୍ୟରେ ପ୍ରଧାନ ।

**ନୀଳଘଣ୍ଟି ଲିଲି** (Scilla hispanica, Liliaceae)- ଏଗୁଡ଼ିକର ଉଚ୍ଚତା ୪୦ ରୁ ୬୦ ସେ.ମି. ହୁଏ । ଏକ ଦୀର୍ଘ ବୃନ୍ତରେ ନୀଳ କିମ୍ବା ଗୋଲାପି ରଙ୍ଗର ୧୦-୧୨ଟି ଫୁଲ ଆସେ । ଏହାର ମୂଳଗୁଡ଼ିକ ୧୦ ସେ.ମି. ଦୂରତା ଓ ୫ ସେ.ମି. ଗଭୀରତାରେ ପୋତି ଦେଇ କୁଣ୍ଡଗୁଡ଼ିକୁ ଛାଇ ସ୍ଥାନରେ ରଖି ଦିଆଯାଏ । ବସନ୍ତ ଋତୁରେ ଏଥିରେ ଫୁଲ ଆସେ । ଭାରତର କାଶ୍ମୀର ଉପତ୍ୟକାରେ ଏଗୁଡ଼ିକ ଚାଷ କରାଯାଉଛି ।

**ଜାକୋବିନିଆ ଲିଲି** (*Sprekelia formosissima*, Amaryllidaceae)- ଏହାର ଉଚ୍ଚତା ପ୍ରାୟ ୪୫ ସେ.ମି. । ପତ୍ରଗୁଡ଼ିକ

ଆମାରିଲିସ୍ ପତ୍ରପରି ଏବଂ ଏହାର ଚାଷ ପ୍ରଣାଳୀ ଆମାରିଲିସ୍ ପରି କରିବାକୁ ପଡ଼େ । ୫,୦୦୦ ଫୁଟ ଉଚ୍ଚ ପାର୍ବତ୍ୟ ଅଞ୍ଚଳଗୁଡ଼ିକରେ ଏହାକୁ ଲଗାଯାଇ ପାରିବ । ଫୁଲଗୁଡ଼ିକର ରଙ୍ଗ ଗାଢ଼ ଲାଲ ଓ ଆକୃତି ସୁନ୍ଦର । ଏଗୁଡ଼ିକ ଖରାଦିନେ ଫୁଟେ ।

**ହେଲିକୋନିଆ** (Heliconia sps, Musaceae)- ହେଲିକୋନିଆ ଗଛଗୁଡ଼ିକ ଦେଖିବାକୁ କଦଳୀ ଗଛ ପରି । ଏହା ୯୦ ରୁ ୧୫୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ସର୍ବଜୟାର ଧାବକ କାଣ୍ଡ ପରି ଏହାର ରୂପାନ୍ତରିତ ମୂଳଗୁଡ଼ିକୁ ଅଳ୍ପ ଖରା ପଡୁଥିବା ସ୍ଥାନରେ ଲଗାଯାଏ । ଗୋଟିଏ ଲମ୍ବା ବୃନ୍ତରେ ପକ୍ଷୀଭଳି ଖୋପରେ ଫୁଲ ଫୁଟେ । ବାରଣ୍ଡା ବକ୍‌ସରେ ଏକ ପାର୍ଶ୍ୱ କିମ୍ବା ପୋର୍ଟିକର ସମ୍ମୁଖ ତଥା ବଡ଼ ବଡ଼ କୁଣ୍ଡରେ ଏହାକୁ ଲଗାଯାଇଥାଏ । ଅନ୍ୟାନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି ମଧ୍ୟରେ *H. insiguis, H. rubxa* ଓ *H. aureo striata* ପ୍ରଭୃତି ପ୍ରଧାନ ।

**ମାରଣ୍ଟା ଏବଂ କାଲାଥିଆ** (Calathea sp., Maranta sp., Marantaceae)- ମାରଣ୍ଟା ଏବଂ କାଲାଥିଆ ଗୋଟିଏ ଜାତିର ଗଛ । ମାରଣ୍ଟାଗୁଡ଼ିକ କାଲାଥିଆ ଠାରୁ ସାଧାରଣତଃ ସାମାନ୍ୟ ଉଚ୍ଚ ହୋଇଥାଏ ।



ମାରଣ୍ଟା

ଏହାର ସୁନ୍ଦର ପତ୍ର ଉଦ୍ୟାନର ତଥା ଗୃହର ଶୋଭାବର୍ଦ୍ଧନ କରିଥାଏ । କମ୍ ଛାଇ ପଡୁଥିବା ସ୍ଥାନରେ ତଥା କୁଣ୍ଡରେ ଏହାକୁ ଲଗାଯିବା ଉଚିତ । ଗ୍ରୀନହାଉସ କିମ୍ବା କଞ୍ଜରଭେଟୋରିଗୁଡ଼ିକରେ ଏହା ଭଲଭାବେ ବଢ଼ିପାରେ । ଏହି ପ୍ରକାର ଉଦ୍ଭିଦଗୁଡ଼ିକରେ ଧାବକ କନ୍ଦାଗୁଡ଼ିକ ବର୍ଷା ଆରମ୍ଭରୁ ଉପଯୁକ୍ତ ସ୍ଥାନ ବା କୁଣ୍ଡମାନଙ୍କରେ ଲଗାଯିବା ଉଚିତ । ବଗିଚାରେ ଲଗାଯାଉଥିବା ଜାତିଗୁଡ଼ିକ ମଧ୍ୟରେ C. leitzii ୪୫ ସେ.ମି., C. zebriana ୬୦ସେ.ମି., C. tigrinna ୬୦ ସେ.ମି. C. veitehii ୬୦ରୁ ୯୦ ସେ.ମି. ଉଚ୍ଚ ହୁଏ ।

**ବିଚିତ୍ରବର୍ଣ୍ଣା ଅଦା** (*Zingiber darceyi,* Zingiberaceae)- ଏହା ଏକପ୍ରକାରା ଅଦା; କିନ୍ତୁ ପତ୍ରଗୁଡ଼ିକରେ ପଟା ପଟା ଧଳା ଦାଗ ଥାଏ । ଠିକ୍ ଅଦାପରି ଏହାକୁ ଲଗାଯାଇ ପାରେ । ଏପ୍ରିଲ ମାସ ଠାରୁ ନଭେମ୍ବର ମାସ ମଧ୍ୟରେ ଏହା ସୁନ୍ଦର ଦିଶେ । କିନ୍ତୁ ପରେ ପରେ ପତ୍ରଗୁଡ଼ିକ ମଉଳିଯାଇ ଗଛଗୁଡ଼ିକ ସୁପ୍ତ ଅବସ୍ଥାରେ ରୁହନ୍ତି ।

**ବାଡ଼ସ ଅଫ୍ ପାରାଡାଇଜ୍** (*Strelitzia augusta,* Musaceae)- ଏଗୁଡ଼ିକ ଦେଖିବାକୁ ସର୍ବଜୟା ଗଛଭଳି । ଗଛ ୧ ୧/୨ ମିଟର ପର୍ଯ୍ୟନ୍ତ ବଢ଼େ । ଛାଇ ସ୍ଥାନରେ ବେଶୀ ଗୋବରଖତ ଦେଇ ଏହି ଗଛ ଲଗାଇବା ଦରକାର । ଫୁଲ ଫୁଟିଲା ପରେ ପକ୍ଷୀଭଳି ଦିଶେ । ଗୋଟିକ ପରେ ଗୋଟିଏ ଫୁଲ ଫୁଟେ । ଲନ୍, ଘର ପାଖ ବାରଣ୍ଡା ଓ କୁଣ୍ଡରେ ଏହାକୁ ଲାଗଯାଇ ପାରେ । ତଳୁ ବାହାରୁଥିବା ପୁଆରୁ ନୂଆ ଗଛ କରାଯାଏ, *Strelitzia reginae* ଏହାର ଅନ୍ୟ ଏକ ଜାତି ।

**ଶତମୂଳୀ** (Asparagus sp. Liliaceae)- ଶତମୂଳୀର ପତ୍ରଜ ସୌନ୍ଦର୍ଯ୍ୟ ବଡ଼ ମନୋହର । ବହୁତ ପ୍ରକାର ଶତମୂଳୀ ଦେଖିବାକୁ ମିଳେ । ଅଧିକାଂଶ ଶତମୂଳୀ ଲତା ପରି ମାଡ଼ନ୍ତି । A. plumosus ର ପତ୍ର ଦେଖିବାକୁ ହାତ ପାପୁଲି ପରି ଓ ଖୁବ୍ ସୁନ୍ଦର । A. sprengeri ଗୁଚ୍ଛ ହୋଇ ବଢ଼େ । ଶତାବରୀର ବଂଶବିସ୍ତାର ଗୁଚ୍ଛମୂଳଦ୍ୱାରା କରାଯାଇଥାଏ । ଝରକା ପାଖ, ଢାଫ୍ରିପାର୍ଶ୍ୱ ଓ କଞ୍ଜରଭେଟରୀ ଭିତରେ ଏହାକୁ ଲଗାଯାଏ ।

॥ ପଞ୍ଚଦଶ ପରିଚ୍ଛେଦ ॥

# ତାଳ ଜାତୀୟ ଉଦ୍ଭିଦ

ଉଦ୍ୟାନର ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ତାଳ ଜାତୀୟ ଉଦ୍ଭିଦଗୁଡ଼ିକର ଆବଶ୍ୟକତା ରହିଛି । ଅଧିକାଂଶ କ୍ଷେତ୍ରରେ ଏଗୁଡ଼ିକର ସ୍ତମ୍ଭଭଳି କାଣ୍ଡ ଓ ଏହାର ଚିରହରିତ ପକ୍ଷଳ ଓ ପଙ୍ଖାକୃତିର ପତ୍ରଗୁଡ଼ିକ ଉଦ୍ୟାନର ଅନ୍ୟାନ୍ୟ ଉଦ୍ଭିଦମାନଙ୍କ ତୁଳନାରେ ଏକ ଅଭିନବ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାନ୍ତି । ପୃଥିବୀରେ ୧୫୦ ପ୍ରଜାତିର ଓ ୧୧୫୦ ଜାତିର ତାଳ ଜାତୀୟ ଉଦ୍ଭିଦ ଥିବା ଅନୁମାନ କରାଯାଏ । ତାଳ ଜାତୀୟ ଉଦ୍ଭିଦକୁ ଦୁଇଭାଗରେ ବିଭକ୍ତ କରାଯାଏ, ଯଥା- ପକ୍ଷଳ ପତ୍ରଯୁକ୍ତ ଓ ପଙ୍ଖାକୃତି ପତ୍ରଯୁକ୍ତ । ଏଗୁଡ଼ିକର ଶାଖାବିହୀନ କାଣ୍ଡଗୁଡ଼ିକ ଗୋଲାକାର ଓ କାଣ୍ଡରେ ପୁରୁଣାପତ୍ର ଝଡ଼ିଥିବା ସ୍ଥାନରେ ଚିହ୍ନ ଥାଏ । ଏହି ପ୍ରକାର କାଣ୍ଡକୁ ଉଦ୍ଭିଦାକ୍ଷ (Caudex) କୁହାଯାଏ । କେତେ ପ୍ରକାର ପ୍ରଜାତିର କାଣ୍ଡଗୁଡ଼ିକ ଚିକ୍କଣ ଓ ଅନ୍ୟ କେତେକ କଣ୍ଟାଯୁକ୍ତ ଓ ଗଣ୍ଠିଯୁକ୍ତ । ପ୍ରତ୍ୟେକ ତାଳ ଜାତୀୟ ଉଦ୍ଭିଦର ପତ୍ରଗୁଡ଼ିକ ଚିକ୍କଣ ଏବଂ ସମାନ୍ତରାଳ ଶିରାଯୁକ୍ତ । ଏହି ଉଦ୍ଭିଦଗୁଡ଼ିକ ଏକବୀଜପତ୍ରୀ ଓ ଅନ୍ତର୍ଜାତ (Endogenous) । ତେଣୁ ବକଳ, କାଠ ଓ କାଣ୍ଡର ଅଭ୍ୟନ୍ତର ମଧ୍ୟରେ କୌଣସି ପାର୍ଥକ୍ୟ ନ ଥାଏ । ଗଛର ଅଗ୍ରଭାଗର ପାର୍ଶ୍ୱରୁ ଫୁଲ ବାହାରେ । ତାଳ ଜାତୀୟ ଉଦ୍ଭିଦଗୁଡ଼ିକ ସବୁ ସ୍ଥାନରେ ଲଗାଯାଇ ପାରେ । ଏଗୁଡ଼ିକ ଧୀରେ ଧୀରେ ବଢୁଥିବାରୁ କୁଣ୍ଡଗୁଡ଼ିକରେ ଲଗାଇଲେ ଅନେକ ବର୍ଷ ରହେ । ରାସ୍ତାର ଦୁଇଧାରରେ କିମ୍ବା ଗୃହର ସମ୍ମୁଖରେ ଏହାକୁ ଲଗାଯାଇଥାଏ । ତାଳ ଜାତୀୟ ଉଦ୍ଭିଦଗୁଡ଼ିକ ସୌନ୍ଦର୍ଯ୍ୟ ବିତରଣ କରିବା ସଙ୍ଗେ ସଙ୍ଗେ ଶର୍କରା ଜାତୀୟ ଖାଦ୍ୟ, ତେଲ ତଥା ଅନ୍ୟାନ୍ୟ ଜିନିଷ ଯୋଗାଇଥାନ୍ତି । ଖଜୁରୀ ଓ ନଡ଼ିଆ ଏହି ବର୍ଗ (Family)ର ଦୁଇଟି ଅର୍ଥକରୀ ବୃକ୍ଷ । ସବୁ ତାଳଗୁଡ଼ିକ Palmaceae ବର୍ଗର ଅନ୍ତର୍ଭୁକ୍ତ । ତାଳ ଜାତୀୟ ଉଦ୍ଭିଦଗୁଡ଼ିକ ଅଳ୍ପ ଯତ୍ନରେ ବାଲିଆ ଓ ଅଧିକ ଜୈବିକ ଅଂଶ ଥିବା ମାଟିରେ ଭଲ ବଢ଼େ । ଛାଇ ଏବଂ ଖରାରେ ଏହା ମଧ୍ୟ ଭଲ ବଢ଼ିଥାଏ । ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଅଧିକାଂଶ ତାଳ ଜାତୀୟ ଉଦ୍ଭିଦ ଭଲଭାବରେ ବଢ଼ିପାରନ୍ତି । ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଏହାକୁ ଲଗାଯାଇ ପାରିବ । କୋରାଖିଆ

ପୋକ (ରାଇନୋସିରସ୍ ବିଟ୍ଲ) ଓ ମିଲିବଗ ତାଳ ଜାତୀୟ ଉଦ୍ଭିଦର ପ୍ରଧାନ ଶତ୍ରୁ । ଏଗୁଡ଼ିକ ଲାଗିବା ସଙ୍ଗେ ସଙ୍ଗେ ଉପଯୁକ୍ତ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବା ଉଚିତ । ଅଧିକାଂଶ ତାଳଜାତୀୟ ଉଦ୍ଭିଦର ବଂଶବିସ୍ତାର ମଞ୍ଜି ଦ୍ୱାରା ହୋଇଥାଏ । କିନ୍ତୁ କେତେକ ପ୍ରଜାତିରେ ମୂଳରୁ ବାହାରିଥିବା ପୁଆଦ୍ୱାରା ନୂଆଗଛ ହୁଏ । ନୂତନ କରି ସଂଗ୍ରହ କରାଯାଇଥିବା ମଞ୍ଜିଗୁଡ଼ିକୁ ବାଲି କିମ୍ବା ବାଲିମିଶା ମାଟିରେ ପୋତିଦେଲେ ଗଛ ହୁଏ । ଗଛର ଦୁଇ ପତ୍ର ପରେ ଅନ୍ୟ ସ୍ଥାନକୁ କିମ୍ବା ଛୋଟ ଛୋଟ କୁଣ୍ଡକୁ ବଦଳାଇ ଦିଆଯାଏ । ଛୋଟ ଗଛକୁ ୨/୩ ଥର ବଦଳାଇଲେ ଏହା ଭଲ ବଢ଼େ । କୁଣ୍ଡରେ ତାଳ ଜାତୀୟ ଉଦ୍ଭିଦଗୁଡ଼ିକ ଲଗାଇଲେ ତାହାକୁ ଠିକ୍ ସମୟରେ ବଦଳାଇବା ଉଚିତ । ନଚେତ୍ ଚେରରେ ଭର୍ତ୍ତି ହୋଇ କୁଣ୍ଡ ଫାଟିଯାଏ କିମ୍ବା ଗଛ ମରିଯାଏ । ଗଛ ବଢ଼ିବାବେଳେ ପୁରୁଣା ପତ୍ରଗୁଡ଼ିକୁ କାଣ୍ଡରୁ ବାହାର କରିଦେବା ଆବଶ୍ୟକ । ୫୦ ଗ୍ରାମ ଆମୋନିୟମ ସଲ୍‌ଫେଟ ୧ ଲିଟର ପାଣିରେ ମିଶାଇ ମଝିରେ ମଝିରେ ଦେବା ଉଚିତ । ନିମ୍ନରେ କେତେକ ତାଳଜାତୀୟ ଉଦ୍ଭିଦର ବର୍ଣ୍ଣନା ଦିଆଗଲା ।

**ଲୋଟଣୀ ଗୁଆ** (*Areca lutescens*)- ଲୋଟଣୀ ଗୁଆଗୁଡ଼ିକ ୭/୮ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । ଧନୁ ପରି ବଙ୍କା ହୋଇଥିବା ପକ୍ଷଳ ପତ୍ରଗୁଡ଼ିକ ଦୂରକୁ ସୁନ୍ଦର ଦିଶେ । ବଡ଼ ବଡ଼ କୁଣ୍ଡ ବା ପିଚୁ ଦ୍ରମମାନଙ୍କରେ ରଙ୍ଗ ଦେଇ ବାରଣ୍ଡା ସଜାଇବା ପାଇଁ ଏଗୁଡ଼ିକ ଲଗାଯାଏ । ଲନ ଚତୁଃପାର୍ଶ୍ୱ, ହ୍ରଦକୂଳ ରାସ୍ତା କିମ୍ବା ଜଳୋଦ୍ୟାନର ଚତୁଃପାର୍ଶ୍ୱରେ ଏହାକୁ ଲାଗଯିବା ଉଚିତ । ଗଛ ମୂଳରେ ବହୁତ ପୁଆ ବାହାରେ । ସେଗୁଡ଼ିକୁ ସଂଗ୍ରହ କରି ନୂଆ ଗଛ ଲଗାଯାଏ ।

**ଗୁଆ** (*Areca catechu*) ପାନ ମସଲା ପାଇଁ ଗୁଆକୁ ଚାଷ କରାଗଲେ ବି ସୌନ୍ଦର୍ଯ୍ୟ ବୃଦ୍ଧି ଲାଗି ଏଗୁଡ଼ିକୁ ମଧ ଲଗାଯାଇଥାଏ । ରାସ୍ତାଧାର, ମନ୍ଦିର, କୋଠା ସନ୍ନିକଟରେ ଏହାକୁ ଲଗାଇଲେ ପରିବେଶର ସୌନ୍ଦର୍ଯ୍ୟ ବଢ଼ିଥାଏ । ଏହାର ଅନ୍ୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତିଗୁଡ଼ିକ ମଧ୍ୟରେ A. alba; A. triandra ଏବଂ A. rubra ପ୍ରଭୃତି ପ୍ରଧାନ ।

**ସାଗୁପାମ୍** (*Arenga saccharifera*)- ସାଗୁପାମ୍ ଏକ ପକ୍ଷଳ ପତ୍ରଯୁକ୍ତ ବୃକ୍ଷ । ଏହା ୧୦ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ବାହୁଙ୍ଗାଗୁଡ଼ିକ ୨ ମିଟର

ଲମ୍ବା ଓ ପତ୍ରର ତଳପଟ ରୂପା ରଙ୍ଗ ହୋଇଥାଏ । ବଗିଚାର ସୌନ୍ଦର୍ଯ୍ୟ ପାଇଁ ଏହାକୁ ରାସ୍ତାର ଦୁଇଧାରରେ ଲଗାଯାଇଥାଏ ।

**ସଲପ** (*Caryota urens*) ସଲପ ଗଛପ୍ରାୟ ଚାରିଆଡ଼େ ଦେଖାଯାଏ । ଏହାର ପତ୍ରଗୁଡ଼ିକ ପକ୍ଷଳ । ଗଛ ୧୦ ମିଟର ପର୍ଯ୍ୟନ୍ତ ବଢ଼େ ।




• ସଲପ୍

ଏଗୁଡ଼ିକର ପତ୍ର ବିଶେଷ ସୁନ୍ଦର ନ ହେଲେ ବି ପେଣ୍ଡା ପେଣ୍ଡା ହୋଇ ତଳକୁ ଓହଳିଥିବା ଫୁଲ ଓ ଫଳର ପେଣ୍ଡା ସୁନ୍ଦର ଦିଶେ । ଲଗାଇବାର ୮ ରୁ ୧୦ ବର୍ଷ ପରେ ଗଛଗୁଡ଼ିକ ସମ୍ପୂର୍ଣ୍ଣ ବଢ଼ିଗଲା ପରେ ଉପର ଆଡୁ ତଳକୁ ଆସ୍ତେ ଆସ୍ତେ ଫୁଲ ଫୁଟେ । ହଳଦିଆ ରଙ୍ଗର ପୁଂକେଶର ଚକ୍ରରେ ଭରପୁର ହଳଦିଆ ରଙ୍ଗର ଫୁଲ ଓ ଗୋଲ ଗୋଲ ଫଳଗୁଡ଼ିକ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ଏଗୁଡ଼ିକୁ ରାସ୍ତା କଡ଼ରେ ଲଗାଯିବା ଉଚିତ । **C. sabulifera** ଏହାର ଅନ୍ୟ ଏକ ଜାତି । ଏଗୁଡ଼ିକ ଅଧିକ ସୁନ୍ଦର ।

**ତାଳଗଛ** (*Borassus flabellifer*)- ତାଳଗଛଗୁଡ଼ିକ ୧୫ ରୁ ୨୦ ମିଟର ପର୍ଯ୍ୟନ୍ତ ଉଚ୍ଚକୁ ବଢ଼ନ୍ତି । ଗଛର ଅଗ୍ରଭାଗରେ ପଙ୍ଖାକୃତିର ପତ୍ରଗୁଡ଼ିକ ଏହାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ପୁରୁଣା ଗଛ ନୂଆ ଗଛ ଠାରୁ ବିଶେଷ ସୁନ୍ଦର ଦିଶେ । ବଗିଚାର ପ୍ରତୀକ ଗଛରୂପେ କିମ୍ବା ରାସ୍ତାର ଦୁଇଧାରରେ ବହୁ ଦୂର ପର୍ଯ୍ୟନ୍ତ ଏଗୁଡ଼ିକ ଲଗାଇଲେ ସୁନ୍ଦର ଦିଶେ ।

**ବେତ** (*Callamus roxburghii*)- ସାଧାରଣ ବେତଗଛ ଠାରୁ ଏଗୁଡ଼ିକ ଅପେକ୍ଷାକୃତ ଅଧିକ ସୁନ୍ଦର । ଏଗୁଡ଼ିକୁ ତୋରଣ ଉପରେ ମଡ଼ାଇଲେ ସୁନ୍ଦର ଦେଖାଯାଏ । ବେଳେ ବେଳେ ଗୃହର ପାର୍ଶ୍ୱରେ ଏହାକୁ ଲଗାଯାଇଥାଏ ।

**ରାଣୀ ଖଜୁରୀ** (*Phoenix robellinii*)- ରାଣୀ ଖଜୁରୀ ଅତ୍ୟନ୍ତ ଖର୍ବକାୟ । ଏକ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ପତ୍ରଗୁଡ଼ିକ ୩୦/୪୦ ସେ.ମି. ଲମ୍ବା ଓ ପକ୍ଷଳ । ଦେଖିବାକୁ ଛୋଟ ଖଜୁରୀ ଗଛ ପରି । ଏହାକୁ କୁଣ୍ଡରେ ଲଗାଇ ବାରଣ୍ଡା ସଜାଯାଏ ।

**କେଣ୍ଟିଆ** (Kentia sps.) କେଣ୍ଟିଆ ଜାତିର ଗଛଗୁଡ଼ିକ ଗୁଆ ଭଳି ଦିଶନ୍ତି । କିନ୍ତୁ ଏଗୁଡ଼ିକ ଗୁଆଭଳି ସିଧା ନ ବଢ଼ି ସାମାନ୍ୟ ବକ୍ର ହୋଇ ବଢ଼ିଥାନ୍ତି । ପତ୍ରଗୁଡ଼ିକ ପକ୍ଷଳ ଓ ଉଚ୍ଚରେ ୫/୬ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । ଏହାର କାଣ୍ଡଗୁଡ଼ିକ ଚିକ୍‌କଣ ଓ ସୌନ୍ଦର୍ଯ୍ୟବର୍ଦ୍ଧକ । ଏହାକୁ କୁଣ୍ଡରେ ଲଗାଯାଇ ବାରଣ୍ଡା କିମ୍ବା ରାସ୍ତା ସଜାଯାଇପାରେ । ରାସ୍ତାର ଦୁଇଧାରରେ କିମ୍ବା ଫାଟକ ଏବଂ ଗୃହର ଦୁଇପାର୍ଶ୍ୱରେ ଲଗାଗଲେ ଏହା ସୁନ୍ଦର ଦିଶେ । ମୂଳରୁ ପୁଆ ସଂଗ୍ରହ କରି ନୂଆଗଛ ଲଗାଯାଏ । *K. sanderiana, K. Mc arthurii* ଓ *K. lindeni* କେତେକ କେଣ୍ଟିଆ ପ୍ରଭୃତି ବଗିଚାରେ ଲଗାଯାଏ ।

**ବଟଲପାମ୍** (Oreodoxa regia)- ଏହାର ପତ୍ରଗୁଡ଼ିକ ପକ୍ଷଳ ଓ ୩/୪ ମିଟର ଲମ୍ବା । ମୂଳଗୁଡ଼ିକ ବୋତଲ ପରି ସ୍ଫୀତ । ଗଛଗୁଡ଼ିକ ୧୫ ମିଟରରୁ ବେଶୀ ଉଚ୍ଚକୁ ବଢ଼ନ୍ତି । ଫାଟକ କଡ଼ରେ, ଗୃହର ଚତୁଃପାର୍ଶ୍ୱରେ କିମ୍ବା ଲମ୍ବା ରାସ୍ତାର ଦୁଇଧାରରେ ଏହାକୁ ଲଗାଯିବା ଉଚିତ ।



ବଟଲପାମ୍

**ନଡ଼ିଆ**(Cocos nucifera)- ନଡ଼ିଆ ଗଛ ବଡ଼ ବଡ଼ ଉଦ୍ୟାନର ସୌନ୍ଦର୍ଯ୍ୟ ବିକାଶ ପାଇଁ ରାସ୍ତାକଡ଼ରେ କିମ୍ବା ଗୃହ ଚତୁଃପାର୍ଶ୍ୱରେ ଲଗାଯାଇପାରେ । ଗଛଗୁଡ଼ିକ ୩/୪ ମିଟର ଉଚ୍ଚାରେ ଥିବାବେଳେ ବଗିଚାଟି ସୁନ୍ଦର ଦିଶେ । ରାସ୍ତାର ଦୁଇଧାରରେ ବହୁଦୂର ପର୍ଯ୍ୟନ୍ତ ଲଗାଇଲେ ବଗିଚାର ସୌନ୍ଦର୍ଯ୍ୟ ବଢ଼ିଥାଏ ।

**ଗୁଚ୍ଛତାଳ**(*Chamerops humilis*) ପଙ୍ଖାଜାତୀୟ ପତ୍ରବିଶିଷ୍ଟ ତାଳମାନଙ୍କ ମଧ୍ୟରେ ଏହା ଏକ ପ୍ରଧାନ ସୌନ୍ଦର୍ଯ୍ୟବର୍ଦ୍ଧକ ତାଳ । ଗଛଗୁଡ଼ିକ ୨ ରୁ ୪ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । ଗଛ ଅଗରେ ତାଳଗଛର ପତ୍ରପରି ଘଞ୍ଚଭାବରେ ପତ୍ରଗୁଡ଼ିକ ସଜାହୋଇଥାଏ । ଏଗୁଡ଼ିକୁ କୁଣ୍ଡରେ ଲଗାଯାଇପାରେ । ମଞ୍ଜିରୁ ଏବଂ ତଳୁ ବାହାରୁଥିବା ପୁଆ ସାହାଯ୍ୟରେ ନୂଆଗଛ କରାଯାଏ । ସମତଳ ଅଞ୍ଚଳ ଅପେକ୍ଷା ପାର୍ବତ୍ୟ ଅଞ୍ଚଳରେ ଏହା ଭଲ ବଢ଼େ । ଏହାର ଅନ୍ୟ ଏକ ଜାତି *C. excelsa* ବାହୁଙ୍ଗାରେ ତାଳଗଛର ବାହୁଙ୍ଗା ପରି କଣ୍ଟା ଥାଏ । ଏଗୁଡ଼ିକ କୁଣ୍ଡରେ ଲଗାଗଲେ ସୁନ୍ଦର ଦିଶେ ।

**କୋରିଫା ତାଳ** (Corypha umbraculifera) କୋଟିଫା ଜାତିର ତାଳଗୁଡ଼ିକ ୨୫ ମିଟର ପର୍ଯ୍ୟନ୍ତ ଉଚ୍ଚକୁ ବଢ଼ିପାରନ୍ତି । ପଙ୍ଖାସଦୃଶ ପତ୍ରଗୁଡ଼ିକର ବ୍ୟାସାର୍ଦ୍ଧ ପ୍ରାୟ ତିନିମିଟର । ପ୍ରତ୍ୟେକ ପତ୍ରରେ ୮୦ ରୁ ୧୦୦ ଟି ଉପପତ୍ର ଥାଏ । ପଙ୍ଖା ଆକୃତିର ଏହାର ପତ୍ରଗୁଡ଼ିକ ଘରଛପର ଓ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟବହୃତ ହୁଏ । ଏହି ଗଛଗୁଡ଼ିକ ଦେଖିବାକୁ ତାଳଗଛ ପରି କିନ୍ତୁ ଖଜୁରୀ ପରି ଖସିପଡ଼ିଥିବା ବାହୁଙ୍ଗାର ଶେଷାଂଶ ବହୁଦିନ ଗଛରେ ଲାଗି ରହିଥାଏ ।

**ରାଣୀତାଳ**(Dictyosperma alba) ଏଗୁଡ଼ିକ ବଡ଼ ବଡ଼ ଗୁଆ ଗଛ ଭଳି ବଢ଼ିଥାନ୍ତି । ଗୁଆଗଛପରି ଏଗୁଡ଼ିକୁ ରାସ୍ତାକଡ଼ରେ ଲଗାଯାଇପାରେ । ଉଦ୍ୟାନରେ ଏହାକୁ ପ୍ରତୀକ ଗଛ ରୂପେ ଲଗାଯିବା ଉଚିତ । ଏହା ୧୦ ମିଟର ପର୍ଯ୍ୟନ୍ତ ବଢ଼ିପାରେ । ପତ୍ରଗୁଡ଼ିକ ପକ୍ଷଳ ଓ ଲମ୍ବା ତିନିମିଟର ।

**ଆଫ୍ରିକୀୟ ତୈଳତାଳ** (*Elaeis guineensis*)- ପକ୍ଷଳ ପତ୍ର ବିଶିଷ୍ଟ ଏହି ତାଳ ସାଧାରଣତଃ ତେଲ ଉତ୍ପାଦନ ପାଇଁ ଚାଷ କରାଯାଇଥାଏ । ଏହାର ଗାଢ଼ସବୁଜ ରଙ୍ଗର ପତ୍ରଗୁଡ଼ିକ ସୌନ୍ଦର୍ଯ୍ୟବୃଦ୍ଧି କରିବାରେ ସାହାଯ୍ୟ କରିଥାଏ । ରାସ୍ତା ଦୁଇକଡ଼ରେ ଏହାକୁ ଲଗାଯାଇ ପାରେ ।

**ଏରିଥିଆ ତାଳ** (Erythea armata)- ମେକ୍ସିକୋ ଦେଶୀୟ ଏହି ପଙ୍ଖାକୃତି ପତ୍ରଯୁକ୍ତ ତାଳ ୧୦ ମିଟର ପର୍ଯ୍ୟନ୍ତ ବଢ଼େ । ବାହୁଙ୍ଗା ଝଡ଼ିଲା ପରେ ଏହାର ଶେଷ ଅଂଶଗୁଡ଼ିକ କାଣ୍ଡରେ ଲାଗି ରହିଥାଏ । ଏଗୁଡ଼ିକର ରଙ୍ଗ ନୀଳ ଓ ଦୂରକୁ ମହମ ବୋଲି ହୋଇଥିବା ଭଳି ଦେଖାଯାଏ । ବାହୁଙ୍ଗାରେ କଣ୍ଟା ଥାଏ । ଏହାର ପୁଷ୍ପସ୍ତବକଗୁଡ଼ିକ ୪ଡା, ୫ ମିଟର ପର୍ଯ୍ୟନ୍ତ ଲମ୍ବ ଏବଂ ଅତୀବ ରମଣୀୟ । *E. edulis* ଏହାର ଅନ୍ୟ ଏକ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି । ରାସ୍ତାର ଦୁଇକଡ଼ରେ କିମ୍ବା ପ୍ରତୀକ ବୃକ୍ଷ ରୂପେ ଏହାକୁ ଲଗାଯାଇଥାଏ ।

**ଫ୍ଲାକସ୍ ତାଳ** (*Mascarena lagenicaulis*)- ପକ୍ଷଳ ପତ୍ରବିଶିଷ୍ଟ ଏହି ତାଳ ୩/୪ ମିଟର ଉଚ୍ଚ ହୁଏ । ଗଛଗୁଡ଼ିକର ମୂଳ ଅସମ୍ଭବ ଭାବେ ସ୍ଫୀତ ହୋଇ ଅଗ୍ରଭାଗକୁ କ୍ରମଶଃ ସୋଳିଆ ହୋଇ ଗୋଟିଏ ଫ୍ଲାକ୍ସ ପରି ଦିଶେ । ଏହାର ପତ୍ରଗୁଡ଼ିକ ହଳଦିଆ ମିଶା ରଙ୍ଗ । ବଗିଚାରେ ଏହାକୁ ପ୍ରତୀକ ଗଛ ରୂପେ ଲଗାଯାଇ ପାରେ ।

**ଲିଭିଷ୍ଟୋନିଆ ତାଳ**(*Livistonia rotundifolia*)- ଗଛଗୁଡ଼ିକ ୧୫ ମିଟର ପର୍ଯ୍ୟନ୍ତ ବଢ଼ିଥାଆନ୍ତି; କିନ୍ତୁ ଛୋଟ ଗଛ ଅପେକ୍ଷାକୃତ ଅଧିକ ସୁନ୍ଦର ଦେଖାଯାଏ । ପତ୍ରଗୁଡ଼ିକର ବ୍ୟାସାର୍ଦ୍ଧ ୧ ମିଟର ଓ ଦେଖିବାକୁ ପ୍ରାୟ ଗୋଲାକାର । ବାହୁଙ୍ଗାଗୁଡ଼ିକ କଣ୍ଟାଯୁକ୍ତ । ଏହାକୁ ବଗିଚା ଭିତରେ କୁଣ୍ଡରେ ଲଗାଯାଇପାରିବ ।

**ପ୍ରିଚାର୍ଡ଼ିଆ ତାଳ** (Pritchardia grandis)- ପ୍ରିଚାର୍ଡ଼ିଆ ତାଳଗୁଡ଼ିକର ପତ୍ର ପଙ୍ଖାକୃତି । ଏଗୁଡ଼ିକ ସାମାନ୍ୟ ଛାଇରେ ଭଲ ବଢ଼ିଥାଏ । ଗୃହର ଅଭ୍ୟନ୍ତର ସାଜସଜା ପାଇଁ ଏହି ପ୍ରକାର ତାଳକୁ କୁଣ୍ଡରେ ଲଗାଯାଏ । P. pacifica ଓ P. robusta ଏହାର ଅନ୍ୟ ଦୁଇଟି ଜାତିକୁ ବଗିଚାରେ ଲଗାଯାଇ ପାରେ । P. filifera ର ପତ୍ରଗୁଡ଼ିକର ଅଗ୍ରଭାଗ କ୍ରମଶଃ ଖୁବ୍ ସରୁ ହୋଇ ସୂତାଭଳି ଝୁଲୁଥାଏ ।

**ରାଫିସ୍ ତାଳ**(*Raphis humilis*)- ରାଫିସ୍ ତାଳଗୁଡ଼ିକ ୨ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । ଏହି ତାଳର ପତ୍ରଗୁଡ଼ିକ ହାତରେ ଆଙ୍ଗୁଠି ପରି ଚାରିଆଡ଼କୁ ପ୍ରସାରିତ ହୋଇ ରହିଥାଏ । ପୁରୁଣା ବାହୁଙ୍ଗାର କିଛି ଅଂଶ ତନ୍ତୁଭଳି କାଣ୍ଡରେ

ବହୁଦିନ ପର୍ଯ୍ୟନ୍ତ ଲାଗିରହିଥାଏ । କୁଣ୍ଡରେ କିମ୍ବା ଛୋଟ ରାସ୍ତାଧାରରେ ଏହାକୁ ଲଗାଯାଏ । ଗଛ ମୂଳରୁ ପୁଆ ବାହାରେ । ଏହା ଦ୍ବାରା ନୂଆ ଗଛ ଲଗାଯାଏ ।

**ସାବଲ ତାଳ** (Sabal sp.)- ଏହି ତାଳର କାଣ୍ଡଟି ମାଟି ଭିତରେ ଲୁଚି ରହିଥାଏ । ପଙ୍ଖାକୃତି ପତ୍ରଗୁଡ଼ିକ ମାଟି ଉପରେ ସଜାହୋଇ ଥିଲାପରି ଦିଶେ । ପତ୍ରଗୁଡ଼ିକ ଗୋଲାକାର ଓ ୭୯ ରୁ ୮୦ ସେ.ମି. ଲମ୍ବା । ଏହାର ଉପଜାତି ଗୁଡ଼ିକ ହେଲା- Adansoni, umbraculifera, filamentosa.

**ଷ୍ଟିଭେନସନ୍ ତାଳ** (Stevensonia grandiflora)- ଷ୍ଟିଭେନସନ୍ ତାଳଗୁଡ଼ିକ ପ୍ରଥମାବସ୍ଥାରେ କାଣ୍ଡଶୂନ୍ୟ ପରି ମନେହୁଏ । କିନ୍ତୁ ପରେ ୧୫ ମିଟର ପର୍ଯ୍ୟନ୍ତ ବଢ଼ିଥାଆନ୍ତି । ପତ୍ରଗୁଡ଼ିକ ପଙ୍ଖାକୃତି ଓ ଗଛଗୁଡ଼ିକ ବଢ଼ିବାପାଇଁ ଅନେକ ଯତ୍ନନେବାକୁ ପଡ଼େ ।

**ଟ୍ରାଇନାକ୍ସ ତାଳ** (Trinax argentea) ଏଗୁଡ଼ିକ ୫ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । ବାହୁଙ୍ଗାଗୁଡ଼ିକ ପତ୍ରର ଲମ୍ବଠାରୁ ଯଥେଷ୍ଟ ବେଶୀ ହୋଇଥାଏ । ପତ୍ରର ତଳପଟ ପାଉଁଶିଆ ଦିଶେ ।

**ବେଣ୍ଟିକା** (Bentikia ricobarisa)- ଲର୍ଡ ବେଣ୍ଟିକଙ୍କ ନାମ ଅନୁସାରେ ଏହାର ନାମ ରଖାଯାଇଛି । ଏହା ୩୦ ମିଟରେ ପର୍ଯ୍ୟନ୍ତ ବଢ଼ିପାରେ । ତଳର ଡାଳଗୁଡ଼ିକ ଖଜୁରୀ ଡାଳ ପରି । ଏହାର ପକ୍ଷଳ ପତ୍ରଗୁଡ଼ିକ ଦୂରରୁ ବହୁତ ସୁନ୍ଦର ଦିଶେ ।

**ମାର୍ଟିନେଜିଆ ତାଳ** (Martinezia caryotaefolia)- ଏହି ଗଛର ପକ୍ଷଳ ପତ୍ରଗୁଡ଼ିକ ଦେଖିବାକୁ ସଲ ଗଛର ପତ୍ର ପରି । ଏହା ଖର୍ବାକାର ଓ କେଉଁସାରା କଣ୍ଟାରେ ଭରପୂର । ଏଗୁଡ଼ିକର ଆଦର ବେଶୀ । କୁଣ୍ଡରେ ଲଗାଯାଇ ଘର ସଜାଇବା ପାଇଁ ଏହାକୁ ବ୍ୟବହାର କରାଯାଏ ।

**ଲୋଡ଼ୋଇସିଆ ତାଳ**(Lodoicea maldivica)- ଏହାକୁ ଡବଲ ନଡ଼ିଆ ଗଛ କୁହାଯାଏ । ଗଛ ୩୦ ମିଟରେ ପର୍ଯ୍ୟନ୍ତ ବଢ଼େ । ଗଛ ଲଗାଇବାର ୨୦ ବର୍ଷ ପରେ ଫଳ ଆସେ ଓ ଗୋଟିଏ ଗୋଟିଏ ଫଳ ୨୦ କି.ଗ୍ରା. ପର୍ଯ୍ୟନ୍ତ ହୁଏ । ନଡ଼ିଆ ପାଚିବା ପାଇଁ ଏକ ବର୍ଷ ଲାଗେ । ଉଦ୍ଭିଦ ଉଦ୍ୟାନରେ ଏଗୁଡ଼ିକୁ ଲଗାଯାଇଥାଏ ।

# ସାଇକେଡ୍ ଜାତୀୟ ଉଦ୍ଭିଦ

## (Cycadaceae)

ତାଳଜାତୀୟ ଉଦ୍ଭିଦ ସହିତ Cycad ଜାତିର ଉଦ୍ଭିଦଗୁଡ଼ିକର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ସାଇକାଡ଼୍ ଗଛର କାଣ୍ଡରେ ତାଳ ଗଛର କାଣ୍ଡପରି ଝଡ଼ିଯାଇଥିବା ପୁରୁଣା ବାହୁଙ୍ଗାର ଚିହ୍ନ ଥାଏ । ଏହି ଉଦ୍ଭିଦଗୁଡ଼ିକର ପତ୍ରଗୁଡ଼ିକ ପକ୍ଷଳ ଏବଂ ଗଣ୍ଡି ଶାଖାଶୂନ୍ୟ । ତାଳ ଜାତିର ଗଛ ବଢୁଥିବା ମାଟିରେ ଏଗୁଡ଼ିକ ବଢ଼ିପାରେ ଓ ତାଳ ଜାତିର ଗଛପାଇଁ ନିଆ ଯାଉଥିବା ଯତ୍ନ ଏହାପାଇଁ ମଧ ଦରକାର ହୁଏ । ଏହି ଉଦ୍ଭିଦର ପୁରୁଣା ଗଛ ଗଣ୍ଡିରେ ଥିବା ସ୍ଫୀତ ଆଖିସବୁ ସଂଗ୍ରହ କରି ନୂଆଗଛ କରାଯାଏ । ଏହା ବ୍ୟତିତ ଗୋଟିଏ ଗଛରେ ଫୁଟୁଥିବା ସ୍ତ୍ରୀ ଓ ପୁରୁଷ ଫୁଲର ସଙ୍ଗମ କରି ମଞ୍ଜି ସଂଗ୍ରହ କରି ନୂଆ ଗଛ କରାଯାଇଥାଏ । ମଞ୍ଜି ସଂଗ୍ରହ ହେବାର ମାସକ ପରେ ଗଛ କରାଯିବା ଉଚିତ । ସାଇକାଡ଼୍ ଜାତୀୟ ସମସ୍ତ ଉଦ୍ଭିଦ ଧୀରେ ଧୀରେ ବଢ଼ନ୍ତି । ଏଗୁଡ଼ିକ ଛାଇସ୍ଥାନରେ ଲଗାଯିବା ଉଚିତ । ଛୋଟ ଛୋଟ କୁଣ୍ଡରେ ଓ ବଡ଼ ବଡ଼ ପିଚୁ ଡ୍ରମରେ ଲଗାଯାଇ ବାରଣ୍ଡା ସଜା ଯାଇଥାଏ । ରାସ୍ତାକଡ଼ରେ, ଫାଟକର ଦୁଇପାର୍ଶ୍ୱରେ କିମ୍ବା ପ୍ରାଚୀର ସଜା ଯାଇଥାଏ । ବଗିଚାର ରାସ୍ତାକଡ଼ରେ, ଫାଟକର ଦୁଇପାର୍ଶ୍ୱରେ କିମ୍ବା ପ୍ରାଚୀର କଡ଼େ କଡ଼େ ଏହାକୁ ଲଗାଯାଏ । ସାଇକାଡ଼ାସି ବର୍ଗର ପ୍ରଜାତିଗୁଡ଼ିକ ହେଲା– Cycas, Zamia, Macrozamia, Microcycas, Dioon, Eucephalartros, Stangeria । ନିମ୍ନରେ ବିଭିନ୍ନ ସାଇକାସ ସମ୍ବନ୍ଧରେ ବର୍ଣ୍ଣନା ଦିଆଗଲା ।

**ଜାମିଆ** (Zamia)- ଏଗୁଡ଼ିକ ପୂର୍ବୋକ୍ତ ଜାତି ଅପେକ୍ଷା ଖର୍ବକାୟ ଓ ପତ୍ରଗୁଡ଼ିକ ଫର୍ଣ୍ଣ ପତ୍ରପରି । ଏଗୁଡ଼ିକ ସାଧାରଣତଃ କୁଣ୍ଡରେ ଲଗାଯାଇଥାଏ । ଗଛରେ କୋନ ଆକାରର ଫଳ ବାହାରେ ।

**ମାକ୍ରୋଜାମିଆ** (Macrozamia)- ମାକ୍ରୋଜାମିଆର ଜାମିଆ ସହିତ ବହୁ ସାମଞ୍ଜସ୍ୟ ଅଛି । ଏଗୁଡ଼ିକ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଭଲ ବଢ଼ନ୍ତି । ଏଗୁଡ଼ିକ ଆମଦେଶରେ ମଂଜି ଧରେ ନାହିଁ କିମ୍ବା ଗଛମୂଳରୁ ପୁଆ ବାହାରେ ନାହିଁ ।

**ଏନସିଫାଲରଟସ** (Encephalortos)- ଏହି ପ୍ରଜାତିର ଅନ୍ତର୍ଭୁକ୍ତ ସମସ୍ତ ଜାତିଗୁଡ଼ିକ ଖର୍ବକାୟ ଓ ଏହାର ମଝିରେ କୋନ ଆକୃତିର ସପୁରି ଭଳି

୩ଟି ଫଳ ବାହାରିଥାଏ । E. latifronos ଏବଂ E. altensteinii ଏବଂ E. kosiensis ପ୍ରଭୃତି ଏହାର ଅନ୍ୟାନ୍ୟ ଜାତି ।

**ସାଇକାସ (Cycas)**- ସାଇକାସ ପ୍ରଜାତିର ଗଛଗୁଡ଼ିକ ୨/୩ ମିଟର ଉଚ୍ଚ ହୁଏ । ଗଣ୍ଡିଗୁଡ଼ିକ ସ୍ତମ୍ଭାକାର ଓ ଶାଖାବିହୀନ । ଗଛର ଅଗରେ ଘନ ସବୁଜ ରଙ୍ଗର ମୋଟା ଉପପତ୍ରଯୁକ୍ତ ଓ ୧ ମିଟର ଲମ୍ବର ବାହୁଙ୍ଗାରେ



ସାଇକାସ୍

ସଜାହୋଇଥାଏ । ଗଛଗୁଡ଼ିକ ଧୀରେ ଧୀରେ ବଢ଼େ । ମଂଜିରୁ ଗଛ ଉଠରାଯାଏ । C. media, C. rivulata, C. cirkinalis ପ୍ରଭୃତି କେତେକ Cycas ର ପ୍ରଧାନ ଜାତି । ଆମ ଭାରତରେ ସାଧାରଣତଃ C. cirkinalis ଦେଖାଯାଏ ।

**ଷ୍ଟାଞ୍ଜେରିଆ (Stangeria)**- ଏଗୁଡ଼ିକ ଖର୍ବକାୟ । ୩୦ ସେ.ମି. ପର୍ଯ୍ୟନ୍ତ ବଢ଼ନ୍ତି । ମୂଳଗୁଡ଼ିକ ସାଲଗମ ଆକୃତିର । ସ୍ତ୍ରୀ କୋନଗୁଡ଼ିକ ପୁରୁଷ କୋନଠାରୁ କ୍ଷୁଦ୍ର । ଏଗୁଡ଼ିକ ସାଧାରଣତଃ ଛାଇ ପଡୁଥିବା ସ୍ଥାନରେ ଭଲ ବଢ଼ନ୍ତି । S. paradoxa ଏବଂ S. eriopsus ଏହାର ଦୁଇଟି ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି ।

**ଡ଼ିଓନ (Dioon)**- ଏହାର ପତ୍ରଗୁଡ଼ିକ ଦେଖିବାକୁ ଯଥେଷ୍ଟ ସୁନ୍ଦର । ଏହାର କେତେକ ଜାତିରେ କଣ୍ଟା ଦେଖାଯାଏ । D. spinolosum ଏହାର ଏକ ଡେଙ୍ଗା ଜାତି । ଗଛଗୁଡ଼ିକ ୧୨ ମିଟର ପର୍ଯ୍ୟନ୍ତ ଉଚ୍ଚା ହୁଅନ୍ତି । କିନ୍ତୁ D. purpussi ଏବଂ D. edula ସାଧାରଣତଃ ଖର୍ବକାୟ ।

॥ ଷୋଡ଼ଶ ପରିଚ୍ଛେଦ ॥

# ଫର୍ଣ୍ଣ

## (Fern)

ଫର୍ଣ୍ଣ ବା ଗଛକର୍ଣ୍ଣଗୁଡ଼ିକ ପତ୍ରଭରା ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦ । ଏମାନେ ଅପୁଷ୍ପକ ହେଲେ ହେଁ ଏଗୁଡ଼ିକ ବିଭିନ୍ନ ଆକୃତି ବିଶିଷ୍ଟ ପତ୍ରରାଜି ଗୃହର ଅଭ୍ୟନ୍ତରକୁ ସାଜାଇବାରେ ବିଶେଷ ସାହାଯ୍ୟ କରିଥାଏ । ମାଟିକୁଣ୍ଡ, ସିମେଣ୍ଟବକ୍ସ, ବାରଣ୍ଡା ବକ୍ସ, ଦୋଳାୟମାନ କୁଣ୍ଡଗୁଡ଼ିକରେ ଏଗୁଡ଼ିକ ଲଗାଯାଇଥାଏ । ଅନ୍ୟାନ୍ୟ ଉଦ୍ଭିଦମାନଙ୍କଠାରୁ ଫର୍ଣ୍ଣମାନଙ୍କର ସମ୍ବାହୀ ପ୍ରଣାଳୀ (Vascular system) ସମ୍ପୂର୍ଣ୍ଣ ଭିନ୍ନ । ଏହାର ଚେର, ଡେମ୍ଫ ଓ ପତ୍ରକୁ ବାହୁଙ୍ଗା କୁହାଯାଏ । ଏହିଗଛଗୁଡ଼ିକରେ ଫଳପୁଷ୍ପ ହୁଏନାହିଁ । ପତ୍ରର ପଛପଟରେ ସୃଷ୍ଟିହୋଇଥିବା ରେଣୁ (Spore) ଗୁଡ଼ିକୁ ନେଇ ନୂଆଗଛ କରାଯାଏ । ଗୋଟିଏ ପତ୍ରରେ ଲକ୍ଷ ଲକ୍ଷ ଏହି ପ୍ରକାର ରେଣୁ ସୃଷ୍ଟି ହୋଇଥାଏ । ପୁରୁଣା ପତ୍ରରେ ଏହା ସୃଷ୍ଟି ହୋଇଥାଏ ଓ ଏଗୁଡ଼ିକ ପାକଳ ହେଲା ପରେ ପବନରେ ଉଡ଼ି ବିଛାଡ଼ିହୋଇ ପଡ଼ନ୍ତି । ରେଣୁ ଗୁଡ଼ିକ ଉପଯୁକ୍ତ ଉତ୍ତାପ ପାଇ ଗଜା ହୁଏ ଓ ରେଣୁର ତଳପାଖରେ ଶୁଣ୍ଢପରି ଏକ ଅଙ୍ଗ ବାହାରେ । ଏହି ଶୁଣ୍ଢ ସାହାଯ୍ୟରେ ଏହା ମାଟି ସହିତ ଲାଗିରହେ । ଫର୍ଣ୍ଣର ଏହି ଅଙ୍ଗକୁ ପ୍ରୋଥାଲସ (Prothalus) କୁହାଯାଏ । ଏହି ପ୍ରୋଥାଲସ୍‌ର ମୂଳରେ ପୁରୁଷ ଶୁକ୍ରାଣୁକୋଷ (Male antheridium) ଥାଏ । କିନ୍ତୁ ଏହାର ଅଗ୍ରଭାଗ ଆଡ଼କୁ ଡିମ୍ବାଣୁଗୁଡ଼ିକ ଲାଗି ଥାଏ । ଦୁଇଟିର ସଂଗମରେ ଗର୍ଭାଧାନ ହେଲେ ନୂତନ ଗଛ ସୃଷ୍ଟି ହୁଏ । ବର୍ତ୍ତମାନ ସୁଦ୍ଧା ପୃଥିବୀରେ ୯୦୦୦ ରୁ ଅଧିକ ଫର୍ଣ୍ଣ ଥିବାର ଅନୁମାନ କରାଯାଏ । ଶୀତମଣ୍ଡଳୀୟ ବରଫପାତ ଅଞ୍ଚଳରେ ଏଗୁଡ଼ିକର ସଂଖ୍ୟା ବହୁତ କମ୍; କିନ୍ତୁ ବିଷୁବ ଅଞ୍ଚଳରେ ଏଗୁଡ଼ିକ ବେଶୀ ଦେଖାଯାନ୍ତି । କେତେକ ଉନ୍ମୁକ୍ତ ସୂର୍ଯ୍ୟାଲୋକରେ ଓ କେତେକ ଜଳଜ ଉଦ୍ଭିଦରୂପେ ବଢ଼ିଥାନ୍ତି । କେତେକ ଜାତିର ଫର୍ଣ୍ଣ ତାଳ ଗଛପରି ୨୫ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ପ୍ରତ୍ୟେକ ଗଣ୍ଡିର ଅଗ୍ରରୁ କିମ୍ବା ମୂଳରୁ ପତ୍ରଗୁଡ଼ିକ ବାହୁଙ୍ଗା ଆକୃତିର ହୋଇ ବାହାରିଥାନ୍ତି । ଅନ୍ୟ

କେତେକ ଜାତିର **ଫର୍ଣ୍ଣ** ଲତାପରି ମାଡ଼ନ୍ତି । ସେମାନଙ୍କର ବଢ଼ିବା ପ୍ରକୃତି ଅନୁସାରେ ଫର୍ଣ୍ଣମାନଙ୍କୁ **ଛଅଭାଗରେ** ବିଭକ୍ତ କରାଯାଇଛି ।

**ବୃକ୍ଷଫର୍ଣ୍ଣ** (Cyatheaceae)- ଏହି ପରିବାର ଅର୍ନ୍ତଗତ ଫର୍ଣ୍ଣଗୁଡ଼ିକ ବୃକ୍ଷଭଳି ବଢ଼ନ୍ତି ଓ ଅନେକ ସମୟରେ ୨୫ ୩୦ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଅନ୍ତି । ଏହାର କାଣ୍ଡଗୁଡ଼ିକର ଆସିଥିବା ପୁରୁଣା ପତ୍ରର ଶେଷାଂଶ କାତିଭଳି ଲାଗି ରହିଥାଏ । *Alsophila glauca, Cythea dilbata*, Cyathea arborea ଏହାର ଅନ୍ତର୍ଭୁକ୍ତ । C. arborea ଆମ ଦେଶର ଦାର୍ଜିଲିଂ, କାଲିମ୍ପଗ ଓ ଆସାମର ପାର୍ବତ୍ୟ ଅଞ୍ଚଳରେ ବହୁ ପରିମାଣରେ ଦେଖାଯାଏ ।

**ଲୋମଶ ଫର୍ଣ୍ଣ** (Dicksoniaceae)- ଏହି ବର୍ଗର ଫର୍ଣ୍ଣଗୁଡ଼ିକ ଦେଖିବାକୁ ବୃକ୍ଷ ଫର୍ଣ୍ଣର ଆକୃତି ପରି; କିନ୍ତୁ ଏହାର ଦେହ ଲୋମାବୃତ୍ତ । *Alsophila Coofreri, Cibotium baromtz, Dicksonia squarrosa, Dicksonia fibrosa* ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

**ସରସ ଫର୍ଣ୍ଣ** (Ceratopteridaceae)- ଏହି ବର୍ଗ ଅନ୍ତର୍ଗତ ଫର୍ଣ୍ଣଗୁଡ଼ିକର ପତ୍ର ସାମାନ୍ୟ ମୋଟା ଓ ମାଂସଳ । ବେଳେବେଳେ ପତ୍ରଗୁଡ଼ିକ ହେମକେଦାର ପତ୍ର ଭଳି ପ୍ରତୀୟମାନ ହୁଏ । Ceratopteris *thalictroidas* ଫର୍ଣ୍ଣ ଏହାର ଅନ୍ତର୍ଗତ ।

**ଜଳଜ ବା ଭାସମାନ ଫର୍ଣ୍ଣ** (Salviniaceae) ଜଳଜ ଫର୍ଣ୍ଣଗୁଡ଼ିକ ଦେଖିବାକୁ ସୁନସୁନିଆ ଗଛପରି । କିନ୍ତୁ ଏହାର ଡେମ୍ଫଗୁଡ଼ିକ ଦୀର୍ଘ ଓ ବାଦାମି ରଙ୍ଗର । ଗଛମୂଳରୁ ମେଞ୍ଚା ମେଞ୍ଚା ହୋଇ ଦୁଇରୁ ଚାରୋଟି ଉପପତ୍ର ଥିବା ପତ୍ରଗୁଡ଼ିକ ବାହାରିଥାଏ । ଏଗୁଡ଼ିକ ପାଣିରେ ଭାସୁଥାନ୍ତି । Marsilea quandrifolia ଓ Azolla caroliniana ଏହାର ଅନ୍ତର୍ଭୁକ୍ତ ।

**ଲତା ଫର୍ଣ୍ଣ** (Scizaoaceae)- ଏହି ଜାତିର ଫର୍ଣ୍ଣଗୁଡ଼ିକ ଲତାପରି ମାଡ଼ିଥାନ୍ତି । ସାଧାରଣତଃ କ୍ଷୁଦ୍ରକାୟ । ଦେବାଳୟ କାନ୍ଥ ଓ ପୁରୁଣା ପ୍ରାଚୀର ଫାଙ୍କରେ ଏଗୁଡ଼ିକ ବଢ଼ିଥାନ୍ତି । ଏହି ଜାତିର କେତେକ ପତ୍ରରେ ରେଣୁ ସୃଷ୍ଟି ହୁଏନାହିଁ । ସେଗୁଡ଼ିକୁ ରେଣୁହୀନ ବାହୁଙ୍ଗା (Sterilefronds) କୁହାଯାଏ ।

*Lygodium japonicum, Lygodium* volubile, *Aneimia Phyllitidis* ପ୍ରଭୃତି ଏହି ଜାତିର ଫର୍ଣ୍ଣମାନଙ୍କ ମଧ୍ୟରେ ପ୍ରଧାନ ।

**ଚାବୁକ ଫର୍ଣ୍ଣ** (Ophioglossaceae)- ଏହି ବର୍ଗ ଅନ୍ତର୍ଗତ ଫର୍ଣ୍ଣ ଗୁଡ଼ିକରେ ପତ୍ରଗୁଡ଼ିକ ଚାବୁକ ଭଳି ଦୀର୍ଘ ଓ ଶୀର୍ଣ୍ଣକାୟ । *Ophioglossumk bulgatum, Helminthostrachys zeylanica* ପ୍ରଭୃତି ଏହାର ଅନ୍ତର୍ଗତ ।

**ଗୁଳ୍ମଫର୍ଣ୍ଣ** (Osmundaceae)- ଏହି ଜାତିର ଫର୍ଣ୍ଣଗୁଡ଼ିକ ୨ ମିଟର ପର୍ଯ୍ୟନ୍ତ ବଢ଼ନ୍ତି । ପତ୍ରଗୁଡ଼ିକ ଦ୍ୱିପକ୍ଷକ କିନ୍ତୁ ରେଣୁଯୁକ୍ତ ପତ୍ରଗୁଡ଼ିକ ବର୍ତ୍ତୁଳାକାର ଭାବେ ମଝିରୁ ବାହାରିଥାନ୍ତି । *Osmunda rigalis, Osmunda cinnamunea,* Osmunda *claytiniana* ଏହି ଜାତିର ଅନ୍ତର୍ଗତ ।

**ମାର୍ଟିସିଏ ଫର୍ଣ୍ଣ** (Marattiaceae)- ଏଗୁଡ଼ିକ ଖର୍ବକାୟ, କାଣ୍ଡଶୂନ୍ୟ ଓ ବହୁଳ ପତ୍ରବିଶିଷ୍ଟ ଫର୍ଣ୍ଣ । *Marattia fraxinea, M. Smithii* angiopteris erecta ଏହାର ଅନ୍ତର୍ଗତ ।

**ଗ୍ଲୋଚିନିଆ ଫର୍ଣ୍ଣ** (Gleicheniaceae)- ଗ୍ଲେଚିନିଆ ଫର୍ଣ୍ଣଗୁଡ଼ିକର ପତ୍ରଗୁଡ଼ିକ ଦୀର୍ଘକାୟ ଓ ମିରାମିଡ୍ ଆକୃତିର । ପତ୍ରଗୁଡ଼ିକ ହାତକୁ ଟାଣୁଆ ଲାଗେ । ବେଳେ ବେଳେ ଗୋଟିଏ ଦୀର୍ଘକାଣ୍ଡରେ ୨/୩ଟି ଥାକରେ ବୃତ୍ତାକାରରେ ପତ୍ରଗୁଡ଼ିକ ସଜା ହୋଇ ରହିଥାଏ । *Gleichenia ruprestris* ଓ *Gleichenia linearis* ଏହାର ଅନ୍ତର୍ଭୁକ୍ତ ।

**ପାଦପ ଫର୍ଣ୍ଣ** (Polypodiaceae)- ଅଧିକାଂଶ ବଗିଚା ଉପଯୋଗୀ ଫର୍ଣ୍ଣ ଏହି ବର୍ଗର ଅନ୍ତର୍ଭୁକ୍ତ । ଏହାର ଧାବକ କାଣ୍ଡଗୁଡ଼ିକ ଚାରିଆଡ଼କୁ ମାଡ଼ି ପାରନ୍ତି । ମାଟିଉପରେ କେବଳ ଗଛଗୁଡ଼ିକ ଚାରିଆଡ଼କୁ ବିନ୍ଧାଇ ହୋଇ ରହିଥାଏ । ଏହାର ଅନ୍ତର୍ଗତ ପ୍ରଜାତିଗୁଡ଼ିକ ମଧ୍ୟରେ Adiantum, Asplenium, Acrostichxm, Actiniopteiu, Cheilanthes, Coniogramme, Cyrtomium, Davallia, Bolbitis, Drynaria, Hypolepis, Doodia, Nephrolepis, Nephrodium, Oxichium, Pellaea, Pteris,d Platycerium, Polypodium ପ୍ରଭୃତି ପ୍ରଧାନ ।



ଆସ୍‌ପ୍ଲେନିଅମ୍



ଆଡ଼ିଏଣ୍ଟମ୍

ଆମ ଉଦ୍ୟାନରେ ସହଜରେ ଲଗାଯାଉଥିବା ଫର୍ଣ୍ଣଗୁଡ଼ିକ ମଧ୍ୟରେ ମୁକ୍ତକେଶୀ (Adiantum)ଏକ ପ୍ରଧାନ ଫର୍ଣ୍ଣ । ଏହାର ବିଭିନ୍ନ ଜାତି ଦେଖାଯାଏ । ପତ୍ରଗୁଡ଼ିକ ଚିକ୍‌କଣ । ବାହୁଙ୍ଗାର ମଧ୍ୟଶିରାଟି ବାଇଗଣି ବା




**ମେଡ଼ନହେୟାର ଫର୍ଣ୍ଣ**

କଳାରଙ୍ଗ ଅଟେ । ଏହାର ପତ୍ରଗୁଡ଼ିକ ପାଣିରେ ବୁଡ଼ାଇଲେ ସହଜରେ ଓଦା ହୁଏ ନାହିଁ । କୁଣ୍ଡରେ ଏହା ୩୦ ସେ.ମି. ପର୍ଯ୍ୟନ୍ତ ବଢ଼ିପାରେ । ରୂପାଲି ଫର୍ଣ୍ଣ (Anaemia) ଗୁଡ଼ିକ କ୍ଷୁଦ୍ରକାୟ । ଛୋଟ ଛୋଟ କୁଣ୍ଡ ତଥା ଦୋଳାୟମାନ କୁଣ୍ଡଗୁଡ଼ିକରେ ଏହାକୁ ଲଗାଯାଏ । A. rotundifolia ଏହାର ଏକ ଭଲ ଜାତି । ଗାଜରଫର୍ଣ୍ଣ (Angiopteris) କୁ କନଜରଭେଟରୀ ଭିତରେ ଲଗାଯାଇପାରେ କାରଣ, ଏହା ୪/୫ ଫୁଟ ପର୍ଯ୍ୟନ୍ତ ବଢ଼େ ।

**ଭଲ୍ଲୁକପାଦୀ ଫର୍ଣ୍ଣ** (Davalia)- ଏହି ଜାତିର ଫର୍ଣ୍ଣଗୁଡ଼ିକୁ ବଡ଼ ବଡ଼ କୁଣ୍ଡରେ ଲଗାଯିବା ଉଚିତ । ଗଛମୂଳରୁ ରୂପାନ୍ତରିତ୍‌ କାଣ୍ଡଗୁଡ଼ିକ ଚାରିଆଡ଼କୁ ପ୍ରସାରିତ ହୋଇ ଭାଲୁ ପାଦପରି ଦିଶନ୍ତି ।

**ଲାଇଗୋଡ଼ିଅମ୍ ଫର୍ଣ୍ଣ** (Lygodium)- ଏହି ଫର୍ଣ୍ଣର ପତ୍ରଗୁଡ଼ିକ ଜିଭ ଓ ହାଡ଼ ପରି ଦିଶେ । ଏଗୁଡ଼ିକ ଲତାପରି ମାଡ଼େ, ତେଣୁ ଖମ୍ବ କଡ଼େ କଡ଼େ ଏହାକୁ କୁଣ୍ଡରେ ବଢ଼ାଇବା ଉଚିତ ।

**ନେଫ୍ରୋଡ଼ିଅମ ଫର୍ଣ୍ଣ** (Nephrodium)- ବାରଣ୍ଡା ସଜାଇବା ପାଇଁ ଏହା ଏକ ଉପଯୁକ୍ତ ଫର୍ଣ୍ଣ । ଏହା ୫୦ ସେ.ମି. ପର୍ଯ୍ୟନ୍ତ ବଢ଼େ । ପତ୍ରଗୁଡ଼ିକ ପକ୍ଷଳ ଓ ଦେଖିବାକୁ ସୁନ୍ଦର ।

**ନେଫ୍ରୋଲେପସିସ ଫର୍ଣ୍ଣ** (Nephrolepsis)- ଏହି ଫର୍ଣ୍ଣ ଗୁଡ଼ିକ ଉଷ୍ଣ ଜଳବାୟୁରେ ଭଲଭାବରେ ବଢ଼ିପାରନ୍ତି । ଦୋଳାୟମାନ କୁଣ୍ଡଗୁଡ଼ିକରେ ଏଗୁଡ଼ିକୁ ଲଗାଇଲେ ସୁନ୍ଦର ଦିଶେ । ଏହାର ପୁରୁଣା ଡାଳରୁ ନୂଆ ଷୋଲନମାନ ବାହାରିଥାଏ ।

**ଟେରିସ ଫର୍ଣ୍ଣ** (Pteris)- ଏହି ଗଛଗୁଡ଼ିକରେ ବିଶେଷ ପତ୍ର ନଥିଲେ ବି ତାର ଚିତ୍ରବିଚିତ୍ର ବାହୁଙ୍ଗାଗୁଡ଼ିକ ବିଶେଷ ସୁନ୍ଦର ଦିଶେ । ସବୁଜ ପତ୍ରରେ ଧଳା ରଙ୍ଗର ଦାଗ ଏହାର ସୌନ୍ଦର୍ଯ୍ୟବର୍ଦ୍ଧନ କରିଥାଏ ।

**ସେଲାଜେନିଲା** (Selaginella, Selaginellaceae)- ସେଲାଜିନିଲା ଗଛଗୁଡ଼ିକ ଦେଖିବାକୁ ଫର୍ଣ୍ଣ ଗଛ ପରି । ଏଗୁଡ଼ିକୁ କୁଣ୍ଡରେ ଲଗାଯାଏ । କେତେକ ସେଲାଜିନିଲାର ପତ୍ରଗୁଡ଼ିକ ଚିତ୍ରିତ । ଏହାର ପତ୍ରଗୁଡ଼ିକ କାତିଭଳି ଦିଶୁଥିବାରୁ ଫର୍ଣ୍ଣ ଗଛଠାରୁ ଏହା ସହଜରେ ବାରି ହୁଏ । ସନ୍ତସନ୍ତିଆ ଛାଇସ୍ଥାନରେ ଏହା ଭଲ ବଢ଼ିପାରେ । ପ୍ରସ୍ତର ଉଦ୍ୟାନଗୁଡ଼ିକରେ ଏହାକୁ ବ୍ୟବହାର କରାଯାଇଥାଏ । ଉଦ୍ୟାନର ଛାଇ ସ୍ଥାନଗୁଡ଼ିକରେ ଏହାକୁ ଧାଡ଼ି ଧାଡ଼ି କରି ଲଗାଯାଏ । ବର୍ଷାଦିନେ ଗଛଗୁଡ଼ିକ ବେଶୀ ସୁନ୍ଦର ଦିଶେ । ଏହାର ପତ୍ରଗୁଡ଼ିକ ପୁଷ୍ପଶଯ୍ୟାରେ ବ୍ୟବହାର କରାଯାଇଥାଏ । କେତେକ ପ୍ରଧାନ ସିଲାଜିନିଲାଗୁଡ଼ିକ ହେଲା S. lepidophylla, S. plumosa, S. oncinata ଓ S. variegata । ଫର୍ଣ୍ଣ ଗଛ ପରି ଏହାର ଯତ୍ନ ନିଆଯାଏ । ସିଲାଜିନେଲା ଡାଳରୁ ନୂଆଗଛ ପ୍ରସ୍ତୁତ କରାଯାଏ ।

॥ ସପ୍ତଦଶ ପରିଚ୍ଛେଦ ॥

# କାକଟସ୍

## (Cactus)

ପୃଥିବୀର ବିଭିନ୍ନ କୌତୂହଳପ୍ରଦ ଉଦ୍ଭିଦମାନଙ୍କ ମଧ୍ୟରେ କାକଟସ୍ ଜାତିର ଉଦ୍ଭିଦଗୁଡ଼ିକ ଅନ୍ତର୍ଭୁକ୍ତ । ଏଗୁଡ଼ିକ ମରୁଅଞ୍ଚଳର ଉଦ୍ଭିଦ । ପ୍ରତ୍ୟେକ କାକଟସ୍ ସେମାନଙ୍କ ଜନ୍ମଭୂମିରେ ଭଲଭାବରେ ବଢ଼ିଥାନ୍ତି । ସେମାନଙ୍କୁ ଅନ୍ୟତ୍ର ଲଗାଇବା ସମୟରେ ବିଶେଷ ଯତ୍ନ ନେବାକୁ ହୋଇଥାଏ । କାକଟସ୍ ଜାତିର ଉଦ୍ଭିଦଗୁଡ଼ିକର ବହିଃର୍ଗୁଣ, ଅନ୍ତଃର୍ଗୁଣ ତଥା ଜୀବନକ୍ରିୟା ପଦ୍ଧତି ସାଧାରଣ ଉଦ୍ଭିଦଠାରୁ ପୃଥକ ଅଟେ । ଉଦ୍ଭିଦବିତ୍‌ମାନଙ୍କ ମତରେ ଏକଦା ଆମେରିକାର ଏକ ସମଶୀତୋଷ୍ଣ ଜଳବାୟୁ ଅଞ୍ଚଳ କ୍ରମେ ମରୁଭୂମିରେ ପରିଣତ ହେବାରୁ ସେଠାରେ ଥିବା ବୃକ୍ଷଲତାମାନଙ୍କର କ୍ରମବିବର୍ଦ୍ଧନ ଘଟିବା ଫଳରେ କାକଟସ୍ ଜାତିର ଉଦ୍ଭିଦ ସୃଷ୍ଟି ହୋଇଅଛି । ଏହି ଉଦ୍ଭିଦଗୁଡ଼ିକର କାଣ୍ଡ ପତ୍ରଶୂନ୍ୟ, ମାଂସଳ ଓ କଣ୍ଟାଯୁକ୍ତ । କାକଟସ ଦେହରେ ଥିବା ପ୍ରତ୍ୟେକ ପବର ଗଣ୍ଠିଗୁଡ଼ିକ ବଡ଼ ବଡ଼ ଓ ଅନ୍ୟାନ୍ୟ ଉଦ୍ଭିଦର ଗଣ୍ଠିସହ ତୁଳନୀୟ । ବର୍ତ୍ତମାନ ସୁଦ୍ଧା ୨୦୦୦ ରୁ ଅଧିକ ଜାତିର କାକଟସ୍ ଚିହ୍ନଟ କରାଯାଇଛି । ଅଧିକାଂଶ କାକଟସ୍‌ର ଜନ୍ମସ୍ଥାନ ଚିଲି, ମେକସିକୋ, ପେରୁ ଓ ବଲିଭିଆ ପ୍ରଭୃତି ସ୍ଥାନବୋଲି ଧରାଯାଇଛି ।

କାକଟସ୍ ଗୁଡ଼ିକ କାକଟେସି (Cactaceae)- ବର୍ଗର ଅନ୍ତର୍ଭୁକ୍ତ । ଏହି ବର୍ଗରେ ୩ଟି ଉପବର୍ଗ (tribe) ରହିଅଛି ।

**(୧) ବୃକ୍ଷ କାକଟସ** (Pereskieae) ପରେସକିଆ ଉପଜାତିରେ ପୃଥିବୀରେ ସବୁଠାରୁ ଆଦିମ କାକଟସଗୁଡ଼ିକ ଅନ୍ତର୍ଭୁକ୍ତ । ଏଗୁଡ଼ିକୁ ଦେଖିଲେ ସହଜରେ କାକଟସ ବୋଲି ଅନୁମାନ କରି ହେବନାହିଁ । ଗୁଳ୍ମଭଳି ଏହା ୩/୪ ମିଟର ବଢ଼ିପାରନ୍ତି । ଫୁଲ ଫୁଟିଲାବେଳେ ଦୂରରୁ ଜଙ୍ଗଲି ଗୋଲାପଭଳି ଓ ଅନ୍ୟସମୟରେ ଦୂରରୁ କମଳା ଗଛ ଭଳି ଦିଶନ୍ତି । ଏହି ଜାତିର ଉଦ୍ଭିଦଗୁଡ଼ିକ



ପରେସ୍‌କିଆ

ପ୍ରଲୋମଶୂନ୍ୟ । *Pereskia bleo, P. acculeata, P. maorei* ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

**(୨) ନାଗଫେଣୀ କାକଟସ** (Opuntieae)- ଏହି ପ୍ରଜାତିର ଅନ୍ତର୍ଭୁକ୍ତ କାକଟସଗୁଡ଼ିକର ଶାଖା ଉପଶାଖାଗୁଡ଼ିକ ମାଂସଳ ଓ ଗୋଟିକ ସହିତ



ଅପୁମ୍‌ସିଆ

ଅନ୍ୟ ଗୋଟିଏ ଯୋଡ଼ା ହୋଇଥାଏ । କାଣ୍ଡଗୁଡ଼ିକ ଦେଖିବାକୁ ମୋଟା ପତ୍ର ପରି କିମ୍ବା କେତେକ କ୍ଷେତ୍ରରେ ବର୍ତ୍ତୁଳାକାର ହୋଇଥାଏ । ଅଧିକାଂଶ ସମୟରେ ଏଥିରେ କଣ୍ଟାଗୁଡ଼ିକ ଗୁଚ୍ଛ ଆକାରରେ ଲାଗି ରହିଥାଏ । ଏଗୁଡ଼ିକ ପତ୍ରଶୂନ୍ୟ । କେତେକ ନାଗଫେଣୀରେ ପତ୍ର ଦେଖାଗଲେ ବି ସେଗୁଡ଼ିକ କମ୍ ସମୟରେ ଝଡ଼ିପଡ଼ିଥାନ୍ତି । ଏହାର ଫୁଲଗୁଡ଼ିକ ଚକ୍ରାକାର ଓ ବୃନ୍ତଶୂନ୍ୟ । *O. vulgaris,*

*O.falcata, O. erinaceeae, O. manilata, O. volis, O. cylindrica, O. imbricata, O. leptocaulis, O. microdesys, Nopalea brittonia, N. dijecta* ପ୍ରଭୃତି ପ୍ରଧାନ ପ୍ରଧାନ ନାଗଫେଣୀ କାକଟସ୍ ଅଟନ୍ତି ।



ଅପୁନ୍‌ସିଆ

**(୩) ସ୍ତମ୍ଭାକାର କାକଟସ୍** (Cereeae)- ଏହି ଉପବର୍ଗରେ ସବୁଠାରୁ ବେଶୀ ପ୍ରକାରର କାକଟସ୍ ଦେଖିବାକୁ ମିଳେ । ଏହାର କାଣ୍ଡଗୁଡ଼ିକ ମାଂସଳ ଶିରାଯୁକ୍ତ, ସାଧାରଣତଃ ଖମ୍ବ ଭଳି କିମ୍ବା ଗୋଲାକାର ଆକୃତିର ହୋଇ ବଢ଼ିଥାଏ । ନାଗେଫେଣୀରେ ଦେଖାଯାଉଥିବା ପତ୍ରଭଳି ମୋଟା କାଣ୍ଡ ଏଥିରେ ଦେଖାଯାଏ ନାହିଁ । ବୃନ୍ତଶୂନ୍ୟ ଫୁଲଗୁଡ଼ିକ ଫନେଲ ଆକୃତିର ଓ ଦେଖିବାକୁ



ସିରିଅସ୍

ସୁନ୍ଦର । ଏହି ଉପବର୍ଗରେ ବେଶୀ ସଂଖ୍ୟକ କାକଟସ୍ ଥିବାରୁ ଏହାକୁ ୮ଟି ଶାଖାବର୍ଗରେ ବିଭକ୍ତ କରାଯାଇଅଛି । (୧) ଟର୍ଚ୍ଚ କାକଟସ୍ (Cereanae) ଏଗୁଡ଼ିକ ଗଛ ଭଳି ବଢ଼ନ୍ତି । ଦେହସାରା ଅନେକ ଶିରାଯୁକ୍ତ ଶାଖା ଦେଖାଯାଏ । ଫୁଲଗୁଡ଼ିକ ଫନେଲ ଆକୃତିର ଏବଂ ଅଗ୍ରଭାଗରେ ଫୁଟନ୍ତି । *Acanthocercus arthrocereus, Borzi cactus, Cephalo cereus, Cercusk Karnige, Cleisto cactus, Erdisia escontira,* Espostae, Lililychonia Haagocerus, Harrisia, Heliocereus, Lophocercus, Monvillea, Neocarden Asia, Nictocercus, Oreocereus, Rathbunia, Tricocereus, Wilcoxia ପ୍ରଭୃତି ପ୍ରଜାତି ଏହାର ଅନ୍ତର୍ଭୁକ୍ତ ।

**କ୍ରିପିଙ୍ଗ କାକଟସ** (Hylocereanae)- ଏହି ବିଭାଗର ଅନ୍ତର୍ଗତ କାକଟସଗୁଡ଼ିକ ଲତାପରି ବୃକ୍ଷ ଓ ଅନ୍ୟାନ୍ୟ ଆଶ୍ରୟ ଉପରେ ବଢ଼ନ୍ତି । କାଣ୍ଡର ଅନେକ ସ୍ଥାନରୁ ବାୟବୀୟ ଚେର ବାହାରି ଏହାକୁ ବଢ଼ିବାରେ ସାହାଯ୍ୟ କରିଥାନ୍ତି । ଏହାର ଫୁଲଗୁଡ଼ିକ ରାତିରେ ଫୁଟେ । Aoporocactus, Caryptocercus Hylocereus, Diama, Selenicercus, Weberoccerus, Werckleocerus ପ୍ରଭୃତି ପ୍ରଜାତି ଏହାର ଅନ୍ତର୍ଭୁକ୍ତ ।

**ଶୁଣ୍ଢ କାକଟସ୍** (Echinocereanae)- ଏହି ପ୍ରକାର କାକଟସ୍‌ଗୁଡ଼ିକ ଖର୍ବକାୟ । ଗୁଚ୍ଛ ଆକାରରେ କିମ୍ବା ଏକାକୀ ବଢ଼ିଥାନ୍ତି । ଏହାର ଦେହସାରା ଅନେକ ଶିରା ଥାଏ । ଫୁଲଗୁଡ଼ିକ ଘଣ୍ଟିଭଳି । ଫୁଲଗୁଡ଼ିକ



ଏଚିନୋସିରିଅସ୍

ଅଗ୍ରଭାଗରେ ନ ଫୁଟି ପାର୍ଶ୍ୱରେ ଫୁଟିଥାନ୍ତି । Chamaecereus, Echinocércus, Echinopsis, Lubiria rebutia ପ୍ରଭୃତି ପ୍ରଧାନ ।

**(୪) କ୍ଷାର କାକଟସ୍** (Echino Cactaneae)- ଏହି ପ୍ରକାର କାକଟସ୍‌ଗୁଡ଼ିକ ବହୁତ କୋଣଯୁକ୍ତ ଓ କଣ୍ଟାରେଯୁକ୍ତ ଭରପୂର ହୋଇଥାଏ । ଏଗୁଡ଼ିକ ଖର୍ବକାୟ ଓ ଗୁଚ୍ଛ ହୋଇ ବଢ଼ନ୍ତି । ଫୁଲଗୁଡ଼ିକ ସାଧାରଣତଃ ଅଗ୍ରଭାଗ



ଏଚିନୋକାକଟସ୍

ଆଡ଼କୁ ଫୁଟିଥାଏ । Acanthocalycsium, Eryoceopus, Echinocactus, Echinomastus, Ferocactus, helmat cyactus, Lophophora, Mila, Notocactus, Oroya, Parodia, Utahia ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

**(୫) ମେଲନ କାକଟସ୍** (Cactanae)- ଏଗୁଡ଼ିକ ସାଧାରଣତଃ ତରଭୁଜ ଆକୃତିର କିନ୍ତୁ ଖର୍ବକାୟ । ପ୍ରତ୍ୟେକ କାକଟସ୍ ଉପରେ ଟୋପିଭଳି ଲୋମଯୁକ୍ତ ଗୋଲାକାର ଅଂଶ ଥାଏ । ତା'ରି ଉପରେ ଫୁଲଫୁଟି ଫଳ ହୁଏ । Melocactus ଏହାର ଅନ୍ତର୍ଭୁକ୍ତ ।

**(୬) ଖ୍ରୀଷ୍ଟମାସ କାକଟସ୍** (Epiphyllanae) ଏହି ବିଭାଗର ଅନ୍ତର୍ଭୁକ୍ତ କାକଟସ୍‌ଗୁଡ଼ିକ ବସ୍ତୁତଃ ଉଷ୍ଣ ଜଳବାୟୁ ମଣ୍ଡଳରେ ବଢ଼ନ୍ତି । କଣ୍ଟାଶୂନ୍ୟ ଓ ବାୟବୀୟ ଚେରଯୁକ୍ତ ଅଟନ୍ତି । Epiphyllanthus, Epiphyllopsis,

Epiphyllum, Nopalxochia, Zygocactus, Schlum bergera ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

**(୭) ପିନକୁସନ କାକଟସ୍** (Coriphanthanae) - ଏହି କାକଟସ୍ ଗୁଡ଼ିକ ବର୍ତ୍ତୁଳାକାର କିମ୍ବା ଗୋଲାକାର । ଗୋଟିଏ ସ୍ଥାନରେ ଗୁଚ୍ଛଭଳି ବଢ଼ନ୍ତି । ଏଗୁଡ଼ିକ ବହୁ କଣ୍ଟାଯୁକ୍ତ ଓ ଗଛସାରା ନିପଲ ଆକୃତିର ଅଂଶ ଭରି ରହିଥାଏ ।



ମାମିଲାରିଆ

Mammillaria, Bartschella, Cochemiea, Dolychothele, Escobaria, Neobesseya Solisia, Thelocactus ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

**(୮) ଜଞ୍ଜିର କାକଟସ୍** (Rhipsalidanae)- ଏହି ଜାତିର କାକଟସ୍‌ଗୁଡ଼ିକରେ ବହୁ ଶାଖା ପ୍ରଶାଖା ଥାଏ । ଶାଖାଗୁଡ଼ିକ ଦୀର୍ଘ, ବର୍ତ୍ତୁଳାକାର ଓ ଚେପଟା । କେତେକ କ୍ଷେତ୍ରରେ ଶାଖାଗୁଡ଼ିକ ପେଣ୍ଟା ପେଣ୍ଟା ହୋଇ ତଳକୁ ଝୁଲିଥାନ୍ତି । ଗଛରେ ଛୋଟ ଛୋଟ ଫଳ ଓ ଫୁଲ ଧରେ । Rhypsalis, Hatyora, Acanthochipsalis, Erythrorhipsalis ପ୍ରଭୃତି କାକଟସ୍ ଏହାର ଅନ୍ତର୍ଭୁକ୍ତ ।

ପ୍ରଥମରୁ କୁହାଯାଇଛି ଯେ କାକଟସ୍‌ଗୁଡ଼ିକ ପ୍ରତିକୂଳ ବାତାବରଣରେ ସହଜରେ ବଢ଼ିପାରେ । କେତେକ ସ୍ୱତନ୍ତ୍ର ଜାତିର କାକଟସ୍‌ଗୁଡ଼ିକ ଛାଡ଼ିଦେଲେ ଅଧିକାଂଶ କାକଟସ୍ ସବୁ ସ୍ଥାନରେ ବଢ଼ିପାରନ୍ତି । ସମ୍ପୂର୍ଣ୍ଣ ସୂର୍ଯ୍ୟାଲୋକରେ



କାଇଗୋ କାକଟସ୍

ଏହାକୁ ନ ରଖି ଖରା ଓ ଛାଇ ପଡୁଥିବା ସ୍ଥାନରେ ରଖିବା ଉଚିତ । କାକଟସ୍ ଗୁଡ଼ିକ ମରୁଜାତିର ଉଦ୍ଭିଦ ହୋଇଥିବାରୁ ଏଗୁଡ଼ିକ ଶରୀରରେ ପର୍ଯ୍ୟାପ୍ତ ପରିମାଣରେ ଜଳ ସଂରକ୍ଷିତ ହୋଇ ରହିପାରିବାର କ୍ଷମତା ଥାଏ । ତେଣୁ ଜଳବହୁଳ ଅବସ୍ଥାରେ କିମ୍ୱା ଅନୁପଯୁକ୍ତ ଜଳନିଷ୍କାସନ ଅବସ୍ଥାରେ ଏଗୁଡ଼ିକ ଶୀଘ୍ର ପଚି ନଷ୍ଟ ହୋଇଯାନ୍ତି । କାକଟସ୍‌ଗୁଡ଼ିକର ବଂଶବିସ୍ତାର ବସନ୍ତକାଳଠାରୁ ଆରମ୍ଭ ହୋଇ ବର୍ଷାକାଳ ପର୍ଯ୍ୟନ୍ତ କରାଯାଏ । ଖରାଦିନେ କାକଟସ୍‌ଗୁଡ଼ିକୁ ସକାଳେ ପାଣିଦେବା ଉଚିତ । ବଢ଼ିବା ସମୟରେ ସେମାନଙ୍କୁ କିଛି ତରଳ‌ସାର କିମ୍ୱା ମାଛଖତ ଦେବା ପ୍ରୟୋଜନ । ମାଛଖତ କାକଟସରେ ଭଲ ଫୁଲ ଫୁଟାଇବାରେ ସାହାଯ୍ୟ କରିଥାଏ । ମଝିରେ ମଝିରେ କାକଟସଗୁଡ଼ିକୁ ପାଣିସିଞ୍ଚି ଧୋଇବା ଉଚିତ । ଯେଉଁ କାକଟସ୍ ଗୁଡ଼ିକର ପତ୍ରଥାଏ ସେଗୁଡ଼ିକରେ ଅପେକ୍ଷାକୃତ ବେଶୀ ଜଳଦେବା ଦରକାର । କାକଟସ୍‌ଗୁଡ଼ିକ ଯଦିଓ ମରୁ ଅଞ୍ଚଳର ଉଦ୍ଭିଦ, ସେଗୁଡ଼ିକ ଖାଲି ବାଲିରେ ବଢ଼ିପାରନ୍ତି ନାହିଁ । ତେଣୁ ବାଲିରେ କିଛି ଜୈବିକ ଖତସାର ମିଶାଇବା ଉଚିତ । ଶୀତଦିନେ କାକଟସ୍‌ଗୁଡ଼ିକ ସୁପ୍ତ ଅବସ୍ଥାରେ ଥାନ୍ତି । ଏହି ଅବସ୍ଥାରେ ସାମାନ୍ୟ ଉତ୍ତାପ ବୃଦ୍ଧି କଲେ କାକଟସ୍ ଗଛଗୁଡ଼ିକରେ ଶୀଘ୍ର ଫୁଲଫଟେ । ଏହି ଜାତିର ଉଦ୍ଭିଦଗୁଡ଼ିକୁ ବିଶେଷଭାବରେ କୁଣ୍ଡରେ ଲଗାଯାଇଥାଏ । ଏହା ବ୍ୟତୀତ ସହଜରେ ଲଗାଯାଇ ପାରୁଥିବା କାକଟସ୍‌ଗୁଡ଼ିକୁ ବଗିଚାର ବିଭିନ୍ନ ସ୍ଥାନରେ ଲଗାଯାଏ ।

ସୌନ୍ଦର୍ଯ୍ୟ ବୃଦ୍ଧିପାଇଁ କାକଟସ୍‌ଗୁଡ଼ିକରେ ଯୋଡ଼କଲମି (Grafting) କରାଯାଏ । ସାଧାରଣତଃ ସ୍ତମ୍ଭାକାର କାକଟସ୍‌ଗୁଡ଼ିକ ଉପରେ ଗୋଲାକାର କାକଟସ୍‌ଗୁଡ଼ିକୁ ଯୋଡ଼ି ଦିଆଯାଏ । ବସନ୍ତକାଳ ପରେ ମୂଳଭାଗ ପାଇଁ ଉଦ୍ଦିଷ୍ଟ କାକଟସ୍‌ରେ ନୂତନ କରି ବଢ଼ିଥିବା ଅଂଶରେ ସେହି ବୟସର ଅନ୍ୟ କାକଟସ୍‌କୁ ଆଣି ଏକ ଖାପ୍ ଖାଇଲାଭଳି କାଟଦେଇ ଏହାର ଚାରି ପାଖରେ ଛୋଟ ଛୋଟ କାଠି ଦେଇ ଦୁଇଟି ଅଂଶକୁ ସିଧାରେ ବାନ୍ଧି ଦିଆଯାଏ । କିଛିଦିନ ପରେ ଏଗୁଡ଼ିକ ଲାଗିଯାଏ । କାକଟସ୍‌ରେ ମିଲିବଗ୍ ଥ୍ରିପ୍ ସୂତ୍ରଜୀବମାନେ ଆକ୍ରମଣ କରନ୍ତି । ଏଗୁଡ଼ିକ କବଳରୁ ଗଛଗୁଡ଼ିକୁ ରକ୍ଷାକରିବା ଉଚିତ । ଆଜିକାଲି ରଙ୍ଗିନ୍ କାକ୍‌ଟସର ବେଶୀ ବ୍ୟବହାର କରାଗଲାଣି ।



|| ଅଷ୍ଟାଦଶ ପରିଚ୍ଛେଦ ||

# ଅର୍କିଡ଼

## (Orchids)

ଉଦ୍ଭିଦଜଗତର ଆକର୍ଷଣୀୟ ଉଦ୍ଭିଦମାନଙ୍କ ମଧ୍ୟରେ ଅର୍କିଡ଼ ଅନ୍ତର୍ଭୁକ୍ତ । ଏହି ଉଦ୍ଭିଦଗୁଡ଼ିକ ଅର୍କିଡ଼େସି (Orchidaceae) ବର୍ଗର ଅନ୍ତର୍ଭୁକ୍ତ । ବର୍ତ୍ତମାନ ସୁଦ୍ଧା ପୃଥିବୀରେ ୬୦୦ ପ୍ରଜାତି ଓ ୧୫୦୦୦ ଜାତିର ଅର୍କିଡ଼ ଥିବାର ଅନୁମାନ କରାଯାଏ । ଏହାବ୍ୟତୀତ ବର୍ତ୍ତମାନ ସୁଦ୍ଧା ୩୦,୦୦୦ ରୁ ଅଧିକ ଶଙ୍କର ଜାତିର ଅର୍କିଡ଼ ବାହାର କରାଗଲାଣି । ଭୌଗୋଳିକ ପରିସ୍ଥିତିନେଇ ବିଭିନ୍ନ ପରିବେଶରେ ବିଭିନ୍ନ ପ୍ରକାର ଅର୍କିଡ଼ ଦେଖାଯାଏ । ଅର୍କିଡ଼ଗୁଡ଼ିକର ପ୍ରାକୃତିକ ବସତି ନିରୂପଣ କରିବାକୁ ଯାଇ ସମଗ୍ର ପୃଥିବୀକୁ ପାଞ୍ଚଟି ଭାଗରେ ବିଭକ୍ତ କରାଯାଇଛି । ଯଥା (୧) ଗ୍ରୀଷ୍ମମଣ୍ଡଳୀୟ ଏସୀୟ ଦେଶ– ଏହି ଦେଶଗୁଡ଼ିକରେ ଦେଖାଯାଉଥିବା ଅର୍କିଡ଼ମାନଙ୍କ ମଧ୍ୟରେ ବଲବୋଫାଇଲମ୍, କୋଲଗନ, କୋଲାଛି, ସିମ୍ବିଡ଼ିଅମ୍, ଡେଣ୍ଡ୍ରୋବିଅମ୍, ଫାଫିଓପେଡ଼ିଲମ୍, ଫାୟସ୍, ଫାଲାଇନୋପ୍‌ସିସ୍ ଏବଂ ଭେଣ୍ଡା ପ୍ରଭୃତି ପ୍ରଧାନ । ଭାରତବର୍ଷ, ମାଲେସିଆ ଓ ଫିଲପାଇନ୍ ପ୍ରଭୃତି ଦେଶଗୁଡ଼ିକରେ ଏହି ପ୍ରକାର ଅର୍କିଡ଼ ବେଶୀ ପରିମାଣରେ ଦେଖାଯାଏ ।

(୨) ଗ୍ରୀଷ୍ମମଣ୍ଡଳୀୟ ଆମେରିକା ଏହି ଅଞ୍ଚଳରେ ବ୍ରାସାଭୋଲା, ବ୍ରାସିଆ, କାଟାସେଟମ୍, କାଟାଲିଆ, ଏପିଡ଼େଣ୍ଡ୍ରମ୍, ମାସଡ଼େଭାଲିଆ, ମ୍ୟାକସିଲାରିଆ, ମିଲଟୋନିଆ, ଓନର୍ସିଡ଼ିଅମ୍, ଓଡ଼ୋଣ୍ଟୋଗ୍ଲୋସମ୍ ପ୍ରଭୃତି ଦେଖାଯାଏ ।

(୩) ଆଫ୍ରିକା ମହାଦେଶ ଏହି ଅଞ୍ଚଳରେ କମ୍ ସଂଖ୍ୟକ ଅର୍କିଡ଼ ଦେଖାଯାଏ । ଏ ଅଞ୍ଚଳରେ ଯେତେଗୁଡ଼ିଏ ଅର୍କିଡ଼ ଦେଖିବାକୁ ମିଳେ ତାହା ବିଶେଷ ଆକର୍ଷଣୀୟ ଅଟେ । ଏଗୁଡ଼ିକ ହେଲା- ଲିସୋଚିଲ୍ଲସ, ପଲିଷ୍ଟାଚିଆ, ଆନସେଲିଆ ଓ ଡିଶା ପ୍ରଭୃତି ।

(୪) ଅଷ୍ଟ୍ରେଲିଆ ମହାଦେଶ- ଏହି ମହାଦେଶରେ ସବୁଠାରୁ ବେଶୀସଂଖ୍ୟକ ଅର୍କିଡ଼ ଦେଖାଯାଇଥାଏ । ସେମାନଙ୍କ ମଧ୍ୟରେ ପ୍ରଧାନ ହେଲା- ବଲବୋଫାଇଲମ୍, କାଲାନ୍ଥେ, ସିମ୍ବିଡ଼ିଅମ୍, ଡେଣ୍ଡ୍ରୋବିୟମ, ଇରିଆ, ସ୍ପାଥୋଗ୍ଲଟିସ୍, ସର୍ଚ୍ଚୋଚିଲସ୍, ଫୋଲିଡ଼ୋଟା ପ୍ରଭୃତି ।

(୫) ଏସିଆ, ଆମେରିକା, ଇଉରୋପର ଶୀତମଣ୍ଡଳୀୟ ଅଞ୍ଚଳ- ସ୍ପିପଡ଼ିଅସ୍, ଅର୍ଚ୍ଚିସ୍, ହିରାନ୍ଥେସ୍, ପ୍ରଭୃତି ଏହି ଅଞ୍ଚଳର ପ୍ରଧାନ ଅର୍କିଡ଼ ।

ସମୁଦ୍ର ·ପତନଠାରୁ ଆରମ୍ଭକରି ୫୦୦୦ ମିଟର ଉଚ୍ଚ ପର୍ଯ୍ୟନ୍ତ ସ୍ଥାନଗୁଡ଼ିକରେ ଅର୍କିଡ଼ ଦେଖାଯାଏ । ଅର୍କିଡ଼ଗୁଡ଼ିକ ଏକବୀଜପତ୍ରୀ ଉଭିଦ ଓ ଏଗୁଡ଼ିକର ଲିଲି, ତାଳ, ଘାସ, ସପୁରୀ ପ୍ରଭୃତି ଉଭିଦ ସହିତ ସାମଞ୍ଜସ୍ୟ ଥାଏ । ଏଗୁଡ଼ିକର ଗଛଗୁଡ଼ିକ ବିଶେଷ ସୁନ୍ଦର ନ ହେଲେ ବି ମନମୁଗ୍ଧକର ପୁଷ୍ପ ଯୋଗୁଁ ହିଁ ଏହାର ଆଦର ବଢ଼ିଥାଏ । ଫୁଲଗୁଡ଼ିକ ପରିଦଳ ଓ ବୃନ୍ତଯୁକ୍ତ । ପ୍ରତ୍ୟେକ




ଅର୍କିଡ଼ ଫୁଲ

ଫୁଲ୍‌ର ୩ଟି ବୃନ୍ତି ଓ ୩ଟି ପାଖୁଡ଼ା ଥାଏ । ଦୁଇ ପାର୍ଶ୍ୱରେ ଥିବା ଦୁଇଟି ପାଖୁଡ଼ା ପ୍ରାୟ ସମାନ ଆକୃତିର କିନ୍ତୁ ତୃତୀୟଟି ଭିନ୍ନ । ତୃତୀୟଟିର ଆକୃତି ଓ ଅବସ୍ଥିତି ଯୋଗୁ ଅର୍କିଡ଼ ଫୁଲଗୁଡ଼ିକ ପ୍ରଜାପତି, ଖେଳନା, ଭୂତ ପ୍ରେତର କାଳ୍ପନିକ ଛବି, ବେଙ୍ଗ, ମହୁମାଛି, ସାପ କିମ୍ୱା ପଶୁପକ୍ଷୀ ପ୍ରତିଛବିର ରୂପ ସୃଷ୍ଟି କରିଥାନ୍ତି । ଅର୍କିଡ଼



ଡେଣ୍ଡ୍ରୋବିୟମ୍

ଫୁଲର ଜନନାଙ୍ଗ, ପୁଂକେଶର ଚକ୍ର ଓ ଗର୍ଭଦଣ୍ଡ ଏକାଠି ମିଶିକରି ଏକ ଦଣ୍ଡ ସୃଷ୍ଟି କରିଥାନ୍ତି । ଏଗୁଡ଼ିକର ଫଳିନ ପୁଂକେଶର ସଂଖ୍ୟାନୁସାରେ ଅର୍କିଡ଼କୁ ଦୁଇଭାଗରେ ବିଭକ୍ତ କରାଯାଇଛି । ସିପ୍ରିପିଡ଼ିଅମ୍ ଅର୍କିଡ଼ରେ ଦୁଇଟି ଫଳୀନ ପୁଂକେଶର ଥାଏ । ତେଣୁ ଏହା ଦ୍ୱିକେଶରୀ ବିଭାଗର (Diandrae) ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ଅନ୍ୟ ସବୁ ଅର୍କିଡ଼ରେ ଗୋଟିଏ ଫଳୀନ ପୁଂକେଶର ଥାଏ । ଏଗୁଡ଼ିକ ଏକକେଶରୀ (Monoandrae) ବିଭାଗର ଅନ୍ତର୍ଭୁକ୍ତ । ବହୁସଂଖ୍ୟକ ଜାତି ଓ ପ୍ରଜାତି ଥିବା ଅର୍କିଡ଼ ବର୍ଗର ଶ୍ରେଣୀ ବିଭାଗ କରିବାକୁ ଯାଇ ଉଦ୍ଭିଦବିତ୍‌ମାନେ ବିଭିନ୍ନ ତଥ୍ୟ ପ୍ରକାଶ କରିଛନ୍ତି । କିନ୍ତୁ ୧୮୨୬ ମସିହାରେ Lindley ଙ୍କ ଦ୍ୱାରା ପ୍ରଦତ୍ତ ବିଧାନ ଅନୁସାରେ ସମଗ୍ର ଅର୍କିଡ଼ ଜାତିକୁ ସେମାନଙ୍କର ଫଳୀନ ପୁଂକେଶରଗୁଡ଼ିକର ଅବସ୍ଥା ଅନୁସାରେ ୫ ଭାଗରେ ବିଭକ୍ତ କରାଯାଇଛି ।

**(୧) ଏପିଡ଼େଣ୍ଡ୍ରେଇ** (Epidendrae)- ବ୍ରାସୋଭେଲା, ବଲବୋଫାଇଲମ୍, କାଲାନ୍ଥି, କାଟାଲିଆ, ଡେଣ୍ଡ୍ରୋବିୟମ୍, ଏପିଡେଣ୍ଡ୍ରନ, ଛରିଆ, ଲାଇରିଆ, ଫାୟସ, ଥୁନିଆ ପ୍ରଭୃତି ଅର୍କିଡ୍ ଏହାର ଅନ୍ତର୍ଭୁକ୍ତ । ଏହି ଜାତିରେ ଗୋଟିଏ ଫଳୀନ ପୁଂକେଶର ଥାଏ । ରେଣୁ ମହମ ଭଳି ସେଗୁଡ଼ିକ ସହଜରେ ବାହାର କରିହୁଏ ।

**(୨) ଭାଣ୍ଡେଇ** (Vandeae)- ଏହି ବିଭାଗର ଅନ୍ତର୍ଭୁକ୍ତ ଅର୍କିଡ୍‌ଗୁଡ଼ିକର ମଧ୍ୟଭାଗର ଚକ୍ର ଫଳୀନ ଅଟେ । ପରାଗରେଣୁଗୁଡ଼ିକ ଦେଖିବାକୁ ମହମପରି କିନ୍ତୁ ପ୍ରତ୍ୟେକ ରେଣୁ ଏକ କ୍ଷୁଦ୍ର ବୃନ୍ତରେ ଲାଗିଥାନ୍ତି । କାଇଫେରିଆ, ଭାଣ୍ଡା ସାଇନୋଚେସ, ବ୍ରାସିଆ, କାଟାସେଟମ୍,



ଭାଣ୍ଡା ଅର୍କିଡ୍

କୋଗେଲିଓଡ଼ା, ସିମ୍ବିଡ଼ିଅମ୍, ମେକ୍ସିଲାରିଆ, ମିଲେଟୋନିଆ, ଓଡ଼ୋଣ୍ଟୋଗ୍ଲୋସମ୍, ଓନିସିଡ଼ିୟମ୍, ଜାଇଗୋପେଟାଲମ୍, ଫାଇଲେଇନୋପସିସ୍ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

**(୩) ନିଓଟିଓ** (Neottieae)- ଏହାର ମଧ୍ୟଭାଗରେ ଏକ ଫଳୀନ ପୁଂକେଶର ଚକ୍ର ଥାଏ । ପରାଗରେଣୁ ଗୁଡ଼ିକ ପାଉଡ଼ର ଭଳି ଦାନାଦାର ଓ ସହଜରେ ସଂଗ୍ରହ କରାଯାଇପାରେ । ଭାନିଲା, ସୋବ୍ରାଲିଆ, ହେଇମାରିଆ ପ୍ରଭୃତି ଅର୍କିଡ୍ ଏହାର ଅନ୍ତର୍ଭୁକ୍ତ ।



ସାଇନୋଚେସ୍ ଅର୍କିଡ୍

(୪) ଓଫ୍ରିଡ଼ିଏ (Ophrideae)- ଏହାର ମଝିରେ ଗୋଟିଏ ଫଳିନ ଚକ୍ର ଥାଏ । ପରାଗରେଣୁଗୁଡ଼ିକ ପାଉଡ଼ର ଅବସ୍ଥାରେ ଥାଆନ୍ତି । କିନ୍ତୁ ପ୍ରତ୍ୟେକ ପରାଗରେଣୁ ଏକ କ୍ଷୁଦ୍ର ବୃନ୍ତଯୁକ୍ତ । ଅର୍କିସ, ହାବେନାରିଆ, ଓଫ୍ରିସ ପ୍ରଭୃତି ଶୀତମଣ୍ଡଳୀୟ ସ୍ଥଳଜ ଅର୍କିଡ଼ଗୁଡ଼ିକ ଏହାର ଅନ୍ତର୍ଭୁକ୍ତ ।



ବ୍ରାସିଆ ଅର୍କିଡ୍

(୫) ସିପ୍ରିପେଡ଼େଇ (Cypripedieae)- ଏହି ବିଭାଗର ଅନ୍ତର୍ଭୁକ୍ତ ସବୁ ଅର୍କିଡ଼ଗୁଡ଼ିକର ଗର୍ଭଦଣ୍ଡର ଦୁଇପାର୍ଶ୍ୱରେ ଦୁଇଟି ଫଳୀନ ପୁଂକେଶର ଚକ୍ର ଥାଏ । ଏହାର ପରାଗରେଣୁଗୁଡ଼ିକ ଅଠାଳିଆ । ସିପ୍ରିପିଡ଼ିଅମ୍, ପାଫିଓପେଡ଼ିଲମ୍, ଫ୍ରାଗମିପେଡ଼ିଅମ୍ ପ୍ରଭୃତି ଅନ୍ତର୍ଭୁକ୍ତ ।



ପାଫିଓ ପେଡ଼ିଲମ୍



ଫାଲେଇନେପ୍ ସିସ୍

ଅର୍କିଡ଼ଗୁଡ଼ିକ ଏକପଦୀ (Monopodial) କିମ୍ବା ସଂଯୁକ୍ତପଦୀ (Sympodial) ହୋଇଥାନ୍ତି । ଏଗୁଡ଼ିକରେ ଏକ ଆଖିଦୃଶିଆ କାଣ୍ଡ ଦେଖାଯାଏ ନାହିଁ । ଏକପଦୀଗୁଡ଼ିକରେ ପତ୍ରଗୁଡ଼ିକ ଓ ବାୟବୀୟ ଚେରଗୁଡ଼ିକ ଖାଦ୍ୟ ସଂଗ୍ରହ କରିଥାନ୍ତି । ଏଥିରେ କାଣ୍ଡଗୁଡ଼ିକ ଦୈର୍ଘ୍ୟରେ ବଢ଼େ । ଭାଣ୍ଡା ଏହି ଜାତିର ଅଟେ । କିନ୍ତୁ ସଂଯୁକ୍ତ ପଦୀ ଅର୍କିଡ଼ଗୁଡ଼ିକର ମୂଳରୁ ଦାବକକାଣ୍ଡ ଭଳି ନୂଆ ନୂଆ ଗଛ ବାହାରିଥାଏ । ଏଥିରେ କୃତ୍ରିମ କନ୍ଦଗୁଡ଼ିକ (Pseudo bulbs) ଖାଦ୍ୟ ଓ ଜଳ ସଂଗ୍ରହ କରି ଗଛକୁ ବଢ଼ିବାରେ ସାହାଯ୍ୟ କରିଥାନ୍ତି । ଅର୍କିଡ଼ଗୁଡ଼ିକୁ ସେମାନଙ୍କର ବଢ଼ିବା ସ୍ଥାନ ଅନୁସାରେ ଚାରି ଭାଗରେ ବିଭକ୍ତ କରାଯାଇଥାଏ ।

**(୧) ସ୍ଥଳଜ** (Terestrial)- ଶୀତମଣ୍ଡଳୀୟ ଅଧିକାଂଶ **ଅର୍କିଡ଼ଗୁଡ଼ିକ** ଏହି ଜାତିର ଅନ୍ତର୍ଭୁକ୍ତ କରାଯାଇଛି । ଏମାନେ ସାଧାରଣତଃ

ମାଟିରେ ବଢ଼ିଥାନ୍ତି ଓ ସେଥିରୁ ଖାଦ୍ୟପଦାର୍ଥ ସଂଗ୍ରହ କରି ବଢ଼ନ୍ତି । ସ୍କାଥୋଗ୍ଲଟିସ୍, ଥୁନିଆ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

**(୨) ଅଧିପାଦପୀ** (Epiphytics)- ଏହି ଜାତିର ଅର୍କିଡ଼ଗୁଡ଼ିକ୍ ବୃକ୍ଷ ଉପରେ ଆଶ୍ରୟ ନେଇଥାନ୍ତି । ଏମାନଙ୍କର ବାୟବୀୟ ଚେରଗୁଡ଼ିକ ଖାଦ୍ୟସଂଗ୍ରହ କରି ଗଛକୁ ବଢ଼ିବାରେ ସାହାଯ୍ୟ କରିଥାନ୍ତି। ଗଛ ଉପରେ ବଢ଼ିଲେ ବି ଏମାନେ ପରାଶ୍ରୟୀ ନୁହଁନ୍ତି । ଗ୍ରୀଷ୍ମମଣ୍ଡଳୀୟ ସମସ୍ତ ଅର୍କିଡ଼ଗୁଡ଼ିକୁ ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇଛି । ଭାଣ୍ଡା, ଡେଣ୍ଡ୍ରୋବିୟମ୍ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

**(୩) ଆଂଶିକ ସ୍ଥଳଜ** - ଏହି ବିଭାଗର ଅର୍କିଡ଼ଗୁଡ଼ିକ ମାଟିରେ ବଢ଼ିଲେ ବି କାଣ୍ଡଦେହରୁ ବାହାରିଥିବା ବାୟବୀୟ ଚେରଗୁଡ଼ିକ ଗଛକୁ ଖାଦ୍ୟ ଯୋଗାଇବାରେ ସାହାଯ୍ୟ କରିଥାନ୍ତି । ଶୀତ ଓ ଗ୍ରୀଷ୍ମମଣ୍ଡଳର କେତେକ ଅର୍କିଡ଼କୁ ଏହାର ଶ୍ରେଣୀଭୁକ୍ତ କରାଯାଇଛି ।

**(୪) ମୃତଜୀବୀ** (Saprophytic)- ଏହି ଜାତିର ଅର୍କିଡ଼ ଗଛ ଗଣ୍ଡିର କ୍ଷୟପ୍ରାପ୍ତ ଅଂଶରୁ ଖାଦ୍ୟସଂଗ୍ରହ କରି ବଢ଼ିଥାନ୍ତି । ଏହି ଜାତିର ଅର୍କିଡ଼ଗୁଡ଼ିକ ସଂଖ୍ୟା ଖୁବ୍ କମ୍ ।

ଅର୍କିଡ଼ ଚାଷ ସ୍ୱତନ୍ତ୍ର ଗୃହ ''ଅର୍କିଡ଼ ହାଉସ''ରେ କରାଯାଏ । କିନ୍ତୁ ଆମଦେଶରେ ବାରଣ୍ଡା, ଗୃହର ଝରକାପାର୍ଶ୍ୱ ପ୍ରଭୃତି ସ୍ଥାନରେ ଅର୍କିଡ଼ ଲଗାଯାଇଥାଏ । ଅର୍କିଡ଼ଗୁଡ଼ିକୁ ମାଟିଠାରୁ ଅତି କମ୍‌ରେ ଦୁଇମିଟର ଉଚ୍ଚରେ ରଖାଯିବା ଉଚିତ । ଏଗୁଡ଼ିକ ଛାଇ ସ୍ଥାନରେ ବଢ଼ିପାରୁଥିଲେ ବି ଅକ୍ଟୋବର ଓ ଜାନୁଆରୀ ମାସରେ ଆଠ ଘଣ୍ଟା ପର୍ଯ୍ୟନ୍ତ ସୂର୍ଯ୍ୟାଲୋକରେ ରଖିବା ପ୍ରୟୋଜନ । ବେଶୀ ବର୍ଷାପାଣି ପଡୁଥିବା ସ୍ଥାନରେ ଅର୍କିଡ଼ ଲଗାଯିବା ଉଚିତ ନୁହେଁ । ଉଚ୍ଚ ପାର୍ବତ୍ୟ ଅଞ୍ଚଳରୁ ସଂଗୃହୀତ ଅର୍କିଡ଼ଗୁଡ଼ିକ ଆସ୍ତେ ଆସ୍ତେ ସମତଳ ଅଞ୍ଚଳର ପରିବେଶ ସହିତ ଭାରସାମ୍ୟ ରଖି ବଢ଼ାଇବା ଉଚିତ । କାଟାଲିଆ ପ୍ରଭୃତି କେତେକ ଅର୍କିଡ଼କୁ କାଲିମ୍ପଙ୍ଗ, ଦାର୍ଜିଲିଂ ପ୍ରଭୃତି ସ୍ଥାନରେ ପ୍ଲାଷ୍ଟିକ ଗୃହରେ ଚାଷକରାଯାଇଥାଏ । ଅଧିପାଦକ ଅର୍କିଡ଼ଗୁଡ଼ିକୁ ଲଗାଇବାପାଇଁ ଫର୍ଣ୍ଣ କାଣ୍ଡରେ



ଅର୍କିଡ଼ ସଜା

ତିଆରି କୁଣ୍ଡ କିମ୍ବା ଆମ୍ବ ମହୁଲ, ଶାଳ ପ୍ରଭୃତି ଗଛର ପୁରୁଣା ଚୋପାଥିବା ଡାଳ, କିମ୍ବା ଚତୁଃପାର୍ଶ୍ୱରେ ରନ୍ଧ୍ର ଥିବା କୁଣ୍ଡରେ ଲଗାଯିବା ଆବଶ୍ୟକ । ବର୍ଷାଦିନେ ସ୍ଥଳଜ ଅର୍କିଡ଼ଗୁଡ଼ିକର ଅଙ୍ଗୀୟ ବିକାଶ ଘଟିଥାଏ । ଶୀତଋତୁ (ଅକ୍ଟୋବର ମାସ ପରେ) ଏଗୁଡ଼ିକ ସୁପ୍ତାବସ୍ଥାରେ ରୁହନ୍ତି ଓ ଜାନୁୟାରୀ ମାସ ପରେ ଫୁଲ ଫୁଟିବା ଅବସ୍ଥାକୁ ଆସନ୍ତି । କିନ୍ତୁ କେତେକ ଅର୍କିଡ଼ ଯଥା Vanda roxburghii ରେ ବର୍ଷସାରା ଫୁଲ ଆସେ । ସେହିପରି କେତେକକାଟାଲିଆ (Cattaleya) ଏବଂ ଭାଣ୍ଡାରେ (Vanda caerulea) ବର୍ଷର ଯେକୌଣସି ସମୟରେ ଫୁଲ ଆସି ପାରେ । Spathoglottis plicata ରେ ଥରେ ଫୁଲ ଆସିଲେ ୪/୫ ମାସ ପର୍ଯ୍ୟନ୍ତ ରୁହେ । ଆମଦେଶରେ ଲଗାଯାଉଥିବା ଅଧିପାଦକ ଅର୍କିଡ଼ Vanda teres, V. roxburghii, V. coerulea, Arides roseum, A. odoratum ଗୁଡ଼ିକୁ ବେଶୀ ସୂର୍ଯ୍ୟାଲୋକ ପଡୁଥିବା ସ୍ଥାନରେ ଲଗାଯାଇଥାଏ । କିନ୍ତୁ ବିଭିନ୍ନ ଡେଣ୍ଡ୍ରୋବିୟମ୍ ଜାତିର ଅର୍କିଡ଼ଗୁଡ଼ିକୁ ଛାଇସ୍ଥାନରେ ଲଗାଯିବା ଉଚିତ । ଡେଣ୍ଡ୍ରୋବିୟମ, ଡେନସିଫ୍ଲୋରମ (D. densiflorum), D. *moschatum*, D. phalainopsis, D. primulinum, ସିମ୍ବିଡ଼ିଅମ୍, ଆଲୋଇଫୋଲିଅମ୍ ପ୍ରଭୃତି ଆମ ଅଞ୍ଚଳରେ ଭଲ ବଢ଼ିପାରନ୍ତି । ଶରତ ଋତୁରେ ଫୁଟୁଥିବା କେତେକ ଅର୍କିଡ଼ ମଧ୍ୟରେ Dendrobium, Cattaleya, Spathoglottis ପ୍ରଭୃତି ପ୍ରଧାନ । ଆମ୍ଭ ଅଞ୍ଚଳରେ ଲଗାଯାଇ ପାରୁଥିବା ସ୍ଥଳଜ ଅର୍କିଡ଼ ମଧ୍ୟରେ Sphathoglottis, plicata ବ୍ଲେଟିଆ (Bletia) ହାସିଛିନା (Hyacinthana), *Vanda teres, Cypripideum insigne, Thunea, alba* ପ୍ରଭୃତି ପ୍ରଧାନ । କେତେକ ପ୍ରସିଦ୍ଧ ଅର୍କିଡ଼ମାନଙ୍କ ମଧ୍ୟରେ *Cattleya trianoae, C. gigas*, Oncidium, Amplietum, Dendrobium phallaenoposis ଓ Vanda gygensia ପ୍ରଭୃତି ପ୍ରଧାନ ।

ଅର୍କିଡ଼ଗୁଡ଼ିକ ସୋମନଙ୍କର ବଢ଼ିବା ସମୟ ବର୍ଷାଦିନରେ, କମ୍ ବର୍ଷାହେଲେ ଉପଯୁକ୍ତ ପରିମାଣର ପାଣି ସ୍ପ୍ରେ କରିବା ଉଚିତ । କିନ୍ତୁ ବେଶୀ ପାଣି ଦେଲେ ଗଛଗୁଡ଼ିକ ପଚିଯାଏ । ଅକ୍ଟୋବର ମାସ ପରେ ଏଗୁଡ଼ିକ ଜାନୁୟାରୀ ପର୍ଯ୍ୟନ୍ତ ସୁପ୍ତାବସ୍ଥାରେ ଥିଲାବେଳେ ସାମାନ୍ୟ ପରିମାଣର ପାଣି ଦେବା




ଅର୍କିଡ଼ ଲଗାଇବା ପ୍ରଣାଳୀ

ଆବଶ୍ୟକ । ଫୁଲ ଫୁଟିବା ପରେ ଏଗୁଡ଼ିକର ପତ୍ର ଛିଣ୍ଡାଇ ଦେଇ ଗଛଗୁଡ଼ିକୁ ଅଳ୍ପ ଅଳ୍ପ ପାଣି ଦେଇ ଉପଯୁକ୍ତ ଯତ୍ନନେଲେ ଅର୍କିଡ଼ ଫୁଲଗୁଡ଼ିକ ମାସ ମାସ ଧରି ରୁହେ । ଅର୍କିଡ଼ ଗଛଗୁଡ଼ିକ ବିଶେଷ ଭାବେ ରାସାୟନିକ ସାର ବ୍ୟବହାର କରି ନଥାନ୍ତି । ଅଳ୍ପ ପରିମାଣରେ ତରଳ ସାର ପ୍ରୟୋଗ କଲେ ଗଛଗୁଡ଼ିକ ଭାଲଭାବରେ ବଢ଼ିଥାଏ । ହୋଗଲ୍ୟାଣ୍ଡ ସଲ୍ୟୁସନକୁ ଗଛରେ ଦେବା ଉଚିତ । କୌଣସି ରାସାୟନିକ ସାର ଅର୍କିଡ଼ରେ ସିଧା ପକାଇବା ଅନୁଚିତ । ଏହି ଜାତୀୟ ଉଦ୍ଭିଦରେ ରୋଗପୋକ ବେଶି ଲାଗନ୍ତି ନାହିଁ । କେତେକ ସାମ୍ବୁଲୁଆ ପୋକ ଓ 'ବିଟଲ' ଗଛର ଅଗ୍ରଭାଗକୁ ନଷ୍ଟ କରିଦିଅନ୍ତି । ବେଶୀ ପାଣି ଦେଲେ ଏକ ପ୍ରକାରା କବକ ରୋଗ ଗଛକୁ ଆକ୍ରମଣ କରିଥାଏ । ରୋଗ ପୋକରୁ ଗଛକୁ ଠିକ୍ ସମୟରେ ରକ୍ଷା କରିବା ଉଚିତ ।



॥ ଊନବିଂଶ ପରିଚ୍ଛେଦ ॥

# ସୌନ୍ଦର୍ଯ୍ୟବର୍ଦ୍ଧକ ତୃଣ

## (Ornamental Grasses)

ଦୀର୍ଘକାୟ ବାଉଁଶ ଓ ତୃଣଗୁଡ଼ିକ ଜଙ୍ଗଲରେ ଅନାବନା ଗଛରୂପେ ବଢ଼ିଥାଏ । କିନ୍ତୁ ଏଗୁଡ଼ିକର କେତେକ ଖର୍ବାକୟ ସୌନ୍ଦର୍ଯ୍ୟବର୍ଦ୍ଧକ ଜାତି ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ସାହାଯ୍ୟ କରିଥାଏ । ଅଧିକାଂଶ ସୌନ୍ଦର୍ଯ୍ୟବର୍ଦ୍ଧକ ତୃଣ ଗ୍ରୀଷ୍ମମଣ୍ଡଳୀୟ ଜଳବାୟୁରେ ଭଲ ବଢ଼ିଥାଏ । ସମୁଦ୍ର ପତନଠାରୁ ୧୫୦୦ ମି. ଉଚ୍ଚ ପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ଏଗୁଡ଼ିକ ଲଗାଯାଇ ପାରିବ । ଉଦ୍ଭିଦମାନଙ୍କ ମଧ୍ୟରେ ଗ୍ରାମିନେଇ (Graminae) ତୃଣବର୍ଗର ଉଦ୍ଭିଦଗୁଡ଼ିକ ପରିବର୍ତ୍ତିତ ପରିବେଶରେ ନିଜକୁ ସହଜରେ ଖାପଖୁଆଇ ପାରିଥାନ୍ତି ।

ଏହି ଜାତିର ଉଦ୍ଭିଦଗୁଡ଼ିକ ବଡ଼ ବଡ଼ ଉଦ୍ୟାନଗୁଡ଼ିକରେ ମାଟିରେ ଲଗା ଯାଇଥାଏ । କିନ୍ତୁ କ୍ଷୁଦ୍ର ଉଦ୍ୟାନଗୁଡ଼ିକରେ ଏହାକୁ କୁଣ୍ଡରେ ଲଗାଯିବା ଉଚିତ । ବାଲିଆ ମାଟି ଓ ଜୈବିକ ଖତସାର ମିଶ୍ରଣରେ ତୃଣଗୁଡ଼ିକ ଭଲ ବଢ଼ିଥାନ୍ତି । କୁଣ୍ଡରେ ଲଗାଇବା ବେଳେ ଉତ୍ତମ ଜଳ ନିଷ୍କାସନ ପାଇଁ ଅଧିକ ଗୁରୁତ୍ୱ ଦେବା ଆବଶ୍ୟକ । ପାଣି ଜମିଲେ ଗଛଗୁଡ଼ିକ ଅଳ୍ପଦିନରେ ମରିଯାଏ । ଅଳ୍ପ ଛାଇ ଅଞ୍ଚଳରେ ଗଛଗୁଡ଼ିକ ଭଲ ବଢ଼େ । ଉନ୍ମୁକ୍ତ ପ୍ରାଙ୍ଗଣରେ ମଧ୍ୟ ଏହାକୁ ଲଗାଯାଇପାରେ । ଅଳ୍ପ ଯତ୍ନରେ ଘାସଗୁଡ଼ିକ ସହଜରେ ବଢ଼ିଥାଏ । ମଞ୍ଜି କିମ୍ବା ଅଙ୍ଗଜ ପ୍ରଣାଳୀରେ ଏହାର ବଂଶ ବିସ୍ତାର ହୋଇଥାଏ । ସୌନ୍ଦର୍ଯ୍ୟବର୍ଦ୍ଧକ ତୃଣଗୁଡ଼ିକ ମଧ୍ୟରେ ଧନ୍ୱନ୍ତରୀ (Andropogon citratus), ବାଉଁଶ (Bambusa multiplex), ଫର୍ଣ୍ଣପତ୍ରୀ ବାଉଁଶ (B. multiplex-stripetem), ତାରାକୃତି ବାଉଁଶ (B. Japonica), ତ୍ରିବର୍ଣ୍ଣୀ ବାଉଁଶ (B. tricolour), ସ୍ୱର୍ଣ୍ଣ ବାଉଁଶ (B. vulgaris), ବ୍ରିଜ (Briza maxima), ଇଉଲାଲିଆ (Eulalia Japonica), ମେଘାମ୍ବର (Agrotis elegans), ତୃଣପର୍ଣ୍ଣା (Apluda aristata), ରାକ୍ଷସ ଘାସ (Arurdo donax-variegata), କାଶତଣ୍ଡୀ (Gynerium argentium), ସୌନ୍ଦର୍ଯ୍ୟବର୍ଦ୍ଧକ ଶ୍ୟାମ ଘାସ (Panicum variegatum), ରିବନଘାସ (Phalaris arudinacea-variegata), ଆବିସିନିଆ ଘାସ (Pennisetum longistelus), ପ୍ରଭୃତି ପ୍ରଧାନ ।

॥ ବିଂଶ ପରିଚ୍ଛେଦ ॥

# ଲନ୍ (ତୃଣ ଶଯ୍ୟା)

## (Lawn)

ଲନ ବା ତୃଣଶଯ୍ୟା ବଗିଚାର ଏକ ଅପରିହାର୍ଯ୍ୟ ଅଙ୍ଗ । ଛୋଟ କିମ୍ବା ବଡ଼ ଯେ କୌଣସି ବଗିଚାରେ ଲନ ନ ଥିଲେ ତାହା ଅସମ୍ପୂର୍ଣ୍ଣ ବଗିଚା ବୋଲି ଧରାଯାଏ । ଲନଗୁଡ଼ିକ ବଗିଚାର ସବୁଜିମା ବୃଦ୍ଧି କରି ଶାନ୍ତ ପରିବେଶ ସୃଷ୍ଟି କରିଥାନ୍ତି । ରଙ୍ଗ ବେରଙ୍ଗ ପୁଷ୍ପସମୂହ ତୃଣ ଗାଲିଚାର ସବୁଜ ପୃଷ୍ଠଭୂମି ଉପରେ ଭଲଭାବରେ ବିକଶିତ ହୋଇଥାନ୍ତି । ସେହିପରି ଅବସର ସମୟରେ ବଗିଚାରେ ସମୟ ବିତାଇବା ପାଇଁ ତୃଣଶଯ୍ୟା ହିଁ ପ୍ରକୃଷ୍ଟ ସ୍ଥାନ । ଖରାଦିନରେ ତାପଦଗ୍ଧ ମଧ୍ୟାହ୍ନ ପରେ ସୁଶୀତଳ ତୃଣଶଯ୍ୟାରେ ବସିବାକୁ ସମସ୍ତେ ଭଲପାନ୍ତି । ଉତ୍ସବ ଓ ଆମୋଦ ପ୍ରମୋଦ ସମୟରେ ଲନରେ ସମସ୍ତେ ଏକତ୍ର ହୋଇଥାନ୍ତି । ବଡ଼ ବଡ଼ ଉଦ୍ୟାନମାନଙ୍କରେ ଲନ୍‌ଗୁଡ଼ିକ ସାଧାରଣ ଲୋକଙ୍କ ଚଳପ୍ରଚଳ ପାଇଁ ଓ ଆମୋଦ ଦେବାପାଇଁ ବିଶେଷ ସାହାଯ୍ୟ କରିଥାଏ । ଏହିସବୁ ଦୃଷ୍ଟିରୁ ବିଚାର କଲେ ବଗିଚା ସୌନ୍ଦର୍ଯ୍ୟର ଶତକଡ଼ା ୭୫ ଭାଗ ଲନ୍ ଉପରେହିଁ ନିର୍ଭର କରିଥାଏ ।

ଏହି ପରିପ୍ରେକ୍ଷୀରେ ଉଦ୍ୟାନଗୁଡ଼ିକରେ ଲନ୍ ସ୍ଥାପନ କରିବା ଓ ତାହାର ଉପଯୁକ୍ତ ପରିଚାଳନା କରିବା ଏକ ସହଜ କାର୍ଯ୍ୟ ବୋଲି ବିବେଚନା କରିବା ଅନୁଚିତ । ଲନ୍ ପ୍ରସ୍ତୁତ କଲାବେଳେ ମୃତ୍ତିକା ନିର୍ବାଚନ ଓ ତାହାର ଉପଯୁକ୍ତ ପ୍ରସ୍ତୁତ ପ୍ରଣାଳୀ, ଜଳନିଷ୍କାସନ ବ୍ୟବସ୍ଥା, ଖତସାର ଦେବାର ପରିମାଣ ଓ ସମୟ, ଉପଯୁକ୍ତ ଘାସ ଲଗାଇବା, ଅନାବନା ଘାସ ଓପାଡ଼ି ଦେବା, ଘାସକଟା ଓ ରୋଲିଂ, ଜଳସେଚନ ଓ ରୋଗ ପୋକ ନିୟନ୍ତ୍ରଣ ସମ୍ବନ୍ଧରେ ଯଥେଷ୍ଟ ଗୁରୁତ୍ୱ ଦେବାକୁ ହୋଇଥାଏ । ସେହିପରି ଲନ୍ କରିବା ନିମନ୍ତେ ସ୍ଥାନ ନିର୍ବାଚନ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । କାରଣ ବ୍ୟକ୍ତିଗତ ତଥା ସର୍ବସାଧାରଣ ଉଦ୍ୟାନଗୁଡ଼ିକରେ କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ଲନ୍ ପ୍ରସ୍ତୁତ କରାଗଲେ ସୁନ୍ଦର

ଓ ବ୍ୟବହାର ଉପଯୋଗୀ ହୋଇଥାଏ । ବ୍ୟକ୍ତିଗତ ଉଦ୍ୟାନର ଗୃହସମ୍ମୁଖର ଦକ୍ଷିଣ ଭାଗରେ ଲନ୍ ପ୍ରସ୍ତୁତ କରାଗଲେ ତାହା ସୁନ୍ଦର ଦିଶେ । କିନ୍ତୁ ଏହି ସ୍ଥାନ ଉପଯୁକ୍ତ ହୋଇ ନଥିଲେ ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମ ଦିଗରେ କରାଯିବା ଉଚିତ । ଏହି ସ୍ଥାନର ଚାରିପାଖରେ ବଡ଼ ବଡ଼ ବୃକ୍ଷ ଲତା ଲଗାଇବା ଅନୁଚିତ । ଉଦ୍ୟାନର ନିଚା ବା ତଳୁଆ ସ୍ଥାନଗୁଡ଼ିକରେ ଲନ୍ ପ୍ରସ୍ତୁତ କରିବା ଠିକ୍ ନୁହେଁ । ସର୍ବସାଧାରଣ ଉଦ୍ୟାନ, ପାର୍କ, କାର୍ଯ୍ୟାଳୟ ଓ ଡାକ୍ତରଖାନ ଉଦ୍ୟାନଗୁଡ଼ିକର ଉନ୍ମୁକ୍ତ ଅଂଶରେ ଲନ୍ ପ୍ରସ୍ତୁତ କରିବା ଉଚିତ । ମାଇଲ ମାଇଲ ଧରି ବ୍ୟାପିଥିବା ବଡ଼ବଡ଼ ଆମୋଦଦାୟକ ପାର୍କ (**Large rural Park**) ର ମଝିରେ ମଝିରେ ବିଶ୍ରାମ ପାଇଁ  ଲନ୍ ପ୍ରସ୍ତୁତ କରାଯାଇଥାଏ ।

ଲନ ପ୍ରସ୍ତୁତ କଲାବେଳେ ମୃତ୍ତିକା ନିର୍ବାଚନ ଉପରେ ବିଶେଷ ଗୁରୁତ୍ୱ ଦିଆଯାଏ । କାରଣ ଥରେ ଖରାପ ସ୍ଥାନରେ ଲନ୍ ଆରମ୍ଭ କରିଦେଲେ ତାହାକୁ ସହଜରେ ସୁଧାରି ହୁଏ ନାହିଁ । ଲନ ପାଇଁ ଉର୍ବର ଓ ଜୈବିକ ଅଂଶ ଥିବା ମଟାଳ ମାଟି ବ୍ୟବହାର କରିବା ଉଚିତ । ସେହିପରି ମାଟିରେ ଜଳ ଧାରଣ ଶକ୍ତି ବେଶି ହେବା ସଙ୍ଗେ ସଙ୍ଗେ ଉତ୍ତମ ଜଳନିଷ୍କାସନ ଗୁଣ ଥିବା ଉଚିତ ଓ ମାଟିରେ ଅମ୍ଳପରିମାଣ ୫.୫ ରୁ ୬.୦ ଭିତରେ ରହିବା ଆବଶ୍ୟକ । ବେଶୀ ଅମ୍ଳଯୁକ୍ତ ମାଟିରେ ଘାସଗୁଡ଼ିକ ରୁଗ୍ଣିଆ ଓ ଖର୍ବକାୟ ହୋଇ ବଢ଼ନ୍ତି । ସେହିପରି କ୍ଷାରୀୟ ମାଟିରେ  ଆଲୁମିନିୟମ୍ ଓ ସୋଡ଼ିୟମ୍ ପ୍ରଭୃତି ଧାତବ ପଦାର୍ଥ ଗଛକୁ ସହଜରେ ମିଳିପାରୁଥିବା ହେତୁ ଘାସର ପତ୍ରଧାର ନଷ୍ଟହୋଇଯାଏ, ଅମ୍ଳତା ପରିସୀମାର ନିମ୍ନରେ ରହିଥିଲେ ପ୍ରତି ବର୍ଗମିଟର ପିଛା ୩୦୦ ଗ୍ରାମ ଚୂନଗୁଣ୍ଡ ବିଛାଇ ଦେବା ଉଚିତ । ବେଶୀ କ୍ଷାରୀୟ ମାଟିରେ କିଛି ଜିପ୍‌ସମ୍ ମିଶାଇବା ଆବଶ୍ୟକ ।

ଲନ୍ ପ୍ରସ୍ତୁତ କରିବା ପାଇଁ ଠିକ୍ କରିଥିବା ସ୍ଥାନକୁ ଏପ୍ରିଲ ଓ ମେ ମାସରେ ୫୦ ସେ.ମି. ଗଭୀରରେ ଭଲଭାବରେ ତାଡ଼ିଦେବା ଦରକାର । ଯଦି ଏହି ମାଟି ଖରାପ ତେବେ ଉପରୁ ୩୦ ସେ.ମି. ଗଭୀରରୁ ମାଟି ବାହାର କରିଦେଇ ନଦୀ କୂଳର ପଟୁମାଟିକୁ ଆଣି ପକାଇବା ଉଚିତ ।

ତଡ଼ାଯାଇଥିବା ମାଟିକୁ ଗ୍ରୀଷ୍ମଋତୁରେ ଖରାରେ ଶୁଖାଇବା ଦରକାର । ଫଳରେ ମାଟିରେ ଥିବା ପୋକର ଅଣ୍ଡା, ପ୍ୟୁପା ଅନାବନା ଗଛର ମଞ୍ଜି ଓ

ରୋଗ ଜୀବାଣୁ ନଷ୍ଟ ହୋଇଯାଏ । ଏହାପରେ ବର୍ଷା ଆଗମନ ପୂର୍ବରୁ ମାଟିକୁ କୋଦାଳରେ ହାଣି ୮/୧୦ ଥର ଗୁଣ୍ଡକରିଦେବା ଉଚିତ । ମାଟି ଯେତେ ଗୁଣ୍ଡ ହେବ ସେତେ ଭଲ । ମାଟିରେ ଥିବା ଛୋଟ ଛୋଟ ପଥର ଖଣ୍ଡ ଓ ଗୋଡ଼ିକୁ ବାହାର କରି ନ ଦେଲେ ଏଗୁଡ଼ିକ ଲନ୍ ଘାସକଟା ଯନ୍ତର (Lawn mower) ଛୁରୀଗୁଡ଼ିକୁ ନଷ୍ଟକରିଦିଅନ୍ତି । ମାଟି ସାମାନ୍ୟ ଆର୍ଦ୍ର ହୋଇଗଲେ ପ୍ରତ୍ୟେକ ୧୦୦ ବର୍ଗମିଟର ପିଛା ୫୦୦ କି.ଗ୍ରା. ହିସାବରେ ଉପଯୁକ୍ତ ଭାବରେ ପ୍ରସ୍ତୁତ ସଢ଼ା ଗୋବର ବା କମ୍ପୋଷ୍ଟ ବୁଣିଦେବା ଆବଶ୍ୟକ । ଏହି ଆୟତନର ସ୍ଥାନପାଇଁ ୨୫୦ କି.ଗ୍ରା. କୁକୁଡ଼ା ଖତ ବ୍ୟବହାର କରାଯିବା ଉଚିତ୍ । ଖତଗୁଡ଼ିକୁ ଉପଯୁକ୍ତ ଭାବରେ ବିଛାଇ ମିଶାଇଦେବା ଉଚିତ । ଖତରେ ମୁଥାର ମୂଳ ରହିଥାଏ । ବର୍ଷାଦିନେ ମୁଥା ଗଛ ଉଠିଲେ ତାହାକୁ ଖୁରୁପି ସାହାଯ୍ୟରେ ବାହାର କରିଦେବା ଆବଶ୍ୟକ । ମୁଥାର (*Cyperus rotundus*) ମୂଳ ମାଟିର ବହୁତଳେ ଥାଏ, ଏହା ବ୍ୟତୀତ ଏଗୁଡ଼ିକ ଖୁବ୍‌ଶୀଘ୍ର ଚାରିଆଡ଼କୁ ମାଡ଼ିଯାନ୍ତି । ମୁଥା ଗଛଗୁଡ଼ିକ ବାହାରିବା କ୍ଷଣି ନଖ ଅଗରେ ବା କତୁରୀ ସାହାଯ୍ୟରେ ପ୍ରତିଦିନ କାଟି ଫିଙ୍ଗିଦେବା ଉଚିତ । କାରଣ ମୁଥା ଗଣ୍ଠିରୁ ବାହାରୁଥିବା ପତ୍ରଗୁଡ଼ିକୁ ବାରମ୍ବାର ଛିଣ୍ଡାଇଦେଲେ ଖାଦ୍ୟ ଅଭାବରେ ନିମ୍ନରେ ଥିବା ଗଣ୍ଠି ଆସ୍ତେ ଆସ୍ତେ କ୍ଷୟପ୍ରାପ୍ତ ହୋଇଥାଏ । ଏହା ଏକ ବ୍ୟୟସାପେକ୍ଷ ପଦ୍ଧତି ହେଲେ ହେଁ ଲନ୍‌ରୁ ମୁଥାକୁ ସମୂଳେ ନାଶ କରିବାର ଅନ୍ୟ ପଦ୍ଧତି ଠାରୁ ଏହା ଉତ୍ତମ ଅଟେ । ବର୍ଷାଋତୁ ସାରା ଏହିପରି ଭାବେ ସବୁ ଅନାବନା ଗଛକୁ ମାଟିରୁ ବାହାର କରିଦେବା ପରେ ଅକ୍ଟୋବର ମାସ ପ୍ରଥମ ସପ୍ତାହରେ ମାଟିକୁ ଖୁସାଇ ଦେଇ ପୁଣି ସମାନକରି ଦେବା ଉଚିତ । ଘାସ ଲଗାଇବାର ଅବ୍ୟବହିତ ପୂର୍ବରୁ ମାଟିର ଜଳନିଷ୍କାସନ ଅବସ୍ଥାକୁ ପରୀକ୍ଷା କରିନେବା ଉଚିତ । ମାଟିରେ ଯଦି ପାଣି ଜମି ରହୁଥାଏ ତେବେ ମାଟିତଳେ ଟାଇଲ୍ କିମ୍ବା ସିମେଣ୍ଟର ଜଳନିଷ୍କାସନ ନାଳ କରି ତା ଉପରେ ମାଟି ପକାଇ ଘାସ ଲାଗାଯାଏ । ଏହା ବ୍ୟତୀତ ଅନେକ ସମୟରେ ମାଟି ଉପରୁ ୨୫ ସେ.ମି. ତଳେ ୮ ସେ.ମି. ବହଳର କରତଗୁଣ୍ଡ ପକାଇଦେଲେ ତାହା ଜଳନିଷ୍କାସନରେ ସାମୟିକ ସାହାଯ୍ୟ କରିଥାଏ । କିନ୍ତୁ ସାଧାରଣ ପଦ୍ଧତି ଅନୁସାରେ ମାଟିକୁ ଶତକଡ଼ା ୧ଭାଗ ଗଡ଼ାଣିଆ ରଖିଲେ ମାଟିରୁ ଉତ୍ତମ

ଜଳନିଷ୍କାସନ ହେବାରେ ଏହା ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଲନ୍‌ରେ ପାଣି ମଡ଼ାଇବାରେ ସାହାଯ୍ୟ କରିଥାଏ । କେତେକ ସ୍ଥାନରେ ଉସ୍ ଜଳସେଚନ (Sprinkling irrigation) ପଦ୍ଧତି ଅବଲମ୍ବନ କରାଯାଏ ।

ଲନ ପ୍ରସ୍ତୁତ କରିବାପାଇଁ ସାଧାରଣ ଦୁବଘାସ (*Cynodon dactylon*) ଜାପାନୀ ଘାସ (*Zoysia gaponica*)ଓ କେଣ୍ଟୁକି ଘାସ (Poa partensis) ବ୍ୟବହାର କରାଯାଏ । ଏହି ଦୁଇଟି ମଧ୍ୟରୁ ପ୍ରଥମ ଦୁଇଟି ଗ୍ରୀଷ୍ମ ମଣ୍ଡଳରେ ଓ ଦ୍ୱିତୀୟଟି ଶୀତମଣ୍ଡଳରେ ଭଲ ବଢ଼େ । ଦୁବଘାସ ଉପରେ ବେଶୀ ଚଲାବୁଲା କଲେବି ଏହା ବିଶେଷ ଖରାପ ହୁଏ ନାହିଁ । କିନ୍ତୁ କେଣ୍ଟୁକି ଘାସ ନଷ୍ଟ ହୋଇଯାଏ । ଦୁବଘାସକୁ ବାରମ୍ବାର କାଟିବାକୁ ପଡ଼େ କିନ୍ତୁ କେଣ୍ଟୁକି ଘାସକୁ କାଟିବାକୁ ପଡ଼େ ନାହିଁ । ଯେଉଁମାନେ ଅଧିକ ଯତ୍ନ ନେଇପାରିବେ ଓ ଖରାଦିନେ ପ୍ରଚୁର ପାଣି ଦେବେ ସେମାନେ କେଣ୍ଟୁକି ଘାସ ଲଗାଇବା ଉଚିତ । କେଣ୍ଟୁକି ଘାସ ଖରାଦିନେ କମ୍ ପାଣିଯୋଗୁ ମରିଯାଏ । Zoysia ଘାସ ପ୍ରାୟ ସବୁସ୍ଥାନରେ ଲଗାଯାଇ ପାରିବ ।

ଆମ ଅଞ୍ଚଳରେ ଲନ ତିଆରି କରିବା ପାଇଁ ଦୁବଘାସ ଉପଯୁକ୍ତ ଅଟେ । ଏହା ଭଲଭାବରେ ଆମ ଜଳବାୟୁରେ ବଢ଼ିପାରେ ଓ ବେଶୀ ସବୁଜ ଦିଶେ । ଅନେକ କିସମର ଦୁବଘାସ ଦେଖିବାକୁ ମିଳିଥାଏ । ସାଧାରଣତଃ ଦୁଇ ପ୍ରକାର ଦୁବଘାସ ଲନ ପାଇଁ ଲଗାଯାଏ । ଏକପ୍ରକାର ଦୁବଘାସର ପତ୍ର ସରୁ ଓ ସେଗୁଡ଼ିକ ସିଧା ନ ବଢ଼ି ଲଟାଏ । ଗଛଗୁଡ଼ିକ ମାଟି ସହିତ ଲାଗିକରି ଥାଏ । ଏଇ କିସମକୁ ବ୍ୟବହାର କଲେ ଲନ କୁସନ ଭଳି ଲାଗେ ଓ କମ୍‌ଥର ଘାସ କାଟିବା ଦରକାର ହୁଏ । ଅନ୍ୟପ୍ରକାର ଘାସଗୁଡ଼ିକ ଚାରିଆଡ଼କୁ ବଢୁଥିବାରୁ ଓ ଲଟାଉଥିବାରୁ ଉପରୁ ଅଳ୍ପ ଅଳ୍ପ କାଟିଦେବାକୁ ହୋଇଥାଏ । ଆମ ଓଡ଼ିଶାର ଚାରିଆଡ଼େ ବଢୁଥିବା ଘାସଗୁଡ଼ିକ ଡେଙ୍ଗା ହୋଇ ବଢ଼େ । ତେଣୁ ଏଗୁଡ଼ିକୁ ସବୁବେଳେ କଟାକଟି ନ କଲେ ଲନ୍ ଅସଂଯତ ଦିଶେ । ନିଜ ଅଂଚଳର ପୋଖରୀ, କେନାଲ କୂଳ କିମ୍ବା ନଇପଠା ପାଖାପାଖି ବଢୁଥିବା ଦୂବଘାସଗୁଡ଼ିକ ଡେଙ୍ଗା ହୋଇ ବଢ଼େ । ତେଣୁ ଏଗୁଡ଼ିକ ସବୁବେଳେ କଟାକଟି ନ କଲେ ଲନ୍

ଅସଂଯତ ଦିଶେ । ନିଜ ଅଂଚଳରେ ପୋଖରୀ, କେନାଲ କୂଳ କିମ୍ବା ନଇପଠା ପାଖାପାଖି ବଢୁଥିବା ଛୋଟ ପଗଥିବା ଦୁବଘାସଗୁଡ଼ିକ ସଂଗ୍ରହକରି ଲନ୍ ପ୍ରସ୍ତୁତ କରିବା ଉଚିତ ।

ଲନ ପ୍ରସ୍ତୁତି ଚାରୋଟି ପ୍ରଣାଳୀରେ କରାଯାଇଥାଏ । (୧) ମଞ୍ଜି ବୁଣି (୨) ଘାସ ଖଣ୍ଡକୁ ରୋଇ (Dibbling) (୩) ଘାସ ଉଠିଥିବା ମାଟି ଚେକା ଆଣି ଲନ୍‌ରେ ସଜାଇରଖିବା । (Turfing) ଏବଂ (୪) ଘାସ, ମାଟି ଗୋବରର ଏକ ପ୍ଲାଷ୍ଟର କରି ମାଟିଉପରେ ଲେପିବା । (Turf plastering) । ଏହି ସବୁ ପଦ୍ଧତି ମଧ୍ୟରୁ ଘାସଖଣ୍ଡମାନ ରୋପଣ ସବୁଠାରୁ ଭଲ । ଯେଉଁଠାରେ ଘାସ ନ ମିଳେ ଅନ୍ୟଠାରୁ ମଞ୍ଜି ସଂଗ୍ରହକରି ୧୦୦୦ ବର୍ଗମିଟର ପିଛା ୧$^{୧}/_{୨}$ କି.ଗ୍ରା. ହିସାବରେ ବୁଣିବାକୁ ହୁଏ । ମଞ୍ଜି ଲଗାଇବା ପୂର୍ବରୁ ଶର୍ଯ୍ୟା ଉପରେ ୨$^{୧}/_{୨}$ ସେ.ମି. ଗଭୀରରେ ଦାନ୍ତିଆ (Rake) ଟାଣିଦେବା ଉଚିତ । ଏହା ଉପରେ ମଞ୍ଜି ଅଳ୍ପ ଅଳ୍ପ କରି ବୁଣି ଦିଆଯାଏ । ମଞ୍ଜି ଗୁଡ଼ିକ ଅତି ଛୋଟ ହୋଇଥିବାରୁ ବାଲି ସଙ୍ଗରେ ମିଶାଇ ବୁଣାଯାଏ । ତାପରେ ଦାନ୍ତିଆ ଚଳାଇ ଝରା ସାହାଯ୍ୟରେ ପାଣି ଦେବା ଉଚିତ । ମଞ୍ଜି ଗଜା ହେବାକୁ ୩/୪ ସପ୍ତାହ ଲାଗେ । ଏହି ପ୍ରଣାଳୀରେ ଲନ୍‌ରେ ଅନେକ ଅନାବନା ଘାସ ଉଠିଥାଏ । ମଞ୍ଜିଗୁଡ଼ିକ ଗଜାହେବା ପାଇଁ ବେଶୀ ସମୟ ଲାଗୁଥିବା ହେତୁ ଅନାବନା ଗଛଗୁଡ଼ିକ ଶୀଘ୍ର ବଢ଼ିଯାଏ । ଫଳରେ ଲନ ଘାସଗୁଡ଼ିକ ଶୀଘ୍ର ବଢ଼ିଯାଏ । ଫଳରେ ଲନ ଘାସଗୁଡ଼ିକ ବଢ଼ିପାରନ୍ତି ନାହିଁ । ଏହି ଦୃଷ୍ଟିରୁ ମଞ୍ଜି ଲଗାଇବା ପୂର୍ବରୁ ଓଦା ଅଖାରେ ୨୪ ରୁ ୪୮ ଘଣ୍ଟା ରଖି ଗଜାକରି ଲଗାଇବା ଉଚିତ । ଏହା ବ୍ୟତୀତ ମଞ୍ଜିରୁ ପ୍ରସ୍ତୁତ ଲନଗୁଡ଼ିକ ପ୍ରଥମାବସ୍ଥାରେ ଚନ୍ଦା ଦିଶେ । କାରଣ ସବୁ ମଞ୍ଜି ଏକା ସମୟରେ ଗଜା ହୁଏ ନାହିଁ କିମ୍ବା ଲଗାଯାଇଥିବା ମଞ୍ଜିକୁ ପିମ୍ପୁଡ଼ି, କୀଟପତଙ୍ଗ ଖାଇଯାନ୍ତି । ଏହି ପ୍ରଣାଳୀରେ ଗଛଗୁଡ଼ିକ ୩/୪ ସେ.ମି. ପର୍ଯ୍ୟନ୍ତ ଉଚ୍ଚ ହୋଇଗଲେ ଘାସକାଟିବା ସିଅର ଦ୍ୱାରା କିମ୍ବା ତୀକ୍ଷ୍ଣ ବାଉଁଶ ପାତିଆ ଦ୍ୱାରା ଥରେ ଦୁଇଥର କାଟିଦେବାକୁ ହୁଏ । ତାହାପରେ ଗୋଟିଏ ଛୋଟ ଗୋଲାକାର କାଠ ରୋଲର ଲନ ଉପରେ ଚଳାଇବା ଦରକାର ହୋଇଥାଏ । ଘାସଗୁଡ଼ିକ

ଧୀରେ ଧୀରେ ବଢ଼ିଲା ପରେ ଛୋଟ ଘାସକଟା ଯନ୍ତ୍ର ସାହାଯ୍ୟରେ ଘାସକଟା ଯିବା ଉଚିତ । ଏହି ପ୍ରଣାଳୀରେ ଯଦି କୌଣସି ସ୍ଥାନରେ ବେଶୀ ଗଛ ନ ଉଠିଥାଏ ତେବେ ସେଠାରେ ପୁନର୍ବାର ମଞ୍ଜି ବା ଦୂବଗଛ ଲଗାଇବା ଉଚିତ । ଘାସରୋପଣ ଦ୍ୱାରା ଲନ ପ୍ରସ୍ତୁତ କରିବାକୁ ହଲେ ୫ ରୁ ୬ ସେ.ମି. ଲମ୍ୱାର ପାକଳ ଘାସଖଣ୍ଡମାନ ସଂଗ୍ରହ କରିବା ଉଚିତ । ଏହା ସାଙ୍ଗରେ ଅନାବନା ଘାସ ମିଶିଥିଲେ ସେଗୁଡ଼ିକୁ ବାଛିଦେବା ଦରକାର । ଲନ୍ ଲଗାଯିବା ସ୍ଥାନରେ ୮ ରୁ ୧୦ ସେ.ମି. ଦୂରତାରେ ଗାରମାନ ଟାଣି ଦେଇ ଗୋଟିଏ ସ୍ଥାନରେ ୨/୪ ଟି ସଂଗୃହୀତ ଘାସଖଣ୍ଡ ଲଗାଯାଏ । ସମୁଦାୟ ସ୍ଥାନରେ ଘାସ ଲାଗିଯିବା ପରେ କିଛି ବାଲି ବିଛୁଦେଇ ପାଣି ସିଞ୍ଚିବା ଦରକାର । ୪/୫ ସପ୍ତାହ ପରେ ଘାସଗୁଡ଼ିକରେ ଚେର ଲାଗିଯାଏ । ପ୍ରଥମେ ବାଉଁଶ ପାତିଆରେ ଘାସଗୁଡ଼ିକୁ କାଟି ସାରିଲା ପରେ ଘାସକଟା ଯନ୍ତ୍ର ଏବଂ ରୋଲର ବ୍ୟବହାର କରିବା ଉଚିତ । ପ୍ରଥମରୁ ରୋଲର ବ୍ୟବହାର କଲେ ଘାସ ଉପୁଡ଼ିଯାଏ । ଏହି ପ୍ରଣାଳୀରେ ୪ ମାସ ମଧ୍ୟରେ ଗୋଟିଏ ସୁନ୍ଦର ଲନ୍ ପ୍ରସ୍ତୁତ କରାଯାଇପାରେ । ତୃତୀୟ ପ୍ରଣାଳୀ ଅନୁଯାୟୀ ଘାସ ବଢ଼ିଥିବା ସ୍ଥାନରୁ ଘାସ ଚେକାଗୁଡ଼ିକ ଆଣି ଟାଇଲି ପରି ଛୋଟକରି କାଟି ମାଟିରେ ସଜାଇ ଦିଆଯାଏ ଓ ପାଣିଦେଇ ରୋଲର ମଡ଼ାଇ ଦିଆଯାଏ । ୧୫ ଦିନ ମଧ୍ୟରେ ଲନ୍ ପ୍ରସ୍ତୁତ ହୋଇଯାଏ । ପ୍ଲାଷ୍ଟରିଂ ପ୍ରଣାଳୀରେ । ୪/୫ ସେ.ମି. ଲମ୍ୱା ପୁରୁଣା ଘାସଖଣ୍ଡମାନ ସଂଗ୍ରହକରି ଓଜନ ଅନୁସାରେ ଦୁଇଭାଗ ଏକଭାଗ ଭଲ ଖତ, ଏକଭାଗ ସଢ଼ା ଗୋବର ଓ କିଛି ବାଲି ମିଶାଇ ଏକ ପ୍ଲାଷ୍ଟର ପ୍ରସ୍ତୁତ କରାଯାଏ । ଏହି ପ୍ଲାଷ୍ଟରକୁ ୩/୪ ସେ.ମି. ବହଳରେ ପ୍ରସ୍ତୁତ ଶଯ୍ୟାରେ ଚାରିଆଡ଼େ ଲେପି ଦିଆଯାଏ । ତା ପରେ ଧୀରେ ଧୀରେ ପାଣି ଦେଲେ ୧୫ ଦିନ ମଧ୍ୟରେ ଘାସଗୁଡ଼ିକ ଗଜା ହୁଏ । ଘାସଗୁଡ଼ିକ ବଢ଼ିସାରିଲା ପରେ ୨/୩ ମାସ ପରେ ଘାସକାଟିବା ପାଇଁ ଘାସକଟା ଯନ୍ତ୍ର ଓ ରୋଲର ବ୍ୟବହାର କରାଯାଏ । ୫ ମାସ ପରେ ଲନ ପ୍ରସ୍ତୁତ ହୁଏ ।

ଉପରୋକ୍ତ ଯେ କୌଣସି ପଦ୍ଧତିରେ ଲନ ପ୍ରସ୍ତୁତ ହୋଇ ସାରିଲା ପରେ ତାହାକୁ କାଟିବା ଓ ସେଥିରେ ରୋଲର ଚଳାଇବା ନିହାତି ଆବଶ୍ୟକ । ନ କାଟିଲେ ଘାସଗୁଡ଼ିକ ଡେଙ୍ଗା ହୁଏ ଓ ବ୍ୟବହାର ପାଇଁ ଲନ ଅନୁପଯୁକ୍ତ

ହୁଏ । ଘାସ ମୂଳରୁ ଅନେକ ନୂଆ ବାହାରିବା ପାଇଁ ଏହାକୁ କଟାଯାଇଥାଏ । ଉପର ଅଂଶ କାଟିଲା ପରେ ତଳ ଗଣ୍ଠିରୁ ଶାଖାପ୍ରଶାଖା ବାହାରେ । ବର୍ଷାଦିନେ ପ୍ରତ୍ୟେକ ସପ୍ତାହରେ ଦରକାର ମୁତାବକ ଘାସ କାଟିବା ଉଚିତ । କିନ୍ତୁ ଶୀତଦିନେ ଓ ଖରାଦିନେ ଗଛର ଅବସ୍ଥା ଦେଖି କଟାକଟି କରିବା ଉଚିତ । ଲନରେ ରୋଲର ଚଳାଇବା ଏକ ପ୍ରଧାନ କାମ । ମୂଳରୁ ନୂଆକରି ବାହାରୁଥିବା ଡାଳଗୁଡ଼ିକ ମାଟିଉପରେ ଲଗାଇ ରଖିବା ପାଇଁ ରୋଲର ବ୍ୟବହାର କରାଯାଏ । ମାଟି ଓଦା ଥିଲେ ରୋଲର ଚଳାଇବା ଅନୁଚିତ । ପ୍ରତ୍ୟେକ ପୁରୁଣା ଲନର ଘାସଗୁଡ଼ିକରୁ ଅନାବନା ଗଛଗୁଡ଼ିକ ଭଲଭାବରେ ବାଛି ଦେବା ଦରକାର । ବର୍ଷାଦିନେ ଚାରିଆଡୁ ପାଣି ଆସି ଲନ ଭିତରେ ପଶିଲେ ଅନେକ ଅନାବନା ଗଛର ମଞ୍ଜି ଚାଲିଆସେ । ତେଣୁ ବଗିଚାରେ ଉପଯୁକ୍ତ ଜଳ ନିଷ୍କାସନର ସୁବିଧା ନ ଥିଲେ ଲନ ଚାରିପାଖେ ୧ ଫୁଟ ଉଚ୍ଚର ଇଟା କାନ୍ଥ କରିଦେବା ଉଚିତ । ବେଶୀ ଅନାବନା ଗଛ ଉଠିଲେ ଡାଇକେର୍ଟେକ୍ସ ଘାସମରା ଔଷଧ ପକାଇ ଗଛଗୁଡ଼ିକୁ ମାରି ଦେବା ଆବଶ୍ୟକ । ଲନଗୁଡ଼ିକରେ ଏକା ସମୟରେ ବହୁତ ପାଣି ନ ଦେଇ ଅଳ୍ପ କରି ବହୁତ ଥର ପାଣି ଦେବା ଉଚିତ । ହୋସ ପାଇପ ଦ୍ୱାରା ଚାରିଆଡ଼ ପାଣି ସମାନ ଭାବରେ ଦିଆଯାଏ । ବଡ଼ ବଡ଼ ଲନରେ ପାଇପ୍ ଦ୍ୱାରା ଗଡ଼ାଣିଆ ଦିଗରୁ ପାଣି ମଡ଼ାଯାଏ । ସକାଳ ସମୟରେ ଲନରେ ପାଣି ଦେବା ଉଚିତ । ଲନ ପୁରୁଣା ହେଲେ ଘାସଗୁଡ଼ିକର ମୂଳ ଧଳା ଓ ଦୌଡ଼ି ଭଳି ହୋଇଯାଏ । ତେଣୁ ଖରାଦିନ ଶେଷରେ କିମ୍ବା ବର୍ଷାଦିନର ଆରମ୍ଭରେ ଖୁରୂପି କିମ୍ବା ରେକ୍‌ଦ୍ୱାରା ଘାସର ଟାଣ ଅଂଶଗୁଡ଼ିକୁ ବାହାର କରି ଦିଆଯାଏ । ପରେ ମାଟି, ବାଲି ଓ ପତ୍ରଖତ ୧:୨:୧ ଅନୁପାତରେ ମିଶାଇ ପ୍ରତ୍ୟେକ ୧୦୦ ବର୍ଗମିଟର ପିଛା ୧୦୦ କି.ଗ୍ରା. ୫ ସେ.ମି. ବହଳରେ ପକାଇଦେବା ଉଚିତ । ସେହିପରି ୧୦୦ ବର୍ଗମିଟର ପିଛା ୧୦ କି.ଗ୍ରା. ହାଡଗୁଣ୍ଡ ପକାଇବା ଉଚିତ । ଘାସରେ ସାଧାରଣତଃ କମ୍ ଖତସାର ଦେବା ଦରକାର । ଖରାଦିନେ ଘାସଗୁଡ଼ିକରେ ଯଥେଷ୍ଟ ପାଣି ଦେଲେ ଘାସ ବଢ଼ିବା ପାଇଁ ଖତସାରର ବିଶେଷ ଆବଶ୍ୟକ ହୋଇ ନଥାଏ । କିନ୍ତୁ ଶୀତଦିନେ ମାଟିର ଉତ୍ତାପ ୬୦° ଫାରେନ ହାଇଟ୍ ତଳକୁ ଖସିଆସୁଥିବାରୁ ଜୈବିକ ଅଂଶକୁ ଗ୍ରହଣକରି ଓ ନିଜେ କ୍ଷୟପ୍ରାପ୍ତ ହେଉଥିବା

ଉପକାରୀ ଜୀବାଣୁଗୁଡ଼ିକର ବଂଶବିସ୍ତାର ହାର ସାଧାରଣତଃ କମିଯାଏ । ସେହି ଦୃଷ୍ଟିରୁ ପ୍ରତ୍ୟେକ ୧୦୦ ବର୍ଗ ମିଟର ପିଛା ୨ କି.ଗ୍ରା. ଆମୋନିୟମ୍ ସଲଫେଟ ଅକ୍ଟୋବର ଶେଷ ସପ୍ତାହ ଠାରୁ ପ୍ରତି ଦୁଇ ମାସରେ ଥରେ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ବୁଣିବାକୁ ହୁଏ । ଏହା ବ୍ୟତୀତ ଆମୋନିୟମ୍ ସଲଫେଟ ୧୨ ଭାଗ, ପଟାସିୟମ୍ ସଲଫେଟ ୧ ଭାଗ, ସୁପର ଫସଫେଟ ୩ ଭାଗ, ଲୌହ ସଲଫେଟ ଚାରିଭାଗ ମିଶାଇ ସେଥିରୁ ୧୦୦ ବ.ମି. ପିଛା ୫ କି.ଗ୍ରା. ନଭେମ୍ବର ମାସରେ ଥରେ ଓ ଫେବୃୟାରୀ ମାସରେ ଥରେ ପକାଇଲେ ଘାସ ଭଲ ବଢ଼େ ।

ଲନ ଘାସରେ ବେଶୀ ରୋଗପୋକ ଲାଗେ ନାହିଁ । ତେବେ ପିମ୍ପୁଡ଼ି ଲାଗିଲେ କିଛି ମାମାକ୍ସିନ୍ ପ୍ରୟୋଗ କରିବା ଉଚିତ । ଲନ୍‌ରୁ ପାଣି ଛାଡୁ ନଥିଲେ ଓ ଶିଉଳି ଲାଗିଲେ ୫ ଲିଟର ପାଣିରେ ୫ ଗ୍ରା. ପଟାସିୟମ୍ ପରମାଙ୍ଗାନେଟ୍ ମିଶାଇ ପ୍ରତ୍ୟେକ ୨ ବର୍ଗ ମି. ପିଛା ସିଞ୍ଚି ଦେବା ଉଚିତ । ଲନ୍‌ରେ ବେଶୀ ଜିଆ ହେଲେ ଜିଆ ମାରିବା ଔଷଧ ୧୫୦ ବର୍ଗମିଟର ପିଛା ୧୫୦ ଗ୍ରା. ହିସାବରେ ପକାଇବାକୁ ହୁଏ ।

ଅନେକ ସମୟରେ ପ୍ରଦର୍ଶନୀ ପ୍ରଭୃତିରେ ଏକ ପ୍ରକାର କୃତ୍ରିମ ଲନ୍ ପ୍ରସ୍ତୁତ କରାଯାଏ । ଏହି ସ୍ଥାନର ଚତୁଃପାର୍ଶ୍ୱକୁ ବାଡ଼ରେ ଆବଦ୍ଧ କରି ସମତଳ ମାଟିରେ ୭ ରୁ ୮ ସେ.ମି. ଉଚ୍ଚତାରେ ସମାନଭାବରେ କରତଗୁଣ୍ଡ ବିଛାଇ କିଛି ପାଣି ପକାଇଦେଲେ ଏହା ବସିଯାଏ । କରତଗୁଣ୍ଡଗୁଡ଼ିକ ଶୁଖିଗଲାପରେ ତା ଉପରେ ଗାଢ଼ସବୁଜ ରଙ୍ଗକୁ ସ୍ପ୍ରେ କରି ଦିଆଯାଏ । ବିଶେଷତଃ ରାତିରେ ଏହା ପ୍ରାକୃତିକ ଲନ ପରି ଦିଶେ । ଏହାର ଚାରିପଟକୁ ଆଲୋକିତ କରାଯାଇଥାଏ ।



|| ଏକବିଂଶ ପରିଚ୍ଛେଦ ||

# ଗୁଳ୍ମୋଦ୍ୟାନ ଓ ପୁଷ୍ପୋଦ୍ୟାନ

## (Shrubbery and Borders)

ପ୍ରଶସ୍ତ ଉଦ୍ୟାନ୍‌ଗୁଡ଼ିକର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ଗୁଳ୍ମୋଦ୍ୟାନ ବିଶେଷ ସାହାଯ୍ୟ କରିଥାଏ । ବାହାର ପଟ କାନ୍ଥ କିମ୍ବା ବାଡ଼ଗୁଡ଼ିକୁ ପୃଷ୍ଠଭୂମି କରି କିମ୍ବା ପ୍ରଶସ୍ତ ରାସ୍ତାର ଦୁଇ ପାର୍ଶ୍ୱରେ ଗୁଳ୍ମୋଦ୍ୟାନ ସୃଷ୍ଟି କରାଯାଇଥାଏ । ପ୍ରତ୍ୟେକ ଗୁଳ୍ମୋଦ୍ୟାନ ସୃଷ୍ଟି କରିବା ପୂର୍ବରୁ ଏହାର ଏକ ନକ୍‌ସା ପ୍ରସ୍ତୁତ କରାଯିବା ଉଚିତ । ଗୁଳ୍ମଗୁଡ଼ିକର ଉଚ୍ଚତା ଓ ପୁଷ୍ପରଙ୍ଗକୁ ଭିତ୍ତିକରି ଗୁଳ୍ମୋଦ୍ୟାନ ପ୍ରସ୍ତୁତ କରାଯାଏ । କେତେବେଳେ କେଉଁ ରଙ୍ଗର ଫୁଲ ଫୁଟିବ ଓ ଏହି ରଙ୍ଗର ପାର୍ଶ୍ୱରେ ବଢୁଥିବା ଅନ୍ୟ ରଙ୍ଗର ପୁଷ୍ପ ସହିତ ଏହା କିପରି ସମ୍ପର୍କ ସୃଷ୍ଟି କରିବ ତାହାକୁ ଆଖିଆଗରେ ରଖି ଗୁଳ୍ମୋଦ୍ୟାନର ପରିକଳ୍ପନା କରାଯାଇଥାଏ । ପ୍ରତ୍ୟେକ ଗୁଳ୍ମୋଦ୍ୟାନରେ ଅତି କମ୍‌ରେ ତିନିଧାଡ଼ି ଗଛ ରଖାଯାଏ । ତେଣୁ ଏହା ୩ ରୁ ୪ ମିଟର ଓସାର ଓ ୧୫ ରୁ ୧୬ ମିଟର ଲମ୍ବା ହେବା ଉଚିତ । ଗୁଳ୍ମଗୁଡ଼ିକ ଲଗାଇଲାବେଳେ ଡେଙ୍ଗା ଗଛଗୁଡ଼ିକ ପଛଧାଡ଼ିରେ ରଖି ସମ୍ମୁଖ ଆଡ଼କୁ କ୍ରମଶଃ ଛୋଟ ଗୁଳ୍ମଗୁଡ଼ିକୁ ଲଗାଯାଇଥାଏ । ପ୍ରତ୍ୟେକ ଗୁଳ୍ମ ଲଗାଇବା ପାଇଁ ୬୦ ସେ.ମି. ଓସାର ଓ ୪୦ ସେ.ମି. ଗଭୀରରେ ଗାତମାନ ଖୋଳାଯାଏ । ଗାତରେ ଝୁଡ଼ିଏ ଭଲ କତ ଦେଇ ଗଛ ଲଗାଯାଏ । ବର୍ଷାଦିନ ଆରମ୍ଭରେ ଗୁଳ୍ମୋଦ୍ୟାନ ଲଗାଯିବା ଉଚିତ । ପ୍ରଥମ ଧାଡ଼ିରେ ୩/୪ ମିଟର ପର୍ଯ୍ୟନ୍ତ ଉଚ୍ଚରେ ବଢୁଥିବା ଗଛଗୁଡ଼ିକୁ ଲଗାଯିବା ଉଚିତ । ଏହି ଗୁଳ୍ମଗୁଡ଼ିକ ମଧ୍ୟରେ ଏକାଲିଫା, ଏଟାନିଆ, ବୋଗନଭିଲା, ରାଧାଚୂଡ଼ା, ମନ୍ଦାର, ଛେନାଫୁଲ, କରବୀର, ପଇନ୍‌ସେଟିଆ, ଟଗର, ଟିକୋମା ପ୍ରଭୃତି ଅନ୍ତର୍ଗତ । ପର ଧାଡ଼ିରେ ୧ ୧/୨ ମିଟରୁ ୨ ମିଟର ଉଚ୍ଚକୁ ବଢୁଥିବା ଗୁଳ୍ମ ଲଗାଯାଏ । ବ୍ରନଫେଲସିଆ, ହେନା, ଡେମ୍ବିଆ, ସୁଗନ୍ଧରାଜ, ମଧ୍ୟମ ଜାତିର ମନ୍ଦାର, ଇକ୍‌ସୋରା, ଲଣ୍ଟାନା, ମୁସେଣ୍ଡା, ଚରାଟ, ଛୋଟ ଟିକୋମା, ଟାବୁ ଚାଇନା ପ୍ରଭୃତି ଏହାର ଅନ୍ତର୍ଗତ । ତା ପର ଧାଡ଼ିରେ

୩/୪ ମିଟରରୁ ୧ ୧/୨ ମିଟର ପର୍ଯ୍ୟନ୍ତ ବଢୁଥିବା ଗୁଳ୍ମଗୁଡ଼ିକୁ ଲଗାଯାଏ । ବାରଲେରିଆ, ବେଲୋପର୍ଣ୍ଣି, ଡେଡ଼ାଲକେନ୍ଥସ, ଛୋଟ ଇକ୍‌ସୋରା, ସେରବେରା, ହଳଦିଆ ଲାଣ୍ଟନା, ମାଲଫିଜିଆ, ପେଣ୍ଟାସ, ଶ୍ୱେତଚିତା ଓ ରକ୍ତଚିତା, ରସେଲିଆ ପ୍ରଭୃତି ଏହାର ଅର୍ନ୍ତଗତ । ୭୫ ସେ.ମି. ରୁ କମ୍ ଉଚ୍ଚ ହେଉଥିବା ଗୁଳ୍ମମାନଙ୍କ ମଧ୍ୟରେ ଇଟାମଲା, ଏରାନ୍ଥମମ୍, ସଦାବିହାରି, ମାଇକେଲମମ୍ ଡେଜି, ଛୋଟ ଲାଣ୍ଟନା, ମଲ୍ଲୀ, ଗୋଲଡେନ ରଡ଼, ଭର୍ବିନା ପ୍ରଭୃତି ଅନ୍ତର୍ଗତ । ପରିବେଶ ଅନୁଯାୟୀ ଏହି ଗଛଗୁଡ଼ିକର ଉଚ୍ଚତାରେ ତାରତମ୍ୟ ଦେଖାଗଲେ ସେଗୁଡ଼ିକକୁ କାଣ୍ଟଛାଣ୍ଟ କରିବା ଉଚିତ ।

**ଋତୁଜୀବୀ ପୁଷ୍ପୋଦ୍ୟାନ (Herbaceous border)** - ଗୁଳ୍ମମାନଙ୍କ ପରି ବିଭିନ୍ନ ପ୍ରକାର ଋତୁଜୀବୀ ପୁଷ୍ପମାନଙ୍କୁ ନେଇ ଛୋଟ ଛୋଟ ଉଦ୍ୟାନମାନ ସୃଷ୍ଟି କରାଯାଇଥାଏ । ଉଚ୍ଚତା, ରଙ୍ଗ ଓ ଫୁଲ ଫୁଟିବା ସମୟ ଅନୁସାରେ ଗଛଗୁଡ଼ିକୁ ଲଗାଯିବା ଉଚିତ । ଏହି ପ୍ରକାର ଉଦ୍ୟାନ ସୃଷ୍ଟିପାଇଁ ଫୁଲ ପଟାଳିଗୁଡ଼ିକ ଦୀର୍ଘ ଓ ୧ ୧/୨ ମିଟର ପ୍ରଶସ୍ତ ହେବା ଉଚିତ । ଏହି ପ୍ରକାର ଉଦ୍ୟାନରେ ତିନି କିମ୍ୱା ଚାରିଧାଡ଼ିରୁ ଅଧିକ ଧାଡ଼ି ଫୁଲ ଲଗାଯିବା ଉଚିତ । ପ୍ରତ୍ୟେକ ଧାଡ଼ିରେ ଲଗାଯାଉଥିବା ଫୁଲଗୁଡ଼ିକୁ ଧାଡ଼ି ଧାଡ଼ି କରି ନ ଲଗାଇ ବିଷମ ଆକୃତିର ଫୁଲପଟାଳି ଗୁଡ଼ିକରେ ଲଗାଯିବା ଆବଶ୍ୟକ । କିନ୍ତୁ ଏଗୁଡ଼ିକ ଯେପରି ନିର୍ଦ୍ଦିଷ୍ଟ ସୀମାରେଖା ଭିତରେ ରହନ୍ତି ସେଥିପ୍ରତି ଦୃଷ୍ଟିଦେବା ଉଚିତ । ଉଦ୍ୟାନର ଉନ୍ମୁକ୍ତ ସ୍ଥାନରେ କିମ୍ୱା ଲନ୍ ମଝିରେ ଏହିପ୍ରକାର ଉଦ୍ୟାନ ସୃଷ୍ଟି କରାଯାଇପାରେ । ପ୍ରତ୍ୟେକ ଉଦ୍ୟାନରେ ଏକ ନିର୍ଦ୍ଦିଷ୍ଟ ରଙ୍ଗସଜ୍ଜା (Colour scheme) ରହିବା ଉଚିତ । ଡେଙ୍ଗା ଗଛଗୁଡ଼ିକୁ ପଛଧାଡ଼ିରେ ଲଗାଯାଇ ସାମନା ଆଡ଼କୁ କ୍ରମେ ଛୋଟ ଛୋଟ ଉଚ୍ଚତାର ଗଛ ଲଗାଯିବା ଉଚିତ । କେତେକ ସମୟରେ ମଝି ଧାଡ଼ିରେ ଡେଙ୍ଗା ଗଛ ରଖି ଦୁଇପଟକୁ କ୍ରମେ ଉଚ୍ଚତା ଅନୁସାରେ ଛୋଟ ଛୋଟ ଗଛ ଲଗାଯାଇପାରେ । ସେହପରି ଗୋଲାକାର ପୁଷ୍ପଉଦ୍ୟାନମାନଙ୍କରେ ମଝିରେ ଡେଙ୍ଗା ଗଛ ରଖି ଚାରିପଟକୁ କ୍ରମେ ଉଚ୍ଚତା, ଅନୁସାରେ ଛୋଟ ଗଛ ଲଗାଯାଏ । ଏହି ପ୍ରକାର ଉଦ୍ୟାନ ସୃଷ୍ଟି କରିବା



ଋତୁଜୀବୀ ପୁଷ୍ପୋଦ୍ୟାନ

ବ୍ୟୟସାପେକ୍ଷ ଓ ଶ୍ରମବହୁଳ ହୋଇଥାଏ । ଗଛ ଲଗାଇଲା ବେଳେ ସବୁ ଗଛ ଏକା ସମୟରେ ନ ଲଗାଇ କେଉଁ ଗଛ ଆଗେ ଓ କେଉଁ ଗଛ ପଛେ ଲଗାଯିବ ତାହାର ବିଚାର କରି ଚାରା ଉତାରିବା ଉଚିତ । ଫୁଲ ବ୍ୟତୀତ ରଙ୍ଗୀନ୍ ପତ୍ର ଥିବା କେତେକ ଗଛ ଏହା ମଧରେ ଲଗାଯାଇପାରେ । ଉଚ୍ଚତା ଅନୁସାରେ ନିମ୍ନରେ କେତେକ ଋତୁଜୀବୀ ପୁଷ୍ପମାନଙ୍କର ତାଲିକା ଦିଆଗଲା । ୧ ମିଟରରୁ ଅଧିକ ବଢ଼ୁଥିବା ଗଛଗୁଡ଼ିକ ମଧ୍ୟରେ ହଲିହକ୍ କସମସ୍, ଡେହେଲିଆ, ସୂର୍ଯ୍ୟମୁଖୀ, ଗେଣ୍ଡୁ, ଜିନିଆ ପ୍ରଭୃତି । ୫୦ ରୁ ୧୦୦ ସେ.ମି. ଭିତରେ ଉଚ୍ଚାହୋଇ ବଢ଼ୁଥିବା ଗଛମାନଙ୍କ ମଧରେ ରଙ୍ଗୀନ୍ ଖଡ଼ା,. ଏଣ୍ଟିରାଇନମ୍, ସ୍ୱିଟକର୍ଣ୍ଣ, ସେବତୀ, ଡେହେଲିଆ, ହରଗୌରା, ଲୁପିନସ୍, ପପି, ସାଲଭିଆ, ଜିନିଆ ପ୍ରଭୃତି ଅନ୍ତର୍ଗତ । ୨୫ ରୁ ୫୦ ସେ.ମି. ଭିତରେ ବଢ଼ୁଥିବା ଗଛଗୁଡ଼ିକ ମଧରେ ଏଗେରେଟମ୍, ଏଣ୍ଟରାଇନମ୍, ଏକ୍ରୋଟିସ୍, ଏଷ୍ଟର, କୋଲିଅସ୍, କୋରିଅପ୍‌ସିସ୍, ଡେଲଫିନିଅମ୍, ଡାଇଆନ୍ଥସ, ସୁଇଟ ଉଇଲିୟମ୍, ଗମଫ୍ରିନା, କ୍ୟାଣ୍ଡିଟଫ୍, କୋଚିଆ, ମାଇକ୍ଲମସ୍‌ଡଜି, ପିଟୁନିଆ, ଫ୍ଲକସ୍ ଓ ଜିନିଆ ଅନ୍ତର୍ଗତ । ୨୫ ସେ.ମି. ରୁ କମ୍ ଉଚ୍ଚରେ ବଢ଼ୁଥିବା ଫୁଲମାନଙ୍କ ମଧରେ କାଲେଣ୍ଡୁଲା, ଏଲାଇସମ, ଜିପ୍‌ସୋଫାଇଲା, ଲୋବେଲିଆ, ପିଟୁନିଆ, ଟେବୁଲ୍ ଗୋଲାପ ଓ କେତେକ ଛୋଟ ଛୋଟ ଗେଣ୍ଡୁ ଅନ୍ତର୍ଗତ । ଉପରୋକ୍ତ ଋତୁଜୀବୀ ପୁଷ୍ପଗୁଡ଼ିକର ବିଭିନ୍ନ କିସମର ଉଚ୍ଚତା ଭିନ୍ନ ଭିନ୍ନ ପ୍ରକାରର ହୋଇଥାଏ । ତେଣୁ ଉଚ୍ଚତା ଅନୁସାରେ ଏଗୁଡ଼ିକର ବ୍ୟବହାର କରାଯିବା ଉଚିତ ।

**ବାଡ଼ଗଛ** (Hedge plants)- ଉଦ୍ୟାନର ଚତୁଃପାର୍ଶ୍ୱରେ ଥିବା ପ୍ରାଚୀର କିମ୍ବା ଜୀବନ୍ତ ଉଦ୍ଭିଦଗୁଡ଼ିକର ବାଡ଼ ଉଦ୍ୟାନର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ଇଟା, ସିମେଣ୍ଟର ବିଭିନ୍ନ ଆକୃତିର କାନ୍ଥ କରିବା ଅପେକ୍ଷା ଉଦ୍ଭିଦଗୁଡ଼ିକର ବାଡ଼ କରାଗଲେ ତାହା ବେଶୀ ସୁନ୍ଦର ଦିଶେ । ବର୍ଷାଦିନ ଆରମ୍ଭରେ ବାଡ଼ କରିବା ପାଇଁ ଗଛ ଲଗାଯାଏ । ବାଡ଼ ଲାଗଯିବା ପୂର୍ବରୁ ୨୦ ରୁ ୪୦ ସେ.ମି. ଗଭୀରରେ ଟ୍ରେଞ୍ଚ ଖୋଳି ସେଥିରେ ଖତ ଦେଇ ବର୍ଷାର ଆରମ୍ଭରେ ମଂଜି କିମ୍ବା ଡାଳ କଲମି କରି ବାଡ଼ ଲଗାଯାଏ । ବାଡ଼ପାଇଁ ଲଗାଯାଉଥିବା ଗଛଗୁଡ଼ିକ ପାଖାପାଖି ଲଗାଯିବା ଉଚିତ । ଗଛଗୁଡ଼ିକ ଶୀଘ୍ର ବଢ଼ିବା ପାଇଁ କିଛି ରାସାୟନିକ

ସାର ଦେବା ଆବଶ୍ୟକ । ବାଡ଼ଗୁଡ଼ିକୁ ଘଞ୍ଚ କରିବା ପାଇଁ ପ୍ରଥମ ଅବସ୍ଥାରେ ଆସ୍ତେ ଆସ୍ତେ କାଣ୍ଟଛାଣ୍ଟ କଲେ ଶାଖା ପ୍ରଶାଖା ବାହାରି ଏଗୁଡ଼ିକ ଘଞ୍ଚହୋଇ ବଢ଼ିଥାଏ । ପ୍ରତିବର୍ଷ ବାଡ଼ଗୁଡ଼ିକୁ ଆବଶ୍ୟକତା ଅନୁଯାୟୀ କଟାକଟି କରିବା ଉଚିତ । ଉଦ୍ୟାନଗୁଡ଼ିକରେ ବାଡ଼ କରାଯାଉଥିବା ଉଦ୍ଭିଦଗୁଡ଼ିକ ମଧ୍ୟରେ ବାରମାସୀ (Agare americana) ଅଳ୍ପ ଉଚ୍ଚରେ ବଢୁଥିବା ବାଉଁଶ, ବଗନଭିଲା, ରାଧାଚୂଡ଼ା, କରଦା (Carissa carandas), ଝାଉଁ, କ୍ଲେରୋଡେ଼ଣ୍ଡ୍ରନଇନର୍ମି (Clerodendron enermi), ଦୂରାଣ୍ଟା (*Duranta plumeri*) ବିଲାତି କଇଁଆଁ (Inga dulcis), ଲାଣ୍ଟାନ, ମେହେନ୍ଦି, ଦେବଦାରୁ, ଡାଳିମ୍ବ, ଟିକୋମା, କନିଅର, ନାଗଫେଣୀ, ସିରିଅସ କାକଟସ, ପ୍ରସୋପିସ, କାମୀନି, ଛେନାଫୁଲ, ସିଙ୍ଖୁ ପ୍ରଭୃତି ଅନ୍ତର୍ଗତ । ଉଦ୍ୟାନ ମଧ୍ୟରେ ଛୋଟ ବାଡ଼ କରିବା ପାଇଁ ବ୍ୟବହାର କରାଯାଉଥିବା ଉଦ୍ଭିଦଗୁଡ଼ିକ ମଧ୍ୟରେ ଏକାଲିଫା, ଇରାଣ୍ଡିମମ, ବାରଲେରିଆ, ଡେଡ଼ିଲିକାନ୍ଥସ, କ୍ଲେରୋଡେଣ୍ଡ୍ରନଇନର୍ମି, ହାମେଲିଆ, ମନ୍ଦାର, କଳାବାସଙ୍ଗ, ଏଫାଟୋରିଅମ୍, ଇରେସାଇନ୍ ପ୍ରଭୃତି ଅନ୍ତର୍ଗତ ।

**ଧାରଗଛ** (Edge plant)- ଫୁଲ ପଟାଳିର ଚାରିପାଖରେ କିମ୍ବା ରାସ୍ତାର ଧାରେ ଧାରେ ଅଳ୍ପ ଉଚ୍ଚତାରେ ବଢୁଥିବା ଗଛଗୁଡ଼ିକ ଲଗାଇ କାଣ୍ଟ ଛାଣ୍ଟ କରି ରଖିଲେ ତାହା ସୁନ୍ଦର ଦିଶେ । ଧାର ଗଛ କରିବା ପାଇଁ ବ୍ୟବହାର କରାଯାଉଥିବା ଗଛଗୁଡ଼ିକ ମଧ୍ୟରେ ଆଲଟାରନେନ୍ଥରା, କୋଲିଅସ,ଇରେସାଇନ୍, ଏଫାଟୋରିଅମ୍, ପାଇଲିଆ, ଟେବୁଲ୍ ଗୋଲାପ, ସିଡ଼ମ, ଟୋରେନିଆ, ଦୂରନ୍ତା ପ୍ରଭୃତି ପ୍ରଧାନ ।



# ଗ୍ରୀନ ହାଉସ ଓ ସୁଶୀତଳ ଗୃହ

## (Green Houses & Conservatories)

ଖ୍ରୀଷ୍ଟପୂର୍ବ ୪୨ ଶତାବ୍ଦୀରେ ରୋମ ସମ୍ରାଟ ଟିବେରିୟସ୍ କ୍ଲାଉଡ଼ିଅସ୍ ନିରୋ ତାଙ୍କର ଶରୀରର ଆରୋଗ୍ୟ ପାଇଁ ଜନୈକ କବିରାଜ ହାଉସରଙ୍କ ନିର୍ଦ୍ଦେଶ କ୍ରମେ ଅସମୟରେ କାକୁଡ଼ି ଉତ୍ପାଦନ ପାଇଁ ଏକ ଗୃହର ପରିକଳ୍ପନା କରିଥିଲେ ବୋଲି ସେହି ଦେଶର ସାହିତ୍ୟରୁ ଜଣାଯାଏ । ସେହି ଅନୁଭୂତିରୁ ଗ୍ରୀନହାଉସର ଉଦ୍ଭବ ହୋଇଛି ବୋଲି କହିବା ଯୁକ୍ତି ସଙ୍ଗତ ଅଟେ । ଏହି ଗୃହଗୁଡ଼ିକ କାଚ, ଆଲୁମିନିୟମ, କାଠ ଓ ପ୍ଲାଷ୍ଟିକ୍ ପ୍ରଭୃତିରେ ତିଆରି ହୋଇଥାଏ । ଶୀତପ୍ରଧାନ ଦେଶଗୁଡ଼ିକରେ ଆଧୁନିକ ଧରଣର ଗ୍ରୀନହାଉସ ଅଭ୍ୟନ୍ତରରେ ଉତ୍ତାପ, ବାୟୁର ଜଳୀୟକଣା, କାରବନ ଡାଇଅକ୍ସାଇଡ଼ ଓ ଆଲୋକର ପରିମାଣକୁ ନିୟନ୍ତ୍ରଣ କରିବାର ବ୍ୟବସ୍ଥା ଥିବା ଫଳରେ ଯେ କୌଣସି ସମୟରେ ଯେ କୌଣସି ପ୍ରକାର ଉଦ୍ଭିଦ ଗ୍ରୀନ୍‌ହାଉସ ଭିତରେ ଚାଷ କରାଯାଇଥାଏ । ଏହି ଗୃହ ନିର୍ମାଣ ଯଥେଷ୍ଟ ବ୍ୟୟସାପେକ୍ଷ ହୋଇଥିବାରୁ ଏଗୁଡ଼ିକର ବ୍ୟବହାର ଆମ ଦେଶରେ ସାଧାରଣତଃ କମ୍ ଦେଖାଯାଏ । କେତେକ ଗବେଷଣା କେନ୍ଦ୍ରରେ ଏହାର ବ୍ୟବହାର କରାଯାଉଛି ।

ସାଧାରଣତଃ ତିନିପ୍ରକାରା ଗ୍ରୀନହାଉସ ଦେଖାଯାଏ । ଯଥା- ସମପାର୍ଶ୍ୱୀ (Even span), ବିଷମ ପାର୍ଶ୍ୱୀ (Uneven span) ଏବଂ ଏକ ପାର୍ଶ୍ୱୀ (Lean to) । ସମପାର୍ଶ୍ୱୀରେ ଗ୍ରୀନ୍‌ହାଉସ୍ ଛାତର ଦୁଇପାର୍ଶ୍ୱ ସମାନ ଆୟତନ ବିଶିଷ୍ଟ । ବିଷମପାର୍ଶ୍ୱୀରେ ଏକ ପାର୍ଶ୍ୱ ଅନ୍ୟ ପାର୍ଶ୍ୱର ତିନିଗୁଣ । ଏକ ପାର୍ଶ୍ୱୀରେ ଗୃହର ବାହାର ପଟ କାନ୍ଥ ଗ୍ରୀନ ହାଉସର ଏକ ପାର୍ଶ୍ୱ ପାଇଁ ବ୍ୟବହାର କରାଯାଇଥାଏ । ଅଧିକାଂଶ ଗ୍ରୀନ ହାଉସ ସମପାର୍ଶ୍ୱୀ ଓ ସମତଳ ସ୍ଥାନରେ ଅବସ୍ଥିତ । ଢାଲୁ, ଗଡ଼ାଣିଆ ଓ ପାହାଡ଼ିଆ ଅଞ୍ଚଳରେ ବିଷମପାର୍ଶ୍ୱୀ ଗ୍ରୀନହାଉସମାନ ସ୍ଥାପନ କରାଯାଏ । କମ ଖର୍ଚ୍ଚ ଯୋଗୁ ଅନେକ ଲୋକ ପ୍ରଚୁର ସୂର୍ଯ୍ୟାଲୋକ ପଡୁଥିବା ଗୃହ କାନ୍ଥକୁ ଏକ ପାର୍ଶ୍ୱକରି ଗ୍ରୀନ୍‌ହାଉସ ପ୍ରସ୍ତୁତ କରିଥାନ୍ତି । ପୁରୁଣାକାଳରେ ତମ୍ବା ପାଇପ୍‌ରେ ଗରମପାଣି ସଂଚାଳନ କରି ଗ୍ରୀନ୍‌ହାଉସ ଭିତରେ ଉତ୍ତାପ ନିୟନ୍ତ୍ରଣ କରୁଥିଲେ । କିନ୍ତୁ ଆଜିକାଲି ବୈଦ୍ୟୁତିକ ଶକ୍ତି ସାହାଯ୍ୟରେ ଏହାର ଉତ୍ତାପ ନିୟନ୍ତ୍ରଣ କରାଯାଉଅଛି । ସେହିପରି ଜଳୀୟ

ଅଂଶ ନିୟନ୍ତ୍ରଣ ପାଇଁ ମେସିନ୍‌ର ବ୍ୟବହାର କରାଯାଉଅଛି ଓ ଆଲୋକ ନିୟନ୍ତ୍ରଣ ପାଇଁ ବିଜୁଳିବତୀର ବ୍ୟବହାର କରାଯାଉଅଛି । ବାୟୁସଂଚାଳନ ପାଇଁ ଗ୍ରୀନହାଉସ୍‌ର ଝରକା ଖୋଲିବା ଓ ବନ୍ଦକରିବା ପାଇଁ ସ୍ୱୟଂଚାଳିତ ବ୍ୟବସ୍ଥାମାନ ରଖାଯାଉଛି । ଏହାଦ୍ୱାରା ଆବଶ୍ୟକ ମୁତାବକ ସୂର୍ଯ୍ୟାଲୋକ ଓ ବାୟୁ ଚଳାଚଳ ନିୟନ୍ତ୍ରଣ କରାଯାଇପାରେ । ପ୍ରତ୍ୟେକ ଗ୍ରୀନହାଉସ୍‌ର ଅଭ୍ୟନ୍ତରରେ ବିଭିନ୍ନ ଉଚ୍ଚତାରେ ବେଞ୍ଚ ପ୍ରସ୍ତୁତ କରାଯାଇ ସେଥିରେ ମାଟି ରଖାଯାଇ ଗଛ ଲଗାଯାଏ । ଏହି ଗୃହଗୁଡ଼ିକର ଅଭ୍ୟନ୍ତରରେ ଉଦ୍ଭିଦମାନଙ୍କର ବିକାଶ ସାଧାରଣତଃ ପରିଚାଳନା ପଦ୍ଧତି ଉପରେ ନିର୍ଭର କରିଥାଏ । ଗ୍ରୀନ୍‌ହାଉସ୍ ଭିତରେ ଲଗାଯାଇଥିବା ଉଦ୍ଭିଦମାନଙ୍କ ମଧ୍ୟରେ ଏଲୋକୋସିଆ, ଆନ୍ଥୁରିୟମ୍, ଆସ୍ପିଡେଷ୍ଟ୍ରା, ବିଗୋନିଆ, ବିଲବର୍ଜିଆ, କେଲେଡ଼ିଅମ୍, କାଲଥିଆ, ଡିଫେନ୍‌ବେଚିଆ, କ୍ଲୋରୋଫାଇଟମ୍, ଡ୍ରେସିନା, କ୍ରୋଷ୍ଟାଛସ୍, ସାଇକ୍ଲାଛସ୍, ଫାଇକସ୍, ଫିଟୋନିଆ, ହେଲିକୋନିଆ, ମେରାଣ୍ଟା, ବିଭିନ୍ନ ଜାତିର କିଆ, ପିପ୍‌ରମିଆ, ମନଷ୍ଟେରା ଓ ଫାଇଲୋଡେନଡ୍ରନ୍, ପାଇଲିଆ, ସେନସିଭେରିଆ, ଫର୍ଣ୍ଣ, ଅର୍କିଡ଼ ପ୍ରଭୃତି ଲଗାଯାଇଥାଏ । ଆମେରିକାରେ ଗ୍ରୀନ୍‌ହାଉସ ଭିତରେ ପନିପରିବା ଚାଷ କରାଯାଏ । ଗଛର ବଂଶବିସ୍ତାର ପାଇଁ ଗ୍ରୀନ୍‌ହାଉସ୍‌କୁ ବ୍ୟବହାର କରାଯାଇପାରେ ।

**କନଜରଭେଟୋରୀ** - ତାରଜାଲି ଦ୍ୱାରା ଆବୃତ କରି କନଜରଭେଟୋରୀମାନ ପ୍ରସ୍ତୁତ କରାଯାଏ । ପ୍ରତ୍ୟେକ କନଜରଭେଟୋରୀର ଚଟାଣ ସିମେଣ୍ଟରେ ତିଆରି ହୋଇଥାଏ ଓ ମଝିରେ ପାଣି ରଖିବା ପାଇଁ କୁଣ୍ଡ ଥାଏ । ଏହି ଗୃହରେ ଚତୁଃପାର୍ଶ୍ୱରେ କିଛି ଉଚ୍ଚଯାଏ ଇଟା ଉଠାଇ ତାହାପରେ କାଠ ବା ଲୁହାଫ୍ରେମ୍ ପ୍ରସ୍ତୁତକରି ତାର ଜାଲିରେ ଆବଦ୍ଧ କରାଯାଏ । ଗୃହକୁ ଶୀତଳ ରଖିବା ପାଇଁ ସ୍ୱର୍ଣ୍ଣଧାରା, ଆଣ୍ଟିଗୋନନ୍ ଥନବର୍ଜିଆ, ପ୍ରଭୃତି ଲତାମାନ ମଡ଼ାଯାଏ । ଏହି ଗୃହ ମଧ୍ୟରେ ବେଞ୍ଚ ପ୍ରସ୍ତୁତକରି ବିଭିନ୍ନପ୍ରକାର ଉଦ୍ଭିଦମାନଙ୍କୁ ଲଗାଯାଇଥାଏ । ଏହା ବ୍ୟତୀତ ସାମାନ୍ୟ ଆଲୋକରେ ବଢ଼ିପାରୁଥିବା ବିଭିନ୍ନ ଉଦ୍ଭିଦଗୁଡ଼ିକୁ ଏହା ଭିତରେ ଚାଷ କରାଯାଏ । ପ୍ରତି ବର୍ଷ ତାରଜାଲିକୁ ରଙ୍ଗ କରାଯିବା ଉଚିତ । ଏହି ଗୃହମଧରେ ଥିବା ଉଦ୍ଭିଦଗୁଡ଼ିକରେ ସମୟେ ସମୟେ ବିଭିନ୍ନ କୀଟପତଙ୍ଗ ଲାଗିଥାନ୍ତି । ସେଗୁଡ଼ିକର ଦୂରୀକରଣ ବ୍ୟବସ୍ଥା କରାଯିବା ଆବଶ୍ୟକ ।



# ଜଳୋଦ୍ୟାନ

ଉଦ୍ୟାନର ପ୍ରାକୃତିକ ପରିବେଶକୁ ବୃଦ୍ଧି କରିବାରେ ଜଳୋଦ୍ୟାନ, କ୍ଷୁଦ୍ର ଜଳଧାର ତଥା ହ୍ରଦଗୁଡ଼ିକ ବିଶେଷ ସାହାଯ୍ୟ କରିଥାନ୍ତି । ସେହି କାରଣରୁ ଅଧିକାଂଶ ହ୍ରଦର ଚତୁଃପାର୍ଶ୍ୱରେ ବହୁ ଯୁଗରୁ ଉଦ୍ୟାନମାନ ସୃଷ୍ଟି ହୋଇଆସୁଅଛି । ଉତ୍ତର ଭାରତର ବିଭିନ୍ନ ଉଦ୍ୟାନଗୁଡ଼ିକରେ ବିଶେଷ କରି ରାଜସ୍ଥାନର ରାଜପୁତ ଉଦ୍ୟାନ ଗୁଡ଼ିକରେ କ୍ଷୁଦ୍ର ଜଳୋଦ୍ୟାନକୁ ବିଶେଷ ଗୁରୁତ୍ୱ ଦିଆଯାଇଅଛି । ହିନ୍ଦୁ ସଭ୍ୟତାର ଉଦ୍ୟାନ ସଂସ୍ଥାନ ଂପଦ୍ଧତିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଛୋଟ ବଡ଼ ଯେ କୌଣସି ଉପବନଗୁଡ଼ିକର ମଧ୍ୟଭାଗରେ ଏକ ଜଳୋଦ୍ୟାନ ରଖାଯାଉଥିଲା । ପୁରୁଣାଗଡ଼ଗୁଡ଼ିକର ଚତୁର୍ଦ୍ଦିଗରେ ଗଡ଼ଖାଇଗୁଡ଼ିକ ଗଡ଼କୁ ବିପଦମୁକ୍ତ କରିବା ସଙ୍ଗେ ସଙ୍ଗେ ରାଜପରିବାର ଲୋକଙ୍କର ନୌକାବିହାର ଓ ରାଜପ୍ରାସାଦର ସୌନ୍ଦର୍ଯ୍ୟ ଅଭିବୃଦ୍ଧିରେ ସାହାଯ୍ୟ କରୁଥିଲା । ଐତିହାସିକ ଉଦାହରଣକୁ ଛାଡ଼ିଦେଲେ ଆଜିକାଲି ମଧ୍ୟ ଜଳୋଦ୍ୟାନ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଅଛି । ନନ୍ଦନକାନନ ଓ ରାଜ୍ୟ ଉଦ୍ଭିଦଉଦ୍ୟାନର ମଝିରେ ଥିବା ଜଳଭାଗ ଏହାର ସୌନ୍ଦର୍ଯ୍ୟ ବଢ଼ାଇବାରେ ସାହାଯ୍ୟ କରୁଅଛି । ଏହା ବ୍ୟତୀତ ଜଳରେ ବଢୁଥିବା ଉଦ୍ଭିଦ ତଥା ସନ୍ତସନ୍ତିଆ ସ୍ଥାନରେ ବଢୁଥିବା ଉଦ୍ଭିଦଗୁଡ଼ିକ ଲଗାଇବା ପାଇଁ ଜଳୋଦ୍ୟାନ ଅପରିହାର୍ଯ୍ୟ । ଜଳୋଦ୍ୟାନରେ ବ୍ୟବହାର କରାଯାଉଥିବା ଉଦ୍ଭିଦଗୁଡ଼ିକୁ ତିନି ଭାଗ ରେ ବିଭକ୍ତ କରାଯାଇଥାଏ, ଯଥା-ଜଳଜ (Aquatic) । ଅମ୍ଳପଙ୍କ (Bog) ଏବଂ ଅନୂପ ଉଦ୍ଭିଦ (Marshy) । ଜଳପରାଗିତ (Moisture Loving Plants) । ଏହିସବୁ ଉଦ୍ଭିଦମାନଙ୍କ ମଧ୍ୟରୁ ଜଳଜ ଉଦ୍ଭିଦଗୁଡ଼ିକ ବଢ଼ିବା ପାଇଁ ୧ ମିଟର ପର୍ଯ୍ୟନ୍ତ ଗଭୀର ଜଳ ଆବଶ୍ୟକ କରିଥାନ୍ତି । ଏଥିମଧ୍ୟରୁ କେତେକ ଜଳଜ ଉଦ୍ଭିଦ ୧୫ ସେ.ମି. ରୁ ଆରମ୍ଭ କରି ୧୫୦ ସେ.ମି. ଉଚ୍ଚକୁ ବଢ଼ିଥାନ୍ତି । ଅମ୍ଳପଙ୍କ ଓ ଅନୂପ ଉଦ୍ଭିଦଗୁଡ଼ିକ ଜଳୋଦ୍ୟାନର ପାର୍ଶ୍ୱରେ ଥିବା ଜଳରେ ବଢ଼ିଥାନ୍ତି । ସେଗୁଡ଼ିକର କିଛି ଅଂଶ ଜଳରେ ଓ କିଛି ଅଂଶ ମାଟିରେ ଲାଗିଥାଏ । କିନ୍ତୁ




ଜଳୋଦ୍ୟାନ

ଜଳପରାଗିତ ଉଦ୍ଭିଦଗୁଡ଼ିକ ଜଳୋଦ୍ୟାନର ପାର୍ଶ୍ୱବର୍ତ୍ତୀ ସନ୍ତସନ୍ତିଆ ମାଟିରେ ବଢ଼ିଥାନ୍ତି ।

ଜଳୋଦ୍ୟାନ ପ୍ରସ୍ତୁତ ପୂର୍ବରୁ କେତେକ ନିୟମ ଅବଲମ୍ବନ କରିବା ଉଚିତ । ଯଦି ଉଦ୍ୟାନ ମଧ୍ୟରେ ଥିବା ପୁରୁଣା ଜଳଭାଗକୁ ସାମାନ୍ୟ ପରିବର୍ତ୍ତନ କରି ଜଳୋଦ୍ୟାନରେ ପରିଣତ କରାଯାଏ, ତେବେ ଏହାର ଚୁତଃପାର୍ଶ୍ୱରେ ବଢ଼ିଥିବା ବଡ଼ ବଡ଼ ବୃକ୍ଷକୁ କାଟିଦେବା ଉଚିତ । ଏଗୁଡ଼ିକ ରହିଲେ ଶୁଖିଲାପତ୍ର ପାଣିରେ ପଡ଼ି ଜଳ ଦୂଷିତ ହୋଇଥାଏ । ଚାରିଆଡ଼ ଖୋଲା ରହିଲେ



ଜଳୋଦ୍ୟାନ

ଜଳୋଦ୍ୟାନର ଉନ୍ମୁକ୍ତ ସୌନ୍ଦର୍ଯ୍ୟ ଉପଭୋଗ୍ୟ ହୋଇଥାଏ । ବଗିଚା ମଧ୍ୟରେ ପାଖାପାଖି ୨/୩ ଟି ଜଳଭାଗ ଥିଲେ ଗୋଟିକରୁ ଅନ୍ୟ ଗୋଟିକ ସହିତ ଝରଣା ଆକାରର ସଂଯୋଗନାଳୀ ସୃଷ୍ଟିକରି ବାଲି, ପଥର ପ୍ରଭୃତି ସଜାଇ ପ୍ରାକୃତିକ ଝରଣାର ପରିବେଶ ସୃଷ୍ଟି କରାଯାଇପାରେ । ଝିଲଭଳି ଥିବା ଅତି ଦୀର୍ଘ ଜଳଭାଗକୁ ମଝିରେ ସଂକୀର୍ଣ୍ଣ କରି ଏହାର ସୌନ୍ଦର୍ଯ୍ୟ ବୃଦ୍ଧି କରାଯାଇଥାଏ । ଜଳଭାଗର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଯିବାପାଇଁ ବାଉଁଶ, କାଠ କିମ୍ବା ପଥରରେ ସୌନ୍ଦର୍ଯ୍ୟମୟ ପୋଲ ନିର୍ମାଣ କରିବା ଉଚିତ । କିନ୍ତୁ ନୂଆକରି ଜଳୋଦ୍ୟାନ ତିଆରି କରିବାକୁ ହେଲେ ବର୍ଗାକାର, ଆୟତାକାର, ଅଣ୍ଡାକାର କିମ୍ବା ଭଙ୍ଗିଳ ଜଳୋଦ୍ୟାନ ପ୍ରସ୍ତୁତ କରାଯାଇପାରିବ । ଜଳୋଦ୍ୟାନଗୁଡ଼ିକର ଆୟତନ ଉଦ୍ୟାନର ବିସ୍ତୃତି ଅନୁସାରେ ହେବା ଉଚିତ । ତେବେ ସବୁଠାରୁ କ୍ଷୁଦ୍ର ଆୟତନର ଜଳୋଦ୍ୟାନଗୁଡ଼ିକ ଅତି କମ୍‌ରେ ୩୦ ବର୍ଗମିଟର କ୍ଷେତ୍ରଫଳ ମଧ୍ୟରେ ରହିବା ଉଚିତ । ପ୍ରଥମେ ଜଳୋଦ୍ୟାନ କରିବା ପାଇଁ ସ୍ଥିରୀକୃତ ସ୍ଥାନରୁ ୪ ମିଟର ପର୍ଯ୍ୟନ୍ତ ଗଭୀରରେ ମାଟି ଖୋଳିବାକୁ ହୁଏ । ତଳେ ୨୫ ରୁ ୩୦ ସେ.ମି. ମୋଟାରେ ଗୋଡ଼ି ଓ ସିମେଣ୍ଟର ଏକ କଂକ୍ରିଟ୍ ଦେବା ଉଚିତ । ସମଗ୍ର ଜଳୋଦ୍ୟାନରେ ବିଭିନ୍ନ ପ୍ରକାର ଉଦ୍ଭିଦ ଲଗାଇବାପାଇଁ ତିନୋଟି ଖୋପ କରାଯାଏ । ତଳ ଖୋପରେ ପଦ୍ମ ଓ କେତେକ କଇଁ ଲଗାଯାଏ । ମଝି ଥାକରେ କେତେକ ଅଳ୍ପ ଗଭୀରରେ ଫୁଟୁଥିବା କଇଁ, ପାଣିଶିଉଳି ପ୍ରଭୃତି ଗଛ ଓ ଉପରପଟକୁ ଥିବା ଖୋପରେ ଅମ୍ଳପଙ୍କ ଓ ଅନୂପ ଉଦ୍ଭିଦଗୁଡ଼ିକ ଲଗାଯାଏ । କୁଣ୍ଡ ପ୍ରସ୍ତୁତ ହୋଇ ସାରିଲା ପରେ ଏଥିରେ ପାଣି ଭର୍ତ୍ତିକରି ୧ ମାସ ପର୍ଯ୍ୟନ୍ତ ରଖିଦେବା ଉଚିତ । ଏହା ଦ୍ୱାରା କଣାଥିବା ସ୍ଥାନଗୁଡ଼ିକୁ ଜାଣି ହୁଏ ଓ ସିମେଣ୍ଟ ଗୋଡ଼ିର ବିଷାକ୍ତ ଅଂଶଗୁଡ଼ିକ ଧୋଇହୋଇ ଯାଏ । ଏହା ପରେ ପଟାସିୟମ୍ ପରମାଙ୍ଗାନେଟ୍ ପାଣି ଗାଢ଼ ଲାଲ ହେବା ପର୍ଯ୍ୟନ୍ତ ମିଶାଯାଇ ପାଣିକୁ ୧୦ ଦିନ ପର୍ଯ୍ୟନ୍ତ କୁଣ୍ଡରେ ରଖି ତା ପରେ ବାହାର କରି ଦିଆଯାଏ । କୁଣ୍ଡ ପ୍ରସ୍ତୁତ କଲାବେଳେ କୁଣ୍ଡ ତଳେ ପାଣି ପୂରଣ ଓ ନିଷ୍କାସନ ପାଇଁ ବାଟ ରଖିବା ଉଚିତ । ଖରାଦିନ ଶେଷ କିମ୍ବା ବର୍ଷା ଦିନ ଆରମ୍ଭରେ କୁଣ୍ଡରେ ଗଛ ଲଗାଇବାର ବ୍ୟବସ୍ଥା କରାଯିବା ଉଚିତ । ଦୁଇ ପ୍ରକାର ଉପାୟରେ

ଜଳୋଦ୍ୟାନରେ ଗଛ ଲଗାଯାଇଥାଏ । ଆଗରୁ କୌଣସି ଜଳଭାଗରେ ଉଠିଥିବା ଗଛକୁ ସଂଗ୍ରହ କରି ପ୍ରସ୍ତୁତ ଜଳୋଦ୍ୟାନରେ ଲଗାଯାଏ । କିନ୍ତୁ ଏହା ଅପେକ୍ଷା ଗଛଗୁଡ଼ିକର ମୂଳଅଂଶ ବା ମଞ୍ଜି ସଂଗ୍ରହକରି ଗଛ ଲଗାଇବା ଭଲ । ଗଛ ଲଗାଇବା ପୂର୍ବରୁ ପ୍ରତ୍ୟେକ ଥାକରେ ୨୦ ସେ.ମି. ବହଳରେ ପାଞ୍ଚ ଭାଗ ମଟାଳ ମାଟି ଓ ୧ ଭାଗ ସଢ଼ା ଗୋବରଖତର ମିଶ୍ରଣକୁ ଭର୍ତ୍ତି କରାଯାଏ । ପରେ ପ୍ରତି ବର୍ଗମିଟର ପିଛା ୧୦୦ ଗ୍ରା. ହାଡ଼ଗୁଣ୍ଡ ଦେବା ଉଚିତ । ଗଛ ଲଗାଇବା ପୂର୍ବରୁ ଛୋଟ ଛୋଟ ବାଉଁଶ ପାଛିଆରେ ପ୍ରସ୍ତୁତ ହୋଇ ଥିବା ଉପରୋକ୍ତ ମାଟି ମିଶ୍ରଣକୁ ଭର୍ତ୍ତିକରି ସେଥିରେ ସଂଗୃହୀତ ମୂଳ କିମ୍ବା ମଞ୍ଜି ପକାଇ ଗଛଗୁଡ଼ିକୁ ଗଜା କରାଯାଏ । ପରେ ପାଛିଆଗୁଡ଼ିକୁ ବାନ୍ଧି ଧୀରେ ଧୀରେ ପାଣିଭିତରେ ତଳକୁ ଖସାଇ ଦିଆଯାଏ । ଏହା ବ୍ୟତୀତ ପ୍ରଥମେ ତଳ ସୋପନରେ ରଖାଯାଇଥିବା ମାଟିରେ ମଞ୍ଜି ଲଗାଯାଏ । ସେଗୁଡ଼ିକ ଗଜା ହେଲା ପରେ ଧୀରେ ଧୀରେ ପାଣିର ଉଚ୍ଚତା ବଢ଼ାଇବାକୁ ହୁଏ । ଶେଷବେଳକୁ ସବୁ ସ୍ତରରେ ଗଛ ଲଗାଯାଇ ବଢ଼ିବା ବେଳକୁ କୁଣ୍ଡରେ ପୂରାମାତ୍ରାରେ ପାଣି ପୂର୍ଣ୍ଣହୋଇ ଯାଇଥାଏ । ଜଳୋଦ୍ୟାନରେ ଗଛଗୁଡ଼ିକୁ ଲଗାଇସାରିବା ପରେ ସେଗୁଡ଼ିକର ବିଶେଷ ଯତ୍ନ ନେବା ଦରକାର ପଡ଼େ ନାହିଁ । କୁଣ୍ଡରେ ମଶାମାନେ ଘର ବାନ୍ଧି ଡ଼ିମ୍ବ ଦେଲେ ସେଗୁଡ଼ିକର ନିରାକରଣ କରାଯିବା ଦରକାର ପଡ଼ିଥାଏ । କୁଣ୍ଡରୁ ବେଙ୍ଗ ଓ ଗେଣ୍ଡାଗୁଡ଼ିକୁ ବାହାର କରିଦେବା ଉଚିତ । ସୌନ୍ଦର୍ଯ୍ୟବର୍ଦ୍ଧକ ମାଛ କୁଣ୍ଡରେ ପୋଷଣ କରାଯିବା ଆବଶ୍ୟକ । କୁଣ୍ଡର ଗୋଟିଏ ଜାଗାରେ କିଛି ପଥର ରଖି ଖୋପ କରିଦେଲେ ମାଛଗୁଡ଼ିକ ତା ଭିତରଦେଇ ଯିବା ଆସିବା କରନ୍ତି । କୁଣ୍ଡର ପାଣି ଶୈବାଳ ଯୋଗୁ ନୀଳ ହୋଇଗଲେ ପ୍ରତି ୨୫୦୦୦ ଗ୍ୟାଲନ ପାଣି ପିଛା ୧୦୦ ଗ୍ରା. ହିସାବରେ ବ୍ଲୁ ଭିଟ୍ରଲ (Blue vitrol) ପକାଇବା ଉଚିତ । ନିମ୍ନରେ ଜଳୋଦ୍ୟାନରେ ଲଗାଯାଉଥିବା କେତେକ ଉଦ୍ଭିଦର ବର୍ଣ୍ଣନା ଦିଆଗଲା ।

**କଇଁ** ପୂର୍ବରୁ ମୂଳଜ ଉଦ୍ଭିଦ ପରିଚ୍ଛେଦରେ ଏହାର ବର୍ଣ୍ଣନା କରାଯାଇଅଛି । ଆମଦେଶରେ ବିଭିନ୍ନ ପ୍ରକାର କଇଁ ଦେଖାଯାଏ । ସେମାନଙ୍କ ମଧ୍ୟରେ ଲାଲ କଇଁ (Nymphaea rubra), ନାଳକଇଁ (N. caerulea)

ଶ୍ୱେତକଇଁ (N.lutea) ଓ ଗାଢ଼ ହଳଦିଆ ରଙ୍ଗର କଇଁ (N. sulphurea) ପ୍ରଭୃତି ଲଗାଯାଇପାରେ । ଧଳା କଇଁଗୁଡ଼ିକ ରାତିରେ ଫୁଟି ଦିନବେଳେ ବନ୍ଦ ହୋଇଯାଏ । କିନ୍ତୁ ଅନ୍ୟାନ୍ୟ କଇଁଗୁଡ଼ିକ ସବୁବେଳେ ଫୁଟିଥାନ୍ତି । ଏହି ଜାତୀୟ କଇଁଗୁଡ଼ିକ ୧ ମିଟରରୁ ୨ ମିଟର ଗଭୀର ପାଣିରେ ବଢ଼ିପାରନ୍ତି । ପୁରୁଣା ସ୍ଥାନରୁ ମୂଳ ସଂଗ୍ରହ କରି ନୂଆଗଛ କରାଯାଏ । ଶୀତମଣ୍ଡଳୀୟ ଜଳବାୟୁରେ ଏହି ଗଛଗୁଡ଼ିକରେ ମଂଜି ହୁଏ । ତେଣୁ ମଂଜିରୁ ନୂଆ ଗଛ ସମ୍ଭବ ହୁଏ ।

**ପଦ୍ମ** (*Nelumbium speciosum*)- ଏହା ଆମ ଭାରତବର୍ଷର ଜାତୀୟ ପୁଷ୍ପ । ଏହା ୨ ମିଟର ପାଣିରେ ବଢ଼ିପାରେ । ଖରାଦିନେ ପାଣି ଶୁଖିଆସିଲା ବେଳକୁ ବହୁପରିମାଣର ପଦ୍ମ ଫୁଟିବାର ଦେଖାଯାଏ । ଏକ ହଳଦିଆ ଜାତିର ପଦ୍ମ (*N. luteum*) ଜଳୋଦ୍ୟାନରେ ବ୍ୟବହାର କରାଯାଇପାରେ । ମୂଳ କିମ୍ୱା ମଂଜି ସଂଗ୍ରହ କରି ନୂଆଗଛ ଲଗାଯାଏ ।

**ଭିକ୍ଟୋରିଆ କଇଁ** (*Victoria regia* Nymphaeaceae)- ଏହା ଏକ ବିରାଟକାୟ କଇଁ । ବଡ଼ ବଡ଼ ଜଳୋଦ୍ୟାନରେ ଏହାକୁ ଲଗାଯାଇଥାଏ । ଦକ୍ଷିଣ ଆମେରିକା ଏହାର ଜନ୍ମସ୍ଥାନ ଓ ଆମେଜାନ ନଦୀରେ ଏହା ବେଶୀ ଦେଖିବାକୁ ମିଳେ । ଏହାର ପତ୍ରଗୁଡ଼ିକ ୨ ମିଟର ଓ ଫୁଲଗୁଡ଼ିକ ୬୦ ସେ.ମି. ବ୍ୟାସାର୍ଦ୍ଧ ବିଶିଷ୍ଟ । କିନ୍ତୁ ଆମ୍ଦେଶରେ ଏଗୁଡ଼ିକର ଆୟତନ ଅପେକ୍ଷାକୃତ କମ୍ ହୁଏ । ମଂଜିରୁ ନୂଆଗଛ ଲଗାଯାଏ । ଗଛଗୁଡ଼ିକ ଧୀରେ ଧୀରେ ବଢ଼େ, ତେଣୁ ପୂର୍ଣ୍ଣାବସ୍ଥା ନିମନ୍ତେ ଗୋଟିଏ ଗଛକୁ ୨ ବର୍ଷ ଲଗେ । ଏହାର ପତ୍ରଗୁଡ଼ିକ ଗୋଟିଏ ଗୋଟିଏ ବଡ଼ ଥାଳି ପରି ଓ ଏହାର ତଳପଟେ ଛୋଟ ଛୋଟ କଣ୍ଟା ଥାଏ ।

**ଭଉରିଏଲ** (*Euryale ferox* Nymphaeaceae)- ଏଗୁଡ଼ିକର ପତ୍ର ଭିକ୍ଟୋରିଆ କଇଁ ପରି କଣ୍ଟାଯୁକ୍ତ ଓ ୧ ୧/୨ ମିଟର ବ୍ୟାସବିଶିଷ୍ଟ । ଗଛରେ ଲାଲ ଓ ନୀଳ ରଙ୍ଗର ଫୁଲ ଫୁଟେ । ଏଗୁଡ଼ିକୁ ବଡ଼ ବଡ଼ ଜଳୋଦ୍ୟାନମାନଙ୍କରେ ଲଗାଯାଇ ପାରିବ ।

**କେପ ଫୁଲ** (*Aponogeton distachys* Naidaceae)- ଏହା ଏକ ସୁବାସଯୁକ୍ତ ଫୁଲ । ଫୁଲଗୁଡ଼ିକ ଧଳା । କିନ୍ତୁ ଫୁଲଗୁଡ଼ିକ ମଝିରେ କଳା ପରାଗରେଣୁ ଥାଏ । ପତ୍ରଗୁଡ଼ିକ ଦେଖିବାକୁ ଛାଟପରି । ଏହାର ମୂଳ ସଂଗ୍ରହ କରି ନୂଆଗଛ ଲଗାଯାଏ ।

**ପାଣିଶିଉଳି** (*Lemnanthemum indicum* Gentianaceae)- ଏହାର ପତ୍ରଗୁଡ଼ିକ ଦେଖିବାକୁ କଇଁ ପତ୍ରପରି, ଆଉ ଫୁଲଗୁଡ଼ିକ ସାମାନ୍ୟ ହଳଦିଆ ମିଶା ଧଳାରଙ୍ଗ ଓ ୨ ରୁ ୩ ସେ.ମି. ଲମ୍ବା । ମଞ୍ଜି ଓ ମୂଳଦ୍ୱାରା ନୂଆଗଛ କରାଯାଏ ।

**ମନଚୋରି** (*Monochoria hastifolia* Pontedariaceae) ଏହା ଦେଖିବାକୁ ବିଲାତି ଦଳପରି । କିନ୍ତୁ ବିଲାତି ଦଳ (Hyacinth) ଠାରୁ ସାମାନ୍ୟ ଉଚ । ଫୁଲଗୁଡ଼ିକ ବାଇଗଣି ନୀଳରଙ୍ଗ ବିଶିଷ୍ଟ । ଗଛର ପାର୍ଶ୍ୱରୁ ବାହାରିଥିବା ପୁଆଗୁଡ଼ିକୁ ଭାଙ୍ଗି ନୂଆଗଛ ଲଗାଯାଏ ।

**ହାଇସେଣ୍ଥ ବିଲାତିଦଳ** (*Eichhornia crassipes*, Pantedariaceae)- ଏହି ଗଛଗୁଡ଼ିକ ସାଧାରଣତଃ ପାଣିରେ ଭାସୁଥାନ୍ତି । ବର୍ଷାଦିନର ଶେଷ ଆଡ଼କୁ ଓ ଶୀତଦିନ ସାରା ଏଥିରେ ଫୁଲ ଫୁଟେ । ନୀଳରଙ୍ଗର ଫୁଲଗୁଡ଼ିକ ଏକାଠି ଫୁଟୁଥିବା ବେଳେ ମନୋରମ ଦିଶେ । ଏହାର ପତ୍ରର ଡେମ୍ଫଗୁଡ଼ିକ ସ୍ଫୀତ ଓ ଦେଖିବାକୁ ସୁନ୍ଦର । ନିକଟବର୍ତ୍ତୀ ଜଳଭାଗଗୁଡ଼ିକରୁ ଫୁଲ ଫୁଟିବା ପୂର୍ବରୁ ଗଛ ସଂଗ୍ରହ କରି ଜଳୋଦ୍ୟାନରେ ଲଗାଇବା ଉଚିତ ଓ ଫୁଲ ଫୁଟିସାରିବା ପରେ ପାଣିରୁ କାଢ଼ି ଫିଙ୍ଗି ଦେବା ଆବଶ୍ୟକ । ନଚେତ ଜଳ ଦୂଷିତ ହେବାର ସମ୍ଭାବନା ଥାଏ ।

**ପାଣିସିଙ୍ଗଡ଼ା** (*Trapa natans*, Onagraceae)- ଏହାର ପତ୍ରଗୁଡ଼ିକ କଟା କଟା ଓ ସଜାହୋଇଥାଏ । ଗଛଗୁଡ଼ିକ ପାଣିରେ ଭାସେ । ପାଣିସିଙ୍ଗଡ଼ା ମଞ୍ଜିର ଶସକୁ ଖାଦ୍ୟରୂପେ ବ୍ୟବହାର କରାଯାଏ ।

**ମଧୁପତ୍ରୀ** (Acoros calamus, Aroidae)- ଏହାକୁ ପାଣିଧାରରେ ଲଗାଯାଏ । ଦୀର୍ଘାକୃତି ପତ୍ରଗୁଡ଼ିକ ହଳଦିଆ ଓ ସବୁଜରଙ୍ଗରେ

ଚିତ୍ରିତ । ଜଳୋଦ୍ୟାନର ଧାରରେ ଲଗାଯାଉଥିବା ଉଦ୍ଭିଦମାନଙ୍କ ମଧ୍ୟରେ ସାଇପ୍ରସ ପାପିରସ (*Cyprus papirus*), ଜଳତାଳ (*Nipa frutisence*), ତୀରଗିରା (Sagitaria Sagittaefolia) ପ୍ରଧାନ । ଜଳୋଦ୍ୟାନର ପାର୍ଶ୍ୱରେ ଭୂଇଁତାଳ (Cyclanthus), ରାଫିସ ତାଳ, ଦୋଳନ ଚମ୍ପା, ବିଭିନ୍ନ ପ୍ରକାର ସାରୁ, ସୁଖଦର୍ଶନ, ବିଭିନ୍ନ ପ୍ରକାର ସୁନସୁନିଆ ପ୍ରଭୃତି ଲଗାଯାଇପାରିବ । ଜଳୋଦ୍ୟାନର ପାର୍ଶ୍ୱରେ ଲଗାଯାଉଥିବା ଫର୍ଣ୍ଣମାନଙ୍କ ମଧ୍ୟରେ ଆଡ଼ିଏଣ୍ଟମ୍, ଆସପ୍ଲିନିୟମ୍, ବେଲଚନିମ ଓ ଓସପୁଣ୍ଡା, ଟେଲିସ ପ୍ରଭୃତି ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ବଡ଼ ବଡ଼ ଜଳୋଦ୍ୟାନର ପାର୍ଶ୍ୱରେ ବାଉଁଶଗଛ, ହିଞ୍ଜଳ ବୃକ୍ଷ ଲଗାଯାଇପାରେ । ଜଳୋଦ୍ୟାନରେ ତୀରଶିରା ଗଛଗୁଡ଼ିକ ବିଶେଷ ସାହାଯ୍ୟ କରେ । ଏହାର ପତ୍ରଗୁଡ଼ିକରୁ ନିର୍ଗତ ଅମ୍ଳଜାନ ମାଛ ଓ ଗଛକୁ ଅମ୍ଳଜାନ ଯୋଗାଇଥାଏ । ଜଳୋଦ୍ୟାନର ଉଦ୍ଭିଦଗୁଡ଼ିକରେ କମ୍ ରୋଗ ପୋକ ଲାଗନ୍ତି । କଇଁଗୁଡ଼ିକରେ ସାଂବାଲୁଆ ପୋକ ଲାଗିଲେ ସେଗୁଡ଼ିକୁ ହାତରେ ସଂଗ୍ରହକରି ମାରିଦେବା ଉଚିତ । ଗେଣ୍ଡାଗୁଡ଼ିକ ସମୟେ ସମୟେ ପାଣିରେ ଜମୁଥିବା ମଇଳା ଖାଇଲେ ବି ଏହାର ସଂଖ୍ୟା ବଢ଼ିଗଲେ ଏମାନେ ଗଛ ଖାଇଯାନ୍ତି । ତେଣୁ ଏହାର ବଂଶ ନ ବଢ଼ିବା ଦିଗରେ ବିଶେଷ ଦୃଷ୍ଟିଦେବା ଆବଶ୍ୟକ । ଜଳୋଦ୍ୟାନ ପରି ଚନ୍ଦ୍ରତାରକିତ ଉଦ୍ୟାନ (Moonlit garden) ଗୁଡ଼ିକ ବର୍ଗାକାର ବା ଆୟତାକାର । ଏହାକୁ ପୁଷ୍କରିଣୀର ଚତୁଃପାର୍ଶ୍ୱରେ ସଂସ୍ଥାପିତ କରାଯାଇଥାଏ । ପୁଷ୍କରିଣୀର ପାର୍ଶ୍ୱରେ ନାରିକେଳ, ଦେବଦାରୁ ପ୍ରଭୃତି ଶୀର୍ଣ୍ଣକାୟ ବୃକ୍ଷଗୁଡ଼ିକ ଲଗାଇଲେ ଚନ୍ଦ୍ରବିଧୌତ ରଜନୀରେ ସେଗୁଡ଼ିକ ପୁଷ୍କରିଣୀର ଜଳରାଶିରେ ପ୍ରତିବିମ୍ବିତ ହୋଇ ଅପୂର୍ବ ଶୋଭାରାଶି ସୃଷ୍ଟି କରିଥାନ୍ତି । ଏହା ବ୍ୟତୀତ ଏହାର ଏକ ପାର୍ଶ୍ୱରେ ଏକ ମଣ୍ଡପ ବା ବିତାନ ରଖାଯାଇଥାଏ । ଭ୍ରମଣ ପାଇଁ ଏହାର ସନ୍ନିକଟ ଅଞ୍ଚଳରେ ରାସ୍ତାର ଦୁଇ ପାର୍ଶ୍ୱରେ ସୁରଭିତ ଧଳାପୁଷ୍ପ ଲତାର କୁଞ୍ଜମାନ ସୃଷ୍ଟି କରାଯାଇଥାଏ ।



# ପ୍ରସ୍ତରୋଦ୍ୟାନ

## (Rock gardening)

ପ୍ରସ୍ତରଗୁଡ଼ିକର ନୈସର୍ଗିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ବଡ଼ ବଡ଼ ଉଦ୍ୟାନମାନଙ୍କରେ ପ୍ରସ୍ତର ଉଦ୍ୟାନମାନ ସୃଷ୍ଟି କରାଯାଇଥାଏ । ପଥର ଉଦ୍ଭିଦମାନଙ୍କରେ ସମ୍ମିଶ୍ରଣରେ ତିଆରି ପ୍ରସ୍ତରେଦ୍ୟାନକୁ ଦୃଷ୍ଟିପାତ କଲେ ମନରେ କୌତୁହଳ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଆମୋଦ ଜାଗ୍ରତ ହୋଇଥାଏ । ଜାପାନର ଉଦ୍ୟାନମାନଙ୍କରେ ବିଭିନ୍ନ ପଥର, ବାଲି, ଗୋଡ଼ି ଆଦି ପଦାର୍ଥଗୁଡ଼ିକ ବ୍ୟବହାର କରାଯାଇ ଉଦ୍ୟାନମାନ ସୃଷ୍ଟି କରାଯାଇଥାଏ । ସେ ଦେଶରେ ପ୍ରସ୍ତରଗୁଡ଼ିକୁ ଶକ୍ତି ତଥା ଜ୍ଞାନୀମାନଙ୍କର ପ୍ରତୀକ ରୂପେ ବିବେଚନା କରାଯାଏ ।

ପ୍ରସ୍ତର ଉଦ୍ୟାନଗୁଡ଼ିକ ଗୃହର ସମ୍ମୁଖଠାରୁ ଦୂରରେ ରହିବା ଉଚିତ । ବଡ଼ ବଡ଼ ଉଦ୍ୟାନରେ ଜଳସମାଗମ ସ୍ଥାନରୁ ଦୂରରେ ଏହା ସ୍ଥାପନ କରାଯାଏ । ଏହି ପ୍ରକାର ଉଦ୍ୟାନପାଇଁ ପ୍ରସ୍ତରଖଣ୍ଡ ସଂଗ୍ରହ କଲାବେଳେ ପ୍ରାକୃତିକ ପରିବେଶରେ ମିଳୁଥିବା ପ୍ରସ୍ତର ଖଣ୍ଡମାନ ସଂଗ୍ରହ କରିବା ଉଚିତ । ଗ୍ରାନାଇଟ, ଚୂନପଥର ଓ ଅନ୍ୟାନ୍ୟ ପ୍ରକାର ପ୍ରସ୍ତର ଏହି ଉଦ୍ୟାନପାଇଁ ଉପଯୁକ୍ତ ନୁହେଁ । ବଗିଚାର ଅନୁର୍ବର, ପଥୁରିଆ ସ୍ଥାନମାନଙ୍କରେ ୨/୩ ଫୁଟ ଗାତଖୋଳି ତଳେ ପଥର ବସାଇବା ଉଚିତ । ଦୁଇ ତିନୋଟି ପଥରରେ ମଧ୍ୟଭାଗରେ ଏକ ଖୋପ ସୃଷ୍ଟି କରାଗଲେ ଏହା ପ୍ରାକୃତିକ ପାହାଡ଼ (Miniature hill) ପରି ଦେଖାଯାଏ । ଏହା ବ୍ୟତିତ ଦୁଇଟି ପଥରକୁ ଏକାଠି ରଖି ସେହି ସ୍ଥାନଗୁଡ଼ିକରେ ମାଟି କିମ୍ବା ମାଟି ସହ ଛୋଟ ଛୋଟ ପଥରର ମିଶ୍ରଣ ଭରିଦେବା ଉଚିତ । ଏଥିରେ ବିଭିନ୍ନ ପ୍ରକାର ଉଦ୍ଭିଦ ଲଗାଯାଏ । ପଥରଗୁଡ଼ିକ ଯେପରି ଭବିଷ୍ୟତରେ ଖସି ନ ଯିବ ସେଥିପ୍ରତି ଦୃଷ୍ଟିଦେବା ଉଚିତ । ପ୍ରସ୍ତର ଉଦ୍ୟାନରେ ବ୍ୟବହାର ପାଇଁ ପତ୍ରସାର ଏକ ଭାଗ, ବଗିଚାମାଟି ୧ ଭାଗ, ବାଲି ୧ ଭାଗ ଓ କ୍ଷୟପ୍ରାପ୍ତ ଘାସ ୨ ଭାଗ ମିଶାଇ ଏକ ମିଶ୍ରଣ ତିଆରିକରି ଖୋପଗୁଡ଼ିକରେ ଭରିଦେବା ଉଚିତ । ଏହି ଉଦ୍ୟାନରେ ଉଦ୍ଭିଦ (Alpines) ଗୁଡ଼ିକୁ ପ୍ରସ୍ତର ଉଦ୍ୟାନ ପ୍ରସ୍ତୁତ କରି କିଛିଦିନ ରଖାଗଲା ପରେ ଲଗାଯାଏ । ଏହି ପ୍ରକାର ଉଦ୍ୟାନରେ ଲଗାଯାଉଥିବା ଉଦ୍ଭିଦଗୁଡ଼ିକୁ ୩ଟି ଭାଗରେ ବିଭକ୍ତ କରାଯାଇଛି । ଯଥା–ମରୁପାଦପ (Xerophytes), ଆଦ୍ରଭୂମିଜ ଉଦ୍ଭିଦ (Mesophytes) ଓ ସାଧାରଣ ଉଦ୍ଭିଦ (General types) ।

ଏହା ବ୍ୟତୀତ ଅରଣ୍ୟ ଉଦ୍ୟାନରେ କେତେଗୁଡ଼ିଏ ଋତୁଜୀବୀ ପୁଷ୍ପ ମଧ୍ୟ ଲଗାଯାଇଥାଏ ।

ପ୍ରସ୍ତରା ଉଦ୍ୟାନଗୁଡ଼ିକରେ ପୂର୍ଣ୍ଣ ସୂର୍ଯ୍ୟାଲୋକରେ ଲଗାଯାଇ ପାରୁଥିବା ଗଛଗୁଡ଼ିକ ମଧ୍ୟରେ ବାରମାସୀ ଜାତିର ଗଛ, ଆଣ୍ଟିଲୋନିଆ, ବିଭିନ୍ନ ଜାତିର କାକଟସ୍, କୁପେରାଛସ୍, ଲିଲି, ବିଭିନ୍ନ ପ୍ରକାର ସିଜୁଗଛ, ହେମକେଦାର, ଖର୍ବକାୟ ନାଗଅଇରି, ଟେବୁଲ୍ ଗୋଲାପ, ମିନିଏଚର ଗୋଲାପ, ଟର୍ଣ୍ଣେରା, ଭର୍ବିନା, ସଦାବିହାରି, ଜେପରାଛସ ପ୍ରଭୃତି ପ୍ରଧାନ । ଇଷତ୍ ଛାଇପଡୁଥିବା ସ୍ଥାନଗୁଡ଼ିକରେ ମାଣ ଜାତୀୟ ସାରୁ, ଚିତ୍ରବିଚିତ୍ରା ସପୁରୀ, ବିଗୋନିଆ, ଚିତାଲିଲି, ବିଲବର୍ଜିଆ, କାଲାଡ଼ିଅମ୍, କୋଲିଅସ୍, ଡ୍ରେସିନା, ବିଭିନ୍ନ ଜାତିର ଫର୍ଣ୍ଣ, ଫିଟୋନିଆ, ପିପରମିଆ, ପାଇଲିଆ, ସାକସିଫ୍ରାଗା, ସୀଲାଜେନିଲା ପ୍ରଭୃତି ଲଗାଯିବା ଆବଶ୍ୟକ । ଏହା ବ୍ୟତୀତ ଏଲାଇସମ୍, ଏଷ୍ଟର, ଛୋଟ ଜିନିଆ, ସୁଇଟ୍ ଉଇଲିୟମ୍, ଆଗରେଟମ୍, ଫ୍ଲକ୍ସ, ପେନିସ୍ ପ୍ରଭୃତି ଋତୁଜୀବୀ ପୁଷ୍ପ ଲଗାଯାଇପାରେ ।

ପ୍ରସ୍ତର ଉଦ୍ୟାନରେ ଲଗାଯାଉଥିବା ଉଦ୍ଭିଦଗୁଡ଼ିକୁ ଅନେକ ସମୟରେ ପଥ ଧାରର କାନ୍ଥଗୁଡ଼ିକର ଖୋପରେ ଲଗାଯାଇପାରେ । ପାହାଡ଼ିଆ ଢାଲୁ ଉଦ୍ୟାନର ରାସ୍ତାର ଉପରେ ଥିବା ପାର୍ଶ୍ୱକାନ୍ଥଗୁଡ଼ିକୁ ଖୋପକରି ବିଭିନ୍ନ ପ୍ରକାର ଗଛ ଲଗାଇବା ଉଚିତ । ଏହି ପ୍ରକାର ଉଦ୍ୟାନକୁ କାନ୍ଥ ଉଦ୍ୟାନ (Wall



କାନ୍ଥୋଦ୍ୟାନ

garden) କୁହାଯାଏ । ପ୍ରତିବର୍ଷ ପ୍ରସ୍ତର ଉଦ୍ୟାନର ପୁରୁଣା ଗଛଗୁଡ଼ିକୁ ବଦଳାଇବା ଆବଶ୍ୟକ ଓ ପ୍ରତ୍ୟେକ ଖୋପରେ କିଛି କିଛି ନୂଆ ଖତ ମିଶ୍ରିତ ମାଟି ଦେବା ପ୍ରୟୋଜନ ।

# ବୃକ୍ଷବୀଥି

## (Avenue Plantation)

ବହୁ ପୁରାତନ କାଳରୁ ରାସ୍ତାର ଦୁଇପାର୍ଶ୍ୱରେ ଛାୟା ପ୍ରଦାନ ପାଇଁ ବୃକ୍ଷରୋପଣର ବ୍ୟବସ୍ଥା ଚଳିଆସୁଛି । ସମ୍ରାଟ ଅଶୋକ, ସେରଶାହା ପ୍ରଭୃତି ଏହି କାର୍ଯ୍ୟ ଭାରତବର୍ଷରେ ଆରମ୍ଭ କରିଥିଲେ । ମୋଗଲ ସମ୍ରାଟମାନେ ଲକ୍ଷ୍ନୌ, କାଶ୍ମୀର ଉପତ୍ୟକା ଓ ଉତ୍ତର ଭାରତରେ ଅନ୍ୟାନ୍ୟ ସହରଗୁଡ଼ିକର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ପଥର ଦୁଇଧାରରେ ବୃକ୍ଷରୋପଣ କରିଥିଲେ । ଇଂରେଜ ରାଜତ୍ୱକାଳରେ ଆକୁମାରୀ ହିମାଚଳର ପ୍ରତ୍ୟେକ ସହର ଓ ରାସ୍ତାରେ ଏକ ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ ଗଛ ଲଗାଯାଇଥିଲା । ସ୍ୱାଧୀନତା ପରେ ସରକାରଙ୍କର ବାରିକମିସ୍ତ୍ରୀ ବିଭାଗ ଏହି ଦାୟିତ୍ୱ ବହନ କରିଥିଲେ ।

ଆଧୁନିକ ଯୁଗରେ ବୃକ୍ଷର ପ୍ରାଧାନ୍ୟ ଦିନକୁ ଦିନ ବୃଦ୍ଧି ପାଉଅଛି । କଳକାରଖାନାରୁ ନିର୍ଗତ ବିଷାକ୍ତ ବାଷ୍ପଗୁଡ଼ିକ ବାୟୁମଣ୍ଡଳକୁ ଦୂଷିତ କରିଥାଏ । ବୃକ୍ଷଗୁଡ଼ିକ ଦୂଷିତ ବାୟୁମଣ୍ଡଳକୁ ଶୁଦ୍ଧ କରିବାରେ ସାହାଯ୍ୟ କରିଥାଏ । ସେହିପରି ବୃକ୍ଷରୋପଣ ବର୍ଷାର ପରିମାଣକୁ ନିୟନ୍ତ୍ରଣ କରିଥାଏ । ଏହି ସବୁ ଦୃଷ୍ଟିରୁ ବୃକ୍ଷରୋପଣ ଓ ତହିଁର ପରିପାଳନକୁ ଏକ ସାମାଜିକ କର୍ତ୍ତବ୍ୟ ବୋଲି ମନେକରାଯାଉଅଛି । ଜୁଲାଇମାସର ପ୍ରଥମ ସପ୍ତାହକୁ ବୃକ୍ଷରୋପଣ ସପ୍ତାହ ରୂପେ ପାଳନ କରାଯାଉଅଛି ।

ରାସ୍ତାର ଅବସ୍ଥିତି ନେଇ ବିଭିନ୍ନ ପ୍ରକାର ବୃକ୍ଷବୀଥି ସୃଷ୍ଟି କରାଯାଇଥାଏ । ସହରର ଜନଗହଳି ରାସ୍ତା, ୨ଟି ସହରକୁ ସଂଯୋଗକାରୀ ରାସ୍ତା ଓ ପ୍ରଧାନ ରାଜପଥର ବୃକ୍ଷବିଥି ଭିନ୍ନ ଭିନ୍ନ ହେବା ଉଚିତ । ସେହିପରି ଡ଼ାକ୍ତରଖାନା, ଗେଷ୍ଟହାଉସ ପ୍ରଭୃତି ସମ୍ମୁଖରେ ବୃକ୍ଷବୀଥି, କ୍ଷୁଦ୍ର କ୍ଷୁଦ୍ର ଗଳିଗୁଡ଼ିକର ବୃକ୍ଷବିଥିଠାରୁ ଅଲଗା ହେବା ବିଧେୟ । ଅଧିକାଂଶ ସମୟରେ ରାସ୍ତାର ଦୁଇ ଧାରରେ ଗୋଟିଏ ଧାଡ଼ି କରି ଗଛ ଲଗାଯାଇଥାଏ । କିନ୍ତୁ ବଡ଼ ବଡ଼ ସହରଗୁଡ଼ିକର ଲୋକ ଚାଲିବା ରାସ୍ତାର ଦୁଇପାର୍ଶ୍ୱରେ ଦୁଇଧାଡ଼ି (Double Avenue Plantation) ଗଛ ଲଗାଯାଇଥାଏ । ରାସ୍ତା ଧାରରେ ଶୀଘ୍ର ବଢ଼ିପାରୁଥିବା ଗଛ ଓ ସହଜରେ ଭାଙ୍ଗୁ ନଥିବା ସୌନ୍ଦର୍ଯ୍ୟମୟ ଓ ଫୁଲ ଫୁଟୁଥିବା ଗଛମାନ ଲଗାଯାଏ । ଏହା ବ୍ୟତୀତ ହ୍ରଦକୂଳ, ସମୁଦ୍ରକୂଳ ଓ

ନଦୀଧାରରେ ସରୁସରୁ ପତ୍ରଥିବା ଗଛ ଲଗାଯାଏ । ଆଜିକାଲି ବିଭିନ୍ନ ବ୍ୟବହାରିକ ବସ୍ତୁ ଯୋଗାଉଥିବା ତେନ୍ତୁଳି, ଆମ୍ବ, ପଣସ, କରଞ୍ଜ ଓ ଶିରିଷ ପ୍ରଭୃତି ଦୀର୍ଘ ରାଜପଥ ପାର୍ଶ୍ୱରେ ଲଗାଯାଉଅଛି । ଇଉକାଲିପଟସ, ଆକାଶନିମ, ଜାମୁକୋଳି ଓ କେତେକ ଜାତିର ଚାକୁଣ୍ଡା ରାସ୍ତା କଡ଼ରେ ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ସାହାଯ୍ୟ କରୁଥିଲେ ହେଁ ପବନଦ୍ୱାରା ଏଗୁଡ଼ିକର ଡାଳ ସହଜରେ ଭାଙ୍ଗି ଯାଉଥିବାରୁ ରାସ୍ତାଧାର ଅସୁନ୍ଦର ଦିଶେ । ତେଣୁ ଏଗୁଡ଼ିକର ବ୍ୟବହାର ଖୁବ୍ ସୀମିତ ହେବା ଆବଶ୍ୟକ । କଣ୍ଟା ଥିବା ଖଜୁରୀ, ବବୁଲ ବରକୋଳି ପ୍ରଭୃତି ଗଛ ଜନପଦଠାରୁ ଦୂରରେ ଥିବା ସଂଯୋଗକାରୀ ରାସ୍ତାର ଦୁଇ ପାର୍ଶ୍ୱରେ ଲଗାଯାଇପାରେ ।

ସୁଚିନ୍ତିତ ଯୋଜନା ଅନୁସାରେ ବୃକ୍ଷବୀଥି ଲଗାଯାଏ । ଉଦାହରଣ ସ୍ୱରୂପ ରାସ୍ତାର ଦୁଇପାର୍ଶ୍ୱରେ ବିଭିନ୍ନ ପ୍ରକାର ଗଛ ନ ମିଶାଇ ଗୋଟିଏ ପ୍ରକାର ଗଛ ବହୁଦୂର ପର୍ଯ୍ୟନ୍ତ ଲଗାଇଲେ ତାହା ମିଶ୍ରିତ ବୃକ୍ଷ ରୋପଣ ଅପେକ୍ଷା ଅଧିକ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାନ୍ତି । ତେବେ ପରସ୍ପର ସହିତ ଆକୃତି ଓ ରଙ୍ଗର ସାମଞ୍ଜସ୍ୟ ଥିବା ଗଛଗୁଡ଼ିକ ଏକାଠି ଲଗାଇଲେ ବିଶେଷ ବୈଷମ୍ୟ ପରିଲକ୍ଷିତ ହୁଏ ନାହିଁ । ପ୍ରଧାନ ରାଜପଥରେ ବୃକ୍ଷବୀଥି ସୃଷ୍ଟିକରିବାକୁ ହେଲେ ବୃକ୍ଷର ଆକୃତି ତଥା ପୁଷ୍ପଜ ସୌନ୍ଦର୍ଯ୍ୟ ଉପରେ ନଜର ଦେବାକୁ ପଡ଼େ । କିନ୍ତୁ କମ୍ ଜନଗହଳି, ପ୍ରଭାତକାଳୀନ ଭ୍ରମଣ ଓ ସାଂଧ୍ୟଭ୍ରମଣ ପାଇଁ ଉଦ୍ଦିଷ୍ଟ ରାସ୍ତାଧାରରେ ପତ୍ରଜ ସୌନ୍ଦର୍ଯ୍ୟ ତଥା ଆକର୍ଷଣୀୟ ଆକୃତିଯୁକ୍ତ ବୃକ୍ଷ ରୋପଣ କରିବା ଉଚିତ । ଦୁଇଟି ସହରକୁ ସଂଯୋଗକାରୀ ରାସ୍ତାଗୁଡ଼ିକର ଦୁଇପାର୍ଶ୍ୱରେ ଉପଯୁକ୍ତ ଛାୟାପ୍ରଦାନ କରୁଥିବା ବୃକ୍ଷଗୁଡ଼ିକ ରୋପଣ କରିବା ବିଧେୟ । ସର୍ବୋପରି ଭୌଗୋଳିକ ପରିସ୍ଥିତି, ବର୍ଷାର ପରିମାଣ, ମୃତ୍ତିକା ତଥା ଉତ୍ତାପ ସହିତ ଭାରସାମ୍ୟ ରଖି ଗଛ ଲଗାଇଲେ ସେଗୁଡ଼ିକର ବିକାଶ ଘଟି ପ୍ରକୃତ ସୌନ୍ଦର୍ଯ୍ୟ ବୃଦ୍ଧି ହୋଇଥାଏ ।

**ଦ୍ୱିଧାଡ଼ିକ ବୃକ୍ଷବୀଥି** (Double Avenue) - ଏହି ପ୍ରଣାଳୀରେ ଗଛ ଲଗାଇଲା ବେଳେ ବାହାରପଟ ଧାଡ଼ିରେ ଛାଇପ୍ରଦାନ କରୁଥିବା ଘଞ୍ଚ ପତ୍ରଭରା ବୃକ୍ଷ ଯଥା ତେନ୍ତୁଳି, ଦେବଦାରୁ, ଜାମୁ, ପୁତ୍ରଞ୍ଜୀବି, ବଉଳ, ନିମ ପ୍ରଭୃତି ଲଗାଯିବା ଉଚିତ । ଭିତରପଟେ ସାଧାରଣତଃ କ୍ଷୁଦ୍ରକାୟ ଗଛ ଯଥା ବଟଲବ୍ରସ, ଜାକରଣ୍ଡା, ପଳାଶ, ଆକଶନିମ, ମ୍ୟାଗ୍ନୋଲିଆ ପ୍ରଭୃତି ଗଛ ଲଗାଯିବା

ଦରକାର । ଡଃ ଏମ୍. ଏସ୍. ରାନ୍ଧଓ୍ୱାଙ୍କ ମତରେ ପୁଷ୍ପଜ ଓ ସୌନ୍ଦର୍ଯ୍ୟପାଇଁ କୃଷ୍ଣଚୂଡ଼ା ଓ ସୁନାରୀ କଲ୍‌ଭିଲିଆ, ପେଲଟୋଫୋରମ୍, ସିଲିଭର, ଓକ୍, ଜାକରଣ୍ଡା, ପାଳଧୂଆ ଓ ସ୍ୱାଥୋଡ଼ିଆ ପ୍ରଭୃତି ବୃକ୍ଷ ରାସ୍ତାର ଦୁଇକଡ଼ରେ ଲଗାଯିବା ଉଚିତ । ଗୋଟିଏ ପ୍ରକାର ଗଛକୁ ନେଇ ପୁଷ୍ପଜ ସୌନ୍ଦର୍ଯ୍ୟର ବିକାଶ ଚାହିଁଲେ ସୁନାରି, ବଡ଼ବଡ଼ କାଞ୍ଚନ ପାଟଳି, ଆକାଶନିମ ପ୍ରଭୃତି ଲଗାଯିବା ଉଚିତ । ଆମ ଓଡ଼ିଶାର ଜଳବାୟୁରେ ଭଲ ବଢ଼ିପାରୁଥିବା ଓ ପତ୍ରଜ ସୌନ୍ଦର୍ଯ୍ୟଯୁକ୍ତ ବୃକ୍ଷମାନଙ୍କ ମଧ୍ୟରେ ଜାମୁ, କଦମ୍ବ, ବର, ଅଶ୍ୱତ୍ଥ, ଷେରିକୁଲିଆ, ଚାକୁଣ୍ଡା, ତେନ୍ତୁଳି ନିମ, ଆମ୍ବ ପଣସ ପ୍ରଭୃତି ପ୍ରଧାନ । ପୁଷ୍ପଜ ସୌନ୍ଦର୍ଯ୍ୟଯୁକ୍ତ ଗଛଗୁଡ଼ିକ ମଧ୍ୟରେ, କୃଷ୍ଣଚୂଡ଼ା, ପାଟଳି, ପେଲଟୋଫୋରମ୍, ଅଶୋକ, ପଲାଶ, ପାଳଧୂଆ ପ୍ରଭୃତି ଅନ୍ତର୍ଗତ । ଏହା ବ୍ୟତୀତ ବୃକ୍ଷବୀଥି ପାଇଁ ଉପଯୁକ୍ତ ଅନ୍ୟ କେତେଗୁଡ଼ିଏ ବୃକ୍ଷମାନଙ୍କ ମଧ୍ୟରେ କରଞ୍ଜ, ଶିଶୁ, ପତ୍ରଞ୍ଜୀବି, ଇଉକାଲିପଟସ୍ ଦେବଦାରୁ, ଝାଉଁ, ବାଦାମ, ମୁଚୁକୁନ୍ଦ ପ୍ରଭୃତି ଉଲ୍ଲେଖଯୋଗ୍ୟ । ରାସ୍ତାଗୁଡ଼ିକୁ ଆକର୍ଷଣୀୟ କରିବା ପାଇଁ ଦେବଦାରୁର ପେଣ୍ଡୁଲା ଭେରାଇଟି, ଝାଉଁ, ଆରକାରିଆ, ରାଜାତାଳ, ସଲପ୍ ପ୍ରଭୃତି ଲଗାଯାଇ ପାରେ ।

ରାସ୍ତାର ଦୁଇକଡ଼ରେ ଗଛ ଲଗାଇବାର ପ୍ରଥମାବସ୍ଥାରେ ବୃକ୍ଷ ପ୍ରହରୀ (Tree guard) ଅବସ୍ଥାପିତ କରାଯିବା ଉଚିତ । ଏଗୁଡ଼ିକର ଆକୃତି ରାସ୍ତାର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ଗଛଗୁଡ଼ିକ ସାଧାରଣତଃ ୧୫ ରୁ ୨୦ ଫୁଟ ଦୂରତାରେ ଲଗାଯିବା ଉଚିତ । ପ୍ରଥମ ୩/୪ ବର୍ଷ ପର୍ଯ୍ୟନ୍ତ ଦରକାର ମୁତାବକ ବିଶେଷ କରି ଖରାଦିନେ କିଛି ପାଣିଦେବା ଆବଶ୍ୟକ । ଗଛଗୁଡ଼ିକ ଭଲ ବଢ଼ିପାପାଇଁ କିଛି କିଛି ସାର ଦେବା ମଧ୍ୟ ଦରକାର । ଗଛମୂଳରୁ ଅନାବନା ଗଛ ଓ ଘାସ ବାଛିଦେବା ଉଚିତ । ପ୍ରଥମାବସ୍ଥାରେ ଗଛର ଅନୁପଯୁକ୍ତ ସ୍ଥାନରୁ ଡାଳ କାଟି ସବୁ ଗଛଗୁଡ଼ିକ ଯେପରି ଠିକ୍ ଭାବରେ ବଢ଼ନ୍ତି ସେଥିପ୍ରତି ଦୃଷ୍ଟିଦେବା ଆବଶ୍ୟକ । ଏସବୁ ବ୍ୟତୀତ ବୃକ୍ଷବୀଥିର ପ୍ରକୃତ ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ଭୌଗଳିକ ପରିସ୍ଥିତି ବିଚାରକରି ବିଭିନ୍ନ ପ୍ରକାର ବିଦେଶୀ ବୃକ୍ଷଗୁଡ଼ିକୁ ରାସ୍ତାର ଦୁଇଧାରରେ ଲଗାଇଲେ ତାହା ଏକ ନୂତନ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାଏ । ଏହି ଗଛମାନଙ୍କ ମଧ୍ୟରେ ରାଭାନେଲ (ପନ୍ଥପାଦପ), କୋଡ଼ିଆ, ନିରାଶ ପ୍ରଭୃତି ପ୍ରଧାନ ।

॥ ଦ୍ୱାବିଂଶ ପରିଚ୍ଛେଦ ॥

# ଆଭ୍ୟନ୍ତରୀଣ ସାଜସଜ୍ଜା

## (Interior decoration)

ବାସସ୍ଥାନ ଠାରୁ ଆରମ୍ଭ କରି କାର୍ଯ୍ୟାଳୟ, ଡାକ୍ତରଖାନା, ଅତିଥିଭବନ ପ୍ରଭୃତି ସ୍ଥାନରେ ଆଭ୍ୟନ୍ତରୀଣ ସାଜସଜ୍ଜା ଲାଗି ନାନା ପ୍ରକାର ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦ ବ୍ୟବହାର କରାଯାଇଥାଏ । ଏହା ଦ୍ୱାରା ଗୃହର ସୌନ୍ଦର୍ଯ୍ୟ ବୃଦ୍ଧି ହେବା




ବାରଣ୍ଡାରେ ଝୁଲାଯାଇଥିବା ରଙ୍ଗ କର୍ନିଶିରି




ସଂଯୋଗକାରୀ ବାରଣ୍ଡା ସଜ୍ଜା

ସଙ୍ଗେ ସଙ୍ଗେ ଗୃହର ଅଭ୍ୟନ୍ତରକୁ ପ୍ରବେଶ କରୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଶୃଙ୍ଖଳିତ ଜୀବନ ଯାପନ କରିବାର ସୂଚନା ମିଳିଥାଏ । ଏହା ବ୍ୟତୀତ ଗୃହର ଅଭ୍ୟନ୍ତରରେ ଉଦ୍ଭିଦମାନଙ୍କର ଉପସ୍ଥିତି ମାନସିକ ଭାରସାମ୍ୟ ରଖିବାରେ ସାହାଯ୍ୟ କରିଥାଏ ।

ଗୃହର ଅଭ୍ୟନ୍ତର ସଜାଇବାର ଉପଯୁକ୍ତ ସ୍ଥାନ ହେଲା ବାରଣ୍ଡା, ସଂଯୋଗକାରୀ ବାରଣ୍ଡା, ପ୍ରଶସ୍ତ କକ୍ଷ, ବାତାୟନ ପାର୍ଶ୍ୱ, ସିଡ଼ି ତଥା ଘରର ଛାତ । ଗୃହର ଅଭ୍ୟନ୍ତର ସଜାଇବା ବେଳେ ଉଦ୍ଭିଦଗୁଡ଼ିକର ଆକୃତି ଓ ଉଚ୍ଚତା ସହିତ ଗୃହର ଆୟତନର ସମ୍ପର୍କ ରକ୍ଷା ସର୍ବାଦୌ ଆବଶ୍ୟକ । ବଡ଼ ବଡ଼ ପତ୍ର ଥିବା ଉଦ୍ଭିଦଗୁଡ଼ିକୁ ପ୍ରସସ୍ତ ସ୍ଥାନଗୁଡ଼ିକରେ ସଜାଯିବା ଉଚିତ । ଫାଇଲୋଡେଣ୍ଡ୍ରନ୍, ସେନସିଭେରିଆ, ଡାଇଫେନବେକିଆ, ଡ୍ରେସିନା ପ୍ରଭୃତି ଉଦ୍ଭିଦ ଗୃହ ସଜାଇବା ପାଇଁ ବିଶେଷ ଉପଯୁକ୍ତ । ଗୃହର ଶୁଭ୍ର କାନ୍ଥଗୁଡ଼ିକୁ ପୃଷ୍ଠଭୂମି କରି ରଙ୍ଗୀନ ଏମରିଲିସ୍, ସେବତୀ ପ୍ରଭୃତି ସଜାଗଲେ ବିଶେଷ ଆକର୍ଷଣୀୟ ହୋଇଥାଏ । ଶୟନ କକ୍ଷ କିମ୍ବା କ୍ଷୁଦ୍ର କକ୍ଷଗୁଡ଼ିକର ସାଜ ସଜ୍ଜା



ସିଡ଼ିଘର ସଜ୍ଜା




କୁଣ୍ଡରେ ବେଲୋପର୍ଣ୍ଣୀ

ପାଇଁ ବିଭିନ୍ନ ପ୍ରକାର ବିଗୋନିଆ ଓ ଫର୍ଣ୍ଣକୁ ବ୍ୟବହାର କରାଯାଏ । ଆଭ୍ୟନ୍ତରୀଣ ଗୃହ ସଜାରେ ସଫଳତା ପ୍ରତ୍ୟେକ ବ୍ୟକ୍ତିର କଳା କୌଶଳ ଉପରେ ନିର୍ଭର କରିଥାଏ । ନିମ୍ନରେ କେତେକ ପ୍ରକାର ଆଭ୍ୟନ୍ତରୀଣ ସଜାର ବର୍ଣ୍ଣନା ଦିଆଗଲା ।

ଗୃହର ପ୍ରବେଶଦ୍ୱାର; ବାରଣ୍ଡା ପ୍ରଭୃତି ସଜାଇବା ପାଇଁ ବ୍ୟବହୃତ ହେଉଥିବା ଉଦ୍ଭିଦଗୁଡ଼ିକ ମଧ୍ୟରେ ଏରଲିଆ, ଡ୍ରେସିନା, କ୍ରୋଟନ, ପେଣ୍ଡାସ, ଫର୍ଣ୍ଣ ପ୍ରଭୃତି ପ୍ରଧାନ । ଏଠାରେ ଉଦ୍ଭିଦମାନଙ୍କର ସୌନ୍ଦର୍ଯ୍ୟ ପାଇଁ ଯେତିକି ଦୃଷ୍ଟି ଦିଆଯାଏ ତଦନୁଯାୟୀ ବିଭିନ୍ନ ଆକୃତିର କୁଣ୍ଡ ବ୍ୟବହାର ପାଇଁ ମଧ୍ୟ ଗୁରୁତ୍ୱ ଦିଆଯାଏ । ପ୍ରଶସ୍ତ ବାରଣ୍ଡାଗୁଡ଼ିକରେ ଗୋଟିଏ ଆକର୍ଷଣୀୟ କୁଣ୍ଡ ରଖି କାନ୍ଥଧାର ଆଡ଼କୁ ତାର ଚାରିପାଖରେ ବିଭିନ୍ନ ପ୍ରକାର ଉଦ୍ଭିଦ ସଜାଯିବା ଉଚିତ । ମଝିରେ ଥିବା ଉଦ୍ଭିଦଟି ଅତି ଖର୍ବକାୟ ବା ଅତି ଉଚ୍ଚ ହେବା ଆବଶ୍ୟକ । ବାରଣ୍ଡାର ଆୟତନ ସହିତ ସଜାଯାଇଥିବା ଉଦ୍ଭିଦଗୁଡ଼ିକର ଆକୃତି ଓ ଉଚ୍ଚତାର ଭାରସାମ୍ୟ ରହିବା ଆବଶ୍ୟକ ।

ପ୍ରବେଶ କକ୍ଷଗୁଡ଼ିକର ମଧ୍ୟଭାଗରେ ସଜାଯାଇଥିବା ଗଛ ବିଶେଷ ଆକର୍ଷଣୀୟ ହେବା ଉଚିତ । ଫୁଲ ଫୁଟିଥିବା ଅବସ୍ଥାରେ ଗ୍ଲାଡ଼ିଓଲସ୍, ଫୁଟବଲ ଲିଲି, ସେବତୀ କିମ୍ବା ଗୋଲାପ ପ୍ରଭୃତି ଏହି ସ୍ଥାନଗୁଡ଼ିକରେ ସଜାଗଲେ ସୁନ୍ଦର ଦିଶେ । ପ୍ରବେଶ କକ୍ଷର କାନ୍ଥକୁ ପୃଷ୍ଠଭୂମି କରି ରଖା ଯାଉଥିବା ଉଦ୍ଭିଦମାନଙ୍କ ମଧ୍ୟରେ ଫର୍ଣ୍ଣ ବିଗୋନିଆ, ବିଭିନ୍ନ ପ୍ରକାର କାଲଥିଆ ପ୍ରଧାନ । ସିଡ଼ି ସଜାଇଲାବେଳେ ଏହାର ପ୍ରବେଶପଥର ଉନ୍ମୁକ୍ତ ଅଂଶରେ ପ୍ରଶସ୍ତ ପତ୍ରଯୁକ୍ତ ଦୀର୍ଘକାୟ ଉଦ୍ଭିଦମାନ ରଖାଯିବା ଆବଶ୍ୟକ । ମନୋଷ୍ଟ୍ରା, ତାଳ ଜାତୀୟ ବୃକ୍ଷ, ଭାରତୀୟ ରବର ବୃକ୍ଷ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ । ବାତାୟନ ପାର୍ଶ୍ୱରେ ବାହାର ପଟକୁ ଏକ ବାକ୍ସ ତିଆରି କରାଇ ସେଥିରେ ମାଟି ଭର୍ତ୍ତି କରି ବିଭିନ୍ନ ପ୍ରକାର ଗଛ ଲଗାଯାଏ । ବେଶୀ ସୂର୍ଯ୍ୟାଲୋକ ଦରକାର ଥିବା ଗଛଗୁଡ଼ିକୁ ଦକ୍ଷିଣପୂର୍ବ ଓ ପଶ୍ଚିମ ଦିଗରେ, କମ ସୂର୍ଯ୍ୟାଲୋକ ଦରକାର କରୁଥିବା ଗଛଗୁଡ଼ିକୁ ଉତ୍ତର ଦିଗରେ ଲଗାଯିବା ଉଚିତ । କ୍ଷୁଦ୍ରକାୟ ଲତାଗୁଡ଼ିକୁ ଝରକା ବାକ୍ସଗୁଡ଼ିକରେ ଲଗାଇଲେ ଏଗୁଡ଼ିକ ଝୁଲି ରହି ସୁନ୍ଦର ଦିଶେ । ବଡ଼ ବଡ଼ ଝରକା ବାକ୍ସରେ

ଏଣ୍ଟିରାଇନମ୍, ଏଷ୍ଟର, ଫ୍ଲକ୍ସ, ଡାଇଆନ୍ଥସ, ମିନ୍ନୋନିଆ, ଜେରବେରା, ଏଲାଇସମ୍, ପେନସି, ନାଷ୍ଟର୍ସିୟମ୍, ଗେଣ୍ଡୁ, ଜିନିଆ ପ୍ରଭୃତି ଲଗାଯିବା ଉଚିତ । ସେହିପରି ସୁଗନ୍ଧଯୁକ୍ତ ରଜନୀଗନ୍ଧାକୁ ଉଦ୍ୟାନ ବକ୍ସଗୁଡ଼ିକରେ ଲଗାଯାଇ ପାରିବ । ଉଦ୍ୟାନ ବକ୍ସ ମଧ୍ୟରେ ଲଗାଯାଇ ପାରୁଥିବା ଅନ୍ୟାନ୍ୟ ଉଦ୍ଭିଦମାନଙ୍କ ମଧ୍ୟରେ ବିଗୋନିଆ, ଡାଇଫେନ ବାକିଆ, କେଲେଡ଼ିଅମ୍, ଶତମୂଳୀ, କୋଲିଅସ ପ୍ରଭୃତି ପ୍ରଧାନ ।

ଅଭ୍ୟନ୍ତରଗୁଡ଼ିକ ସଜାଇବା ପାଇଁ ବ୍ୟବହାର କରାଯାଉଥିବା କୁଣ୍ଡ ଓ ଉପକରଣମାନ ସୁନ୍ଦର ହେବା ଉଚିତ । ଅଧିକାଂଶ ଆଭ୍ୟନ୍ତରୀଣ ଉଦ୍ଭିଦ ୧୫




କୁଣ୍ଡରେ ବେଲୋପର୍ଣ୍ଣୀ

ରୁ ୨୫ ଫୁଟ କ୍ୟାଣ୍ଡଲ ଆଲୋକରେ ବଢ଼ନ୍ତି । ଏଗୁଡ଼ିକ ଅତି କମ୍‌ରେ ୧୪ ରୁ ୧୬ ଘଣ୍ଟା ପର୍ଯ୍ୟନ୍ତ ଆଲୋକରେ ରହିବା ଉଚିତ । ଗୃହ ମଧ୍ୟରେ ବଢୁଥିବା ଉଦ୍ଭିଦମାନଙ୍କ ପାଇଁ ଅତି କମ୍‌ରେ ବାୟୁରେ ୪୦ ରୁ ୬୦ ଭାଗ ଜଳୀୟ ଅଂଶ ରହିବା ଉଚିତ । ଅଭ୍ୟନ୍ତରରେ ଲଗାଯାଉଥିବା ଉଦ୍ଭିଦଗୁଡ଼ିକ ଭଲ ବଢ଼ିବାପାଇଁ ମଝିରେ ମଝିରେ ଝରକା ଖୋଲିଦେବା ଉଚିତ । ପାଣି ଦେଲାବେଳେ ଯେପରି ଅଧିକ ପାଣି ଦିଆ ନଯାଏ ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ଗଛ ଭଲ ବଢ଼ିବା ପାଇଁ ଶତକଡ଼ା ୧ ଭାଗ ଆମୋନିୟମ କାର୍ବୋନେଟରୁ ୧୦୦ ମିଲିଲିଟର ମିଶ୍ରଣ ଗଛରେ ଦେବା ଉଚିତ । ଗଛଗୁଡ଼ିକୁ ଠିକ୍ ସମୟରେ କାଣ୍ଟଛାଣ୍ଟ କରିନେବା ଉଚିତ । ପତ୍ରରେ ଧୂଳି ଲାଗିଲେ ସେଗୁଡ଼ିକୁ ମଝିରେ ମଝିରେ ଧୋଇବା ଆବଶ୍ୟକ । ଆଭ୍ୟନ୍ତରୀଣ ସାଜସଜା ପାଇଁ ପତ୍ରର ସୌନ୍ଦର୍ଯ୍ୟଯୁକ୍ତ ଉଦ୍ଭିଦମାନଙ୍କ ମଧ୍ୟରେ ଆଲୋକାସିଆ, ଆରାଉକାରିଆ, ଶତମୂଳୀ,



ପାଇନ୍ ବନ୍‌ସାଇ

ବିଗୋନିଆ, କାଲାଡ଼ିୟମ୍, କାଲାଥିଆ, କ୍ଲୋରୋଫାଇଟମ୍, ଦ୍ୱିବର୍ଣ୍ଣ ସାଇସସ୍, କ୍ରୋଟନ, କୋଲିଅସ୍, ସାଇପରସ, ଡାଇଫେନବାକିଆ, ଡ୍ରେସିନା, ଫିଟୋନିଆ, ଏସିଡେନ୍ଥିରା, ମେରେଣ୍ଟା, ମାନିହଟ, ମନଷ୍ଟେରା, ବିଚିତ୍ରବର୍ଣ୍ଣ କିଆ, ପିପରମିଆ, ଫିଲୋଡେଣ୍ଡ୍ରାନ, ସେନସିଭେରିଆ, ସେଲାଜେନିଲା, ଷ୍ଟୋବିଲାନ୍ଥସ, ଟ୍ରାଡ଼େସକାନସିଆ, ବିଭିନ୍ନ ପ୍ରକାର ଫର୍ଣ୍ଣ, କେତେକ ତାଳ, ବ୍ରୋସେଲିଆ, ବିଭିନ୍ନ ପ୍ରକାର କାକଟସ୍, ବ୍ରାଇଫୋଇଲମ୍, ବାରମାସୀ, ଘିଁ କୁମାରୀ, କ୍ରାସୁଲା, କାଲାଙ୍କୁଇ, ଖଡ଼ିସିଝୁ ପ୍ରଭୃତି ଲଗାଯାଇପାରେ । ଅଭ୍ୟନ୍ତରରେ ରଖିଲାଭଳି ଫୁଲ ଫୁଟୁଥିବା ଉଦ୍ଭିଦ ମଧ୍ୟରେ ଆନ୍ଥୁରିୟମ୍, ଆଫେଲାଣ୍ଡ୍ରୋ, ବିଗୋନିଆ, ବେଲଫର୍ଣ୍ଣୀ, ହରଗୌରୀ, ଲାଣ୍ଟାନା, ବିଭିନ୍ନ ଜାତିର ଅର୍କିଡ଼, ପଏନସେଟିଆ, ଗୋଲାପ, ଆଫ୍ରିକାନ ଭାଓଲେଟ, ଭର୍ବିନା ପ୍ରଭୃତି ପ୍ରଧାନ । ଅନେକ ସମୟରେ କୁଣ୍ଡରେ ଲଗାଯାଇଥିବା ଗଛରେ ଫୁଲ ଫୁଟି ସାରିଲା ପରେ ସେଗୁଡ଼ିକୁ ଅଭ୍ୟନ୍ତର ସାଜାଇବା ପାଇଁ ବ୍ୟବହାର କରାଯାଇଥାଏ ।

**ବନସାଇ** (Bonsai)- ବଡ଼ ବଡ଼ ଗଛକୁ ସୁନ୍ଦର କୁଣ୍ଡମାନଙ୍କରେ ବିଭିନ୍ନ ପ୍ରଣାଳୀ ଦ୍ୱାରା ଖୁବ୍ ଛୋଟ ଆକାରରେ ବଢ଼ାଯାଏ । ଏହି ଗଛକୁ ବନସାଇ କୁହାଯାଏ । ଘର ସଜାଇବା ପାଇଁ ଏଗୁଡ଼ିକ ଖୁବ୍ ଉପଯୋଗୀ । ପାଇନ, ସିଲଭରଓକ୍, ବର, ଥୁଜା, ଜୁନିପରସ, ଖଜୁରି ପ୍ରଭୃତି ଗଛକୁ ଚାଇନା ମାଟିର ପାତ୍ରରେ ରଖି ଏହାର ଚେରର ଓ ଶାଖାପ୍ରଶାଖାର ବୃଦ୍ଧିକୁ ନିୟନ୍ତ୍ରଣ କରି ଉପଯୁକ୍ତ ଖାଦ୍ୟ ଦେଲେ ଗଛ ଛୋଟ ଆକାରରେ ବଢ଼େ ।

**ପୁଷ୍ପସଜ୍ଜା** (Flower Arrangement)- ପ୍ରାକୃତିକ ପରିବେଶରେ ବଗିଚାରେ ପୁଷ୍ପଜ ସୌନ୍ଦର୍ଯ୍ୟ ଅବଲୋକନ କରିବା ଯେତିକି ଆମୋଦଜନକ ସେହିପରି ଗୃହର ଅଭ୍ୟନ୍ତରରେ ପୁଷ୍ପ ସଜାଇ ତାହାର ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ସେହିପରି ଆମୋଦଦାୟକ । ପୁଷ୍ପସଜ୍ଜାର କୌଶଳ ଜାପାନ ଦେଶରୁ ବିକାଶଲାଭ କରିଥିବା ଜଣାଯାଏ । ଜାପାନୀ ଭାଷାରେ ଏହାକୁ ଇକେବିନା (Ikebana) ବୋଲି କୁହାଯାଏ । ସେ ଦେଶର ଘରେ ଘରେ ପୁଷ୍ପସଜ୍ଜାର ମନମୁଗ୍ଧକର ଦୃଶ୍ୟ ଦେଖିବାକୁ ମିଳେ । ଗୃହ ମଧ୍ୟରେ ପୁଷ୍ପସଜ୍ଜା ପାରିବାରିକ ଜୀବନକୁ ଆମୋଦ ଦେବା ସଙ୍ଗେ ସଙ୍ଗେ ଗୃହର ପରିବେଶରେ ପରିବର୍ତ୍ତନ

ଆଣିଥାଏ । ଗୃହର ଆଲୋଚନା କକ୍ଷ, ଭୋଜନ କରିବା ସ୍ଥାନ, କାର୍ଯ୍ୟାଳୟଗୁଡ଼ିକର ଅଫିସ ଟେବୁଲ୍, ପ୍ରବେଶ କକ୍ଷର ମଧ୍ୟଭାଗରେ ଏବଂ ଡାକ୍ତରଖାନାର ରୋଗୀମାନଙ୍କ କକ୍ଷରେ ଫୁଲ ସଜାଇ ପରିବେଶକୁ ଶାନ୍ତ ଓ ସୌନ୍ଦର୍ଯ୍ୟମୟ କରାଯାଇଥାଏ । ଗୃହ ସନ୍ନିକଟରେ ବଗିଚା ନ ଥିଲେ ବାହାରୁ ଫୁଲ ସଂଗ୍ରହ କରି ଘରକୁ ସଜାଇବା ନିହାତି ଆବଶ୍ୟକ । ପୁଷ୍ପସଜାପାଇଁ



(ଚିତ୍ର-୧୨୯) ଅଭିଲମ୍ବିତ ଓ ସମାନ୍ତରାଳ ଫୁଲସଜ୍ଜା

କେତେକ ନିର୍ଦ୍ଦିଷ୍ଟ ନୀତିନିୟମ ମାନିବାକୁ ପଡ଼େ । ପରିବେଶ, ବ୍ୟବହୃତ ପୁଷ୍ପ ଓ ଫୁଲଦାନୀ ପ୍ରଭୃତିକୁ ନେଇ ପୁଷ୍ପସଜା କରାଯିବା ଉଚିତ । ପୁଷ୍ପସଜା ପାଇଁ କେତେକ ନିର୍ଦ୍ଦିଷ୍ଟ ପରିକଳ୍ପନା (Design) ଅନୁପାତ (Scale and composition), ସମତା (balance), ଐକ୍ୟ (Unity and harmony), କେନ୍ଦ୍ରବିନ୍ଦୁ (focus), ଅନ୍ତର୍ନିହିତ ଭାବ (Rhythm) ପ୍ରଭୃତି ପ୍ରଧାନ । ପୁଷ୍ପସଜାର



ଓରାଲ କର୍ଭ ଫୁଲସଜା



ତ୍ରିସେଣ୍ଟ କର୍ଭ ଫୁଲସଜା



ଫୁଲ ସଜାଇବା ପ୍ରଣାଳୀ

ପରିକଳ୍ପନା ମଧ୍ୟରେ ଅଭିଲମ୍ବରେଖା (Vertical line) ଅନ୍ୟତମ । ଏଥିରେ ଫୁଲ ସଜାଇବାରେ ବ୍ୟବହାର କରାଯାଉଥିବା ଫୁଲଦାନୀ ଓ ଫୁଲଗୁଡ଼ିକ ଅଭିଲମ୍ବିତ ଭାବରେ ସଜାଯାଇଥାଏ । ସେହିପରି ସମାନ୍ତରାଳ ରେଖା (Horizontal line) ପଦ୍ଧତିରେ ସଜାଯାଇଥିବା ବସ୍ତୁ ଓ ଫୁଲଦାନୀ ସହିତ ପୁଷ୍ପ ତଥା ଅନ୍ୟାନ୍ୟ ସଜାଯାଇଥିବା ବସ୍ତୁଗୁଡ଼ିକ ସମାନ୍ତରାଳ ଭାବେ ରହିବା ଉଚିତ । ପ୍ରଶସ୍ତ କକ୍ଷ ଓ ଅନ୍ୟ କେତେକ ସ୍ଥାନରେ ଅଭିଲମ୍ବରେଖାଯୁକ୍ତ ପୁଷ୍ପ ସଜାଯାଇଥାଏ । ସମାନ୍ତରାଳ ରେଖାଯୁକ୍ତ ପୁଷ୍ପସଜ୍ଜା ସମ୍ମିଳନୀ ଟେବୁଲ୍, ଡାଇନିଂ ଟେବୁଲ ପ୍ରଭୃତିରେ କରାଯାଇଥାଏ । କାରଣ ଏହି ପ୍ରକାର ପୁଷ୍ପସଜା ପରସ୍ପରକୁ ସମ୍ମୁଖ କରି ବସିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରତିବନ୍ଧକ ସୃଷ୍ଟି କରି ପାରେନାହିଁ । ଅଭିଲମ୍ବିତ ଓ ସମାନ୍ତରାଳ ରେଖା ମିଶ୍ରଯୁକ୍ତ ପରିକଳ୍ପନା (Combination of vertical and Horizontal lines) ଅନେକ ସମୟରେ ବାରଣ୍ଡା, ପ୍ରବେଶଦ୍ୱାର ପ୍ରଭୃତିରେ ବ୍ୟବହାର କରାଯାଇଥାଏ । ଏଥିରେ ଫୁଲଦାନୀରେ ବାହାରପଟକୁ ସଜାଯାଇଥିବା ବସ୍ତୁଗୁଡ଼ିକ ସମାନ୍ତରାଳ ଭାବେ ଓ ମଧ୍ୟଭାଗର ବସ୍ତୁଗୁଡ଼ିକ ଲମ୍ବଭାବରେ ରହିଥାନ୍ତି । ସମବିଚ୍ଛୁରିତ (Radial lines) ରେଖାଯୁକ୍ତ ପୁଷ୍ପସଜାରେ ପ୍ରତ୍ୟେକ ଅଂଶ ସମାନଭାବରେ ଚାରିଆଡ଼କୁ ଓ ଫୁଲଦାନୀର

ଗଳାଠାରୁ ତଳକୁ ଝୁଲିଥାନ୍ତି । କ୍ଷୁଦ୍ର କ୍ଷୁଦ୍ର ପ୍ରକୋଷ୍ଠଗୁଡ଼ିକରେ ଏଗୁଡ଼ିକର ବ୍ୟବହାର କରାଯାଇଥାଏ । ଏହା ବ୍ୟତୀତ ଅନ୍ୟାନ୍ୟ ପରିକଳ୍ପନା ମଧ୍ୟରେ ଓରାଲ କର୍ଭ (Oral curve) କ୍ରିସେଣ୍ଟ କର୍ଭ (Crescent curve) ଓ ହୋଗାର୍ଥ କର୍ଭ (Hogarth curve) ପ୍ରଭୃତି ପ୍ରଧାନ ।

ପୁଷ୍ପସଜାରେ ବ୍ୟବହୃତ ହେଉଥିବା ପୁଷ୍ପର ପରିମାଣ ଓ ଆକୃତି ସହିତ ଫୁଲଦାନୀର ସମ୍ପର୍କ ରହିବା ଉଚିତ । ଛୋଟ ଫୁଲଦାନୀରେ ବଡ଼ ଫୁଲ କିମ୍ବା ବଡ଼ ଫୁଲଦାନୀରେ ଛୋଟ ବ୍ୟବହାର କରିବା ଅନୁଚିତ । ବ୍ୟବହୃତ ପୁଷ୍ପ ଓ ଫୁଲଗୁଡ଼ିକ ଗେଡ଼ା ଫୁଲଦାନୀର ୧ $^{୧}/_{୨}$ ଗୁଣ ବ୍ୟାସାର୍ଦ୍ଧ ମଧ୍ୟରେ ସୀମିତି ହେବା ଉଚିତ । ପୁଷ୍ପସଜ୍ଜାରେ ଗୋଟିଏ ଅଂଶ ଅନ୍ୟ ଅଂଶକୁ ଲୁକ୍‌କାୟିତ କରିବା ଅନୁଚିତ । ସେହିପରି ପୁଷ୍ପସଜ୍ଜାର ସମତା ରକ୍ଷା ହେବା ଉଚିତ । ଉପଯୁକ୍ତ ଭାବେ ସମତା ରଖାଯାଇଥିବା ପୁଷ୍ପସଜ୍ଜାକୁ ଦର୍ଶକ ଧୀରେ ଧୀରେ ଅବଲୋକନ କରିଥାଏ, କିନ୍ତୁ ଅସମାନ ପୁଷ୍ପସଜ୍ଜାରେ ଦର୍ଶକ ଏହା ମଧ୍ୟରେ ଆକର୍ଷଣୀୟ ଅଂଶଟିକୁ ଖୋଜିବାକୁ ଚଞ୍ଚଳ ହୋଇଉଠେ । ସେହି ଦୃଷ୍ଟିରୁ ପୁଷ୍ପ ସଜାଇଲାବେଳେ ସୌନ୍ଦର୍ଯ୍ୟ ବିକାଶର ଅନୁପାତ ଯେପରି ଚାରିଆଡ଼କୁ ସମଭାବରେ ବାଣ୍ଟିହୋଇ ରହିବ ସେଥିପ୍ରତି ଦୃଷ୍ଟିଦେବା ଉଚିତ । ଅନ୍ୟ ଦୃଷ୍ଟିରେ ସମତା ରକ୍ଷା କରିବାକୁ ହେଲେ ଗାଢ଼ରଙ୍ଗର ଫୁଲଗୁଡ଼ିକ ପୁଷ୍ପସଜ୍ଜାର ତଳଆଡ଼କୁ ରଖାଯିବା ଆବଶ୍ୟକ । ପୁଷ୍ପସଜ୍ଜାରେ ଏକତା ରଖିବାକୁ ହେଲେ ଫୁଲ ଓ ପତ୍ରର ରଙ୍ଗ, ସେଗୁଡ଼ିକର ଆକୃତି, ଆୟତନ ତଥା ସୂକ୍ଷ୍ମତା ଉପରେ ଦୃଷ୍ଟି ଦିଆଯିବା ଉଚିତ । ପୁଷ୍ପ ସଜ୍ଜାରେ ଏକତା ଆଣିବା ପାଇଁ ସାଧାରଣ ପୁଷ୍ପଗୁଡ଼ିକ ବ୍ୟବହାର କରାଯିବା ଆବଶ୍ୟକ । ଏହା ବ୍ୟତୀତ ଗୋଟିଏ ପ୍ରକାର ରଙ୍ଗର ଫୁଲ ବେଶୀ ବ୍ୟବହାର କରି ଓ ଉଚିତ ପ୍ରକାର ଫୁଲଦାନୀ ବ୍ୟବହାର କରି ଅତି ସହଜରେ ପୁଷ୍ପ ସଜାଇ ଏକତା ରକ୍ଷା କରାଯାଇପାରେ । ପୁଷ୍ପସଜ୍ଜାର କେନ୍ଦ୍ରବିନ୍ଦୁ ଆକର୍ଷଣୀୟ ହେବା ଉଚିତ । ପ୍ରତ୍ୟେକ ଦର୍ଶକ ପୁଷ୍ପସଜ୍ଜାକୁ ଅବଲୋକନ କଲାବେଳେ ପ୍ରଥମେ ତାହାର ଦୃଷ୍ଟି କେନ୍ଦ୍ର ବିନ୍ଦୁରେ ପଡ଼ିବା ଉଚିତ । ବିଭିନ୍ନ ପ୍ରକାର ପରିକଳ୍ପନାର କେନ୍ଦ୍ର ବିନ୍ଦୁ ବିଭିନ୍ନ ସ୍ଥାନରେ ଅବସ୍ଥାପିତ ହୋଇଥାଏ । କେନ୍ଦ୍ରବିନ୍ଦୁ ସାଧାରଣତଃ ଧାରକର (Container) ଅଗ୍ରଭାଗ ଓ ପୁଷ୍ପସଜାର ଅଗ୍ରଭାଗର ଦୂରତା ୧/୩ ଅଂଶ ମଧ୍ୟରେ

ରହିବ ଉଚିତ । ପ୍ରତ୍ୟେକ ପୁଷ୍ପସଜ୍ଜା ଏକ ଅନ୍ତର୍ନିହିତ ଭାବ ସୃଷ୍ଟି କରିଥାଏ । ପୁଷ୍ପସଜାକୁ ଧୀରେ ଧୀରେ ଅବଲୋକନ କଲେ ପ୍ରତ୍ୟେକ ବ୍ୟକ୍ତିର ଚିନ୍ତାରାଜ୍ୟରେ ଏକ ଆଲୋଡ଼ନ ସୃଷ୍ଟି ହୋଇଥାଏ । ଉପଯୁକ୍ତ ଭାବରେ ସଜାଯାଇ ନ ଥିବା ପୁଷ୍ପସଜାଗୁଡ଼ିକ କୌଣସି ଭାବନା ସୃଷ୍ଟି କରିବାରେ ଅକ୍ଷମ ହୋଇଥାଏ ।

ପୁଷ୍ପ ସଜାଇଲା ବେଳେ ବିଭିନ୍ନ ରଙ୍ଗ ଯୋଜନା କରାଯାଏ । ସେଥିମଧ୍ୟରୁ ଗୋଟିଏ ରଙ୍ଗ ଓ ବିଭିନ୍ନ ଘନତା ନେଇ ଏକରଙ୍ଗୀ (One-hue-harmony) ପୁଷ୍ପ ସଜା ଯାଇପାରେ । ସେହିପରି ପ୍ରତିବେଶୀଧର୍ମୀ (Analogus harmony) ରଙ୍ଗରେ ପୁଷ୍ପ ସଜାଇବା ପାଇଁ କମଳା, ହଳଦିଆ ଏବଂ ଲାଲ, ଭାଓଲେଟ୍ ରଙ୍ଗ ଓ ଏହିପରି ଅନେକ ପରସ୍ପର ନିକଟତମ ରଙ୍ଗ ବ୍ୟବହାର କରାଯାଇପାରେ । ପରିପୂରକଧର୍ମୀ (Complementary) ରଙ୍ଗ ସୃଷ୍ଟି କରିବାକୁ ହେଲେ ରଙ୍ଗଚକ୍ରର ବିପରୀତ ପାର୍ଶ୍ୱର ରଙ୍ଗଗୁଡ଼ିକ ଯଥା ହଳଦିଆ ଓ ଭାଓଲେଟ, ନୀଳ ଓ କମଳା, ଲାଲ୍ ଓ ସବୁଜ ରଙ୍ଗ ବ୍ୟବହାର କରାଯିବା ଉଚିତ । ସେହିପରି ହଳଦିଆ, ହଳଦିଆସବୁଜ, ଭାଓଲେଟ ଓ ଲାଲ ଭାଓଲେଟ୍ ଓ ଲାଲ, ଲାଲ କମଳାରଙ୍ଗ ନେଇ ପୁଷ୍ପସଜ୍ଜା କରାଯାଇପାରେ । କିଛି ରଙ୍ଗ ଯୋଜନା ନ କରି ବିଭିନ୍ନ ରଙ୍ଗକୁ ସଜାଇ ସେଗୁଡ଼ିକ ଭଲ ଦିଶିଲା ଭଳି ପୁଷ୍ପସଜା କରାଯାଇପାରେ ।

ପୁଷ୍ପ ସଜାଇବା ପାଇଁ ସକାଳେ କିମ୍ୱା ସନ୍ଧ୍ୟାବେଳେ ପୁଷ୍ପ ସଂଗ୍ରହ କରିବା ଉଚିତ । ଲମ୍ୱା ଡେମ୍ଫ ଥିବା ଫୁଲଗୁଡ଼ିକୁ ତୀକ୍ଷ୍ଣ ଛୁରିରେ କାଟିବା ଆବଶ୍ୟକ । ଗୋଲପ, କେନା, ମନ୍ଦାର, ପପି, ଗ୍ଲାଡ଼ିଓଲସ ପୁଷ୍ପଗୁଡ଼ିକୁ ସଜାଇବା ପାଇଁ ଫୁଟିବାର ପୂର୍ବାବସ୍ଥାରେ ସଂଗ୍ରହ କରାଯିବା ଉଚିତ । କିନ୍ତୁ ଜିନିଆ, ମେରିଗୋଲ୍ଡ଼, ଡାହାଲିଆ, ଆଣ୍ଟିରାଇନମ୍, ଫ୍ଲକ୍ସ, ହଲିହକ୍, ଡେଲିଫିନିୟମ୍, ପ୍ରଭୃତି ଫୁଟିବା ଅବସ୍ଥାରେ ତୋଳିବା ପ୍ରୟୋଜନ । ଫୁଲ କଟା ସରିଲା ପରେ ସେଥିରୁ କ୍ଷୀର ବାହାରୁଥିଲେ ଡେମ୍ଫଗୁଡ଼ିକୁ ଫୁଟିଲା ପାଣିରେ ୩୦ ସେକେଣ୍ଡ ବୁଡ଼ାଇ ରଖିବା ଉଚିତ । ସାମାନ୍ୟ ଗରମ ପାଣିରେ ଫୁଲଗୁଡ଼ିକ

ବୁଡ଼ାଇ ରଖିଲେ ଫୁଲଗୁଡ଼ିକ ବେଶୀ ସମୟ ତାଜା ରହେ । ଡେମ୍ଫର ତଳଆଡ଼କୁ ଥିବା ପତ୍ର ଛିଡ଼ାଇଦେବା ଉଚିତ ।

ପୁଷ୍ପସଜ୍ଜା ପାଇଁ ବ୍ୟବହାର କରାଯାଉଥିବା ଫୁଲଦାନୀଗୁଡ଼ିକ ବିଭିନ୍ନ ଆକୃତିର ଓ ବିଭିନ୍ନ ଧାତୁର ହୋଇଥାଏ । କାଚ ଓ ତମ୍ବାର ପାତ୍ରଗୁଡ଼ିକ ବେଶୀ ସୁନ୍ଦର ଦିଶେ । ଏହା ବ୍ୟତୀତ ବିଭିନ୍ନ ରଙ୍ଗୀନ ଫୁଲଦାନୀ ଦରକାର ଅନୁଯାୟୀ ବ୍ୟବହାର କରାଯାଇଥାଏ । ଫୁଲକୁ ଧରିରଖିବା ପାଇଁ ସୂଚୀମୁହଁଧାରକ




ଉଇଖିଆ କାଠର ଫୁଲସଜ୍ଜା

(Needle point holder), ଜାଲୀ ଧାରକ (Bird cage holder), ମୁଣ୍ଡକଣ୍ଟା ଧାରକ (Hair pin holder), କୁକୁଡ଼ା ଜାଲି, ଫୁଲଗ୍ରିଲ, ପ୍ଲାଷ୍ଟିକ୍ ଫୋମ ବ୍ୟବହାର କରାଯାଇଥାଏ । ପୁଷ୍ପସଜ୍ଜା କରିବା ପୂର୍ବରୁ ସ୍ଥାନ, କାଳ, ପାତ୍ର ଅନୁସାରେ ସଂଗୃହୀତ ପୁଷ୍ପ, ପତ୍ର ଓ ଅନ୍ୟାନ୍ୟ ବସ୍ତୁର ଆବଶ୍ୟକତା ପ୍ରତି ଦୃଷ୍ଟି ଦେଇ ଫୁଲ ସଜାଇଲେ ଏହା ବିଶେଷ ଆମୋଦଦାୟକ ହୋଇଥାଏ । ଫୁଲ ଓ



ପୁଷ୍ପସଜ୍ଜା ଉପକରଣ



ପୁଷ୍ପସଜ୍ଜା ଉପକରଣ



ପୁଷ୍ପସଜ୍ଜା ଉପକରଣ



ପୁଷ୍ପସଜ୍ଜା ଉପକରଣ

ପତ୍ର ବ୍ୟତୀତ ଫଳ ପଥର, କାଠଖଣ୍ଡ ଓ ଆହୁରି ଅନେକ ଜିନିଷ ପୁଷ୍ପସଜ୍ଜାରେ ବ୍ୟବହାର କରାଯାଇଥାଏ । ଦୈନ୍ୟ ପ୍ରକାଶ ପାଇଁ ଉଇଖିଆ କାଠ, ନିଷ୍ଠୁରତା ପାଇଁ ଛୋଟ ଛୋଟ ପଥରଖଣ୍ଡ, ପ୍ରଭୃତି ବ୍ୟବହାର କରାଯାଇଥାଏ । ଏହା ବ୍ୟତୀତ ଗାଜର୍ କିମ୍ବା ମୂଳା ଖଣ୍ଡଗୁଡ଼ିକରେ ବିଭିନ୍ନ ପ୍ରକାର ଫୁଲର ଚିତ୍ର କରି ପୁଷ୍ପସଜ୍ଜାରେ ବ୍ୟବହାର କରାଯାଏ । ଜୀବନଧର୍ମୀ ଫୁଲ ସଜ୍ଜା ପାଇଁ ବିଭିନ୍ନ ପ୍ରକାର ଫୁଲ ଘାସ ପ୍ରଭୃତି ବ୍ୟବହାର କରାଯାଇପାରିବ ।



# କଟାଫୁଲ ସଂଗ୍ରହ ଓ ଶୁଷ୍କପତ୍ର ଓ ପୁଷ୍ପ ପ୍ରସ୍ତୁତ ପ୍ରଣାଳୀ

ପୂର୍ବରୁ ଫୁଲ ସଜାଇବା ପାଇଁ କିପରି ଫୁଲ ସଂଗ୍ରହ କରାଯିବ ତାହା ବର୍ଣ୍ଣନା କରାଯାଇଛି । ଗୃହ ସଜାଇବା ତଥା ସ୍ତ୍ରୀଲୋକମାନଙ୍କ ବ୍ୟବହାର ପାଇଁ କଟାଫୁଲ ସଂଗ୍ରହ କରାଯାଏ । ଶୀତମଣ୍ଡଳୀୟ ଦେଶମାନଙ୍କରେ ବର୍ଷର ଚାରିମାସ ବରଫ ପଡୁଥିବାରୁ ଓ ସେହି ସମୟରେ ବାହାରେ ଫୁଲ ଲଗାଇବା ସମ୍ଭବପର ନ ହେବାରୁ ସମଶୀତୋଷ୍ଣ ଓ ଗ୍ରୀଷ୍ମମଣ୍ଡଳୀୟ ଦେଶଗୁଡ଼ିକରୁ ଏହି ଦେଶକୁ କଟାଫୁଲ ରପ୍ତାନୀ କରାଯାଇଥାଏ । ଫୁଲକୁ ବଜାରରେ ବିକ୍ରି କରିବା କିମ୍ବା ବିଦେଶକୁ ପଠାଇବା ପାଇଁ ବ୍ୟବହାର କଲାବେଳେ କେତେକ ବିଶେଷ ଯତ୍ନ ନେବାକୁ ପଡ଼ିଥାଏ । କଟାଫୁଲର ପାଖୁଡ଼ାଗୁଡ଼ିକ ମୋଟା, ଡେମ୍ଫଗୁଡ଼ିକ ଲମ୍ବା ହେବା ଉଚିତ । ଫୁଲକୁ ଗଛରୁ କାଟିନେବା ପରେ ପରେ ଡେମ୍ଫକୁ ପାଣିରେ ବୁଡ଼ାଇ ରଖିବା ଉଚିତ । କଟାଫୁଲକୁ ୪୦° ରୁ ୪୫° ଫାରେନହାଇଟ୍ ତାପବିଶିଷ୍ଟ ଗୃହରେ ୬ ରୁ ୧୨ ଘଣ୍ଟା ପର୍ଯ୍ୟନ୍ତ ରଖାଯିବା ଆବଶ୍ୟକ । ସେବତୀଗୁଡ଼ିକର ଡେମ୍ଫଗୁଡ଼ିକୁ ଛେଚି ପାଣିରେ ରଖିଲେ ସେଗୁଡ଼ିକ ବେଶୀ ସମୟ ରହେ । ଗୋଲାପ, ପପି, ସୁଇଟ ପି., ପ୍ରଭୃତି କଢ଼ ଅବସ୍ଥାରେ ଓ ଗେଣ୍ଡୁ, ଜିନିଆ, ଡାହେଲିଆ ପ୍ରଭୃତି ଫୁଲଗୁଡ଼ିକ ପୂରା ଫୁଟିବା ଅବସ୍ଥାରେ ସଂଗ୍ରହ କରିବା ଉଚିତ । ଗ୍ଲାଡ଼ିଓଲସ୍, ରଜନୀଗନ୍ଧା, ଆଣ୍ଟିରାଇନମ୍ ପ୍ରଭୃତିର ସ୍ତବକରେ ତିନି ଫୁଲଗୁଡ଼ିକ ଫୁଟି ସାରିଲା ପରେ ସଂଗ୍ରହ କରିବା ଉଚିତ । ପୁଷ୍ପଗୁଡ଼ିକର ପ୍ରସ୍ୱେଦନ କ୍ରିୟାକୁ ମନ୍ଥର କରିବା ପାଇଁ କେତେକ ପ୍ରତିରୋଧକ ରାସାୟନିକ ପଦାର୍ଥ ଯଥା ହେକ୍ସାଡ଼େକାନଲ୍, ଅକ୍ଟାଡେକାନଲ, ସିଟାଇଲ୍ ଡେକାନେଲ୍ ପ୍ରଭୃତି ଫୁଲଗୁଡ଼ିକ ଉପରେ ସିଞ୍ଚିବା ଉଚିତ । କଟାଫୁଲ ବିକ୍ରି ପାଇଁ ଚାଷ କରାଯାଉଥିବା ଫୁଲମାନଙ୍କ ମଧ୍ୟରେ– ରଜନୀଗନ୍ଧା, ଆଣ୍ଟିରାଇନମ୍, ଗ୍ଲାଡ଼ିଓଲସ, ସୁଇଟି ପି, ଆଷ୍ଟର, ଡେହେଲିଆ, ଗୋଲାପ ପ୍ରଭୃତି ଅନ୍ତର୍ଗତ ଆମ ଦେଶର ବଡ଼ ବଡ଼ ସହର ଅଞ୍ଚଳରେ କଟାଫୁଲ ବ୍ୟବସାୟ ଅତି ଲାଭଜନକ ଅଟେ ।

କଟାଫୁଲ ପରି ଶୁଖିଲା ଫୁଲକୁ ଅନେକ ସମୟରେ ସଜାଇବାରେ ବ୍ୟବହାର କରାଯାଏ । ଶୁଖିଲା ପତ୍ର, ଡାଳକୁ ମଧ ଘର ସଜାଇବା ପାଇଁ ବ୍ୟବହାର କରାଯାଇଥାଏ । ଫୁଲ ଓ ପତ୍ର ଶୁଖିଗଲେ ସେଗୁଡ଼ିକର ରଙ୍ଗ ଠିକ୍ ଭାବରେ ରଖିବା ଏକ କଷ୍ଟକର ବ୍ୟାପାର । ଗୋଲାପ, ଗେଣ୍ଡୁ, ଜିନିଆ ପ୍ରଭୃତି ଫୁଲକୁ ଚୁଲି କିମ୍ବା ଅନ୍ୟାନ୍ୟ ଉତ୍ତାପଯୁକ୍ତ ସ୍ଥାନଗୁଡ଼ିକର ବହୁ ଉପରେ ତଳକୁ ମୁହଁ କରି ଝୁଲାଇଲେ ଏହା ଆସ୍ତେ ଆସ୍ତେ ଶୁଖିଯାଏ । ଫୁଲ ଶୁଖାଇଲାବେଳେ ଯେପରି ପରସ୍ପର ସହିତ ନଲାଗେ ସେହିପରି ରଖାଯାଏ । ଫୁଲକୁ ବାହାରେ ଝୁଲାଇ ନ ରଖି ବାକ୍ସରେ ବନ୍ଦ କରି ଅନ୍ଧାର ସ୍ଥାନରେ ରଖି ଶୁଖାଇଲେ ଫୁଲର ରଙ୍ଗ ନଷ୍ଟ ହୁଏ ନାହିଁ । ସାଲଭିଆ, ବିଭିନ୍ନ ଘାସ, କୁକୁଡ଼ାଚୂଳ ପ୍ରଭୃତି ଅନ୍ଧକାରରେ ଶୁଖାଯିବା ଉଚିତ ମୋଟା ପାଖୁଡ଼ା ଥିବା ଫୁଲ ଶୁଖିବାକୁ ବେଶୀ ସମୟ ଲାଗେ କିନ୍ତୁ ପତଳା ପାଖୁଡ଼ା ଥିବା ଫୁଲଗୁଡ଼ିକ ଶୀଘ୍ର ଶୁଖିଯାଏ । ରଙ୍ଗୀନ ଘାସ ଓ ପତ୍ର ଶୁଖାଇଲାବେଳେ କଅଁଳ ପତ୍ର ସଂଗ୍ରହ ନ କରି ପୁରୁଣା ପତ୍ର ସଂଗ୍ରହ କରିବା ଉଚିତ । ସେହିପରି ଫୁଲ ସଂଗ୍ରହ କଲାବେଳେ ସେଗୁଡ଼ିକ ଠିକ୍ ପରିପକ୍ୱ ଅବସ୍ଥା ପର୍ଯ୍ୟନ୍ତ ବଢ଼ିଥିବା ଉଚିତ ।

ଗ୍ଲିସେରିନରେ ବୁଡ଼ାଇ ରଖିଲେ ଫୁଲ ଓ ପତ୍ରଗୁଡ଼ିକ ବେଶୀଦିନ ପର୍ଯ୍ୟନ୍ତ ରଖାଯାଇପାରେ । ଏକଭାଗ ଗ୍ଲିସେରିନ ଓ ଦୁଇଭାଗ ପାଣି ମିଶାଇ ଏକ ମିଶ୍ରଣ ପ୍ରସ୍ତୁତ କରି ସେଥିରେ ସଂଗୃହୀତ ଫୁଲ ଓ ପତ୍ରର ଡେମ୍ଫ ବୁଡାଇ ରଖାଯାଏ । ପତ୍ର ଓ ଡାଳଗୁଡ଼ିକ ହୃଷ୍ଟପୁଷ୍ଟ ହୋଇ ବଢୁଥିବା ସମୟରେ ଡେମ୍ଫସହ କାଟି ଗ୍ଲିସେରିନ ପାଣିରେ ବୁଡ଼ାଇ ରଖିଲେ ଗ୍ଲିସେରିନ ମିଶା ପାଣି ଶୋଷି ହୋଇ ସହଜରେ ଭିତରକୁ ଯାଏ କିନ୍ତୁ ଡେମ୍ଫଗୁଡ଼ିକ ବେଶୀ ପୁରୁଣା ହୋଇଗଲେ ଏହା ଏହି ତରଳ ପଦାର୍ଥକୁ ଗ୍ରହଣ କରିପାରେ ନାହିଁ । ଗ୍ଲିସେରିନ ଜଳରେ ଏଗୁଡ଼ିକ ତିନି ସପ୍ତାହ ଯାଏ ରଖିଲେ ଏହା ଉପଯୁକ୍ତ ପରିମାଣ ଗ୍ଲିସେରିନ ଜଳରେ ଏଗୁଡ଼ିକ ତିନି ସପ୍ତାହଯାଏ ରଖିଲେ ଏହା ଉପଯୁକ୍ତ ପରିମାଣର ଗ୍ଲିସେରିନ୍ ସଂଗ୍ରହ କରିନିଏ । ଫୁଲର ପାଖୁଡ଼ା ଓ ପତ୍ରଗୁଡ଼ିକ ତେଲିଆ ଦିଶେ । ଏହି ଅବସ୍ଥାରେ ସେଗୁଡ଼ିକୁ ଗ୍ଲିସେରିନ ପାଣିରୁ ବାହାର କରି ଆଣି ଭବିଷ୍ୟତରେ ବ୍ୟବହାର କରିବା ପାଇଁ ରଖାଯାଏ । ଏହି ଉପାୟରେ ପ୍ରସ୍ତୁତ ପାଖୁଡ଼ା ଓ



ଗ୍ଲିସେରିନ୍ ପାଣିରେ ପତ୍ରଶୁଖା

ପତ୍ରଗୁଡ଼ିକ ସାମାନ୍ୟ ଚାପ ପ୍ରୟୋଗରେ ଭାଙ୍ଗିଯାଏ । ସୁତରାଂ ସେଗୁଡ଼ିକୁ ଯତ୍ନ ସହକାରେ ବ୍ୟବହାର କରାଯିବା ଉଚିତ । ଖୁବ୍ ଛୋଟ ପତ୍ରକୁ ଏହି ଉପାୟରେ ସଂରକ୍ଷଣ କରିବାକୁ ଚାହିଁଲେ ତାହାକୁ ଗ୍ଲିସେରିନ ଓ ପାଣି ମିଶ୍ରଣରେ ବୁଡ଼ାଇ ରଖିବା ଉଚିତ ।

ବୋରାକ୍ସ, ମକା ଗୁଣ୍ଡ ଓ ବାଲିଦ୍ୱାରା ପୁଷ୍ପଗୁଡ଼ିକୁ ଶୁଖାଯାଇପାରେ । ଏହି ପଦାର୍ଥଗୁଡ଼ିକୁ ଏକାକୀ ବ୍ୟବହାର ନ କରି ସେଗୁଡ଼ିକୁ ମିଶ୍ରଣ କରି ବ୍ୟବହାର




ବୋରାକ୍ସ କୁଣ୍ଡରେ ଫୁଲ ଶୁଖା

କଲେ ଫୁଲଗୁଡ଼ିକ ଭଲ ଶୁଖେ । ବୋରାକ୍ସ ପାଉଡ଼ରକୁ ଫୁଲ ଶୁଖିବା ପାଇଁ ବେଶୀ ବ୍ୟବହାର କରାଯାଇଥାଏ । ବ୍ୟବହାର କରାଯାଉଥିବା ବାଲିଗୁଡ଼ିକରୁ ବିଭିନ୍ନ ପ୍ରକାର ଲବଣ ଅଂଶ ଭଲଭାବରେ ବାହାର କରିଦେବା ଉଚିତ । ବାଲି ଓ ବୋରାକ୍ସ ମିଶ୍ରଣ କଲାବେଳେ ଏକ ଭାଗ ବାଲି ଓ ଦୁଇଭାଗ ବୋରାକ୍ସ ନେବା ଆବଶ୍ୟକ । କିନ୍ତୁ ମକାଗୁଣ୍ଡ ସହିତ ମିଶ୍ରଣ କଲାବେଳେ ସାମାନ ଓଜନର ବୋରାକ୍ସ, ମକାଗୁଣ୍ଡ, ବାଲି ନେବା ଉଚିତ । ଫୁଲ ଶୁଖାଇବା ପାଇଁ ବ୍ୟବହୃତ ବକ୍ସ ୨୭ ସେ.ମି. ଲମ୍ୱା ୪୦ ସେ.ମି. ପ୍ରସ୍ଥ ଓ ୮ ସେ.ମି. ଗଭୀର ହେବା ଉଚିତ । ଏହିପରି ବାକ୍ସଗୁଡ଼ିକରେ ଫୁଲର ଆକୃତି ଅନୁସାରେ ୮ ରୁ ୧୬ ଟି ଫୁଲ ଶୁଖାଯାଇ ପାରେ । ଲମ୍ୱା ଡେମ୍ପଯୁକ୍ତ ଫୁଲ ଶୁଖାଇବା ପାଇଁ ବାକ୍ସର ଉଚ୍ଚତା ବଢ଼ାଯିବା ଉଚିତ । ଫୁଲ ଶୁଖାଇଲାବେଳେ ସାଧାରଣତଃ ପ୍ରତ୍ୟେକ ବାକ୍ସରେ ଗୋଟିଏ ପ୍ରକାର ଫୁଲ ଶୁଖିଯିବା ଭଲ । ପ୍ରଥମେ ବାକ୍ସର ତଳ



**କାଗଜ ଚାପଦେଇ ପତ୍ରଶୁଖା**

୧ ସେ.ମି. ଉଚ୍ଚତାରେ ବୋରାକ୍ସ ବିଛାଇ ଫୁଲଗୁଡ଼ିକୁ ତଳକୁ କିମ୍ବା ଉପରକୁ ମୁହଁ କରି ରଖାଯିବା ଆବଶ୍ୟକ । ପ୍ରତ୍ୟେକ ଫୁଲ ପରସ୍ପରଠାରୁ ଅଲଗା ରହିବା ଉଚିତ । ଆସ୍ତେ ଆସ୍ତେ ବୋରାକ୍ସର ମିଶ୍ରଣକୁ ଡେଙ୍ଗର ଚାରିପଟେ ଗଦାକରି ଫୁଲକୁ ସିଧାରଖି ଫୁଲଉପରେ ମିଶ୍ରଣ ପକାଯାଏ । ମିଶ୍ରଣକୁ ଯତ୍ନ ସହକାରେ ପକାଯିବା ଉଚିତ । ତଳମୁହାଁ କରି ଫୁଲଗୁଡ଼ିକୁ ରଖିଲେ ଧରେ ଧୀରେ ବୋରାକ୍ସ ମିକସ୍‌ଚର ପକାଇବା ଉଚିତ । ପ୍ରତ୍ୟେକ ବାକ୍ସ ବୋରାକ୍ସରେ ଭର୍ତ୍ତି ହେଲା ପରେ ତା ଉପରେ କି ଫୁଲ ରହିଛି ଲେଖାଥିବା ଆବଶ୍ୟକ । ଆମ ଦେଶରେ ସାଧାରଣତଃ ବସନ୍ତକାଳରେ ଫୁଟୁଥିବା ଫୁଲଗୁଡ଼ିକ ସଂଗ୍ରହ କରାଯିବା ଉଚିତ । ଫୁଲ ଶୁଖାଇବା ପାଇଁ ହାରାହାରି ୬/୭ ଦିନ ଲାଗେ । କିନ୍ତୁ ଫୁଲର ବିଭିନ୍ନତା ନେଇ ଫୁଲ ଶୁଖାଇବା ପାଇଁ ସମୟ ଲାଗିଥାଏ । ଉଦାହରଣ ସ୍ୱରୂପ ପେନସି ଶୁଖାଇବା ପାଇଁ ୨ ସପ୍ତାହ ନେଉଥିଲାବେଳେ ଜିନିଆ ୪ ଦିନ ଦରକାର କରେ । ବୋରାକ୍ସ ମିଶ୍ରଣ ଭଳି ସିଲିକା ଜେଲ ଦ୍ୱାରା ମଧ୍ୟ ଫୁଲ ଶୁଖାଯାଇପାରେ । କାଗଜ ଭିତରେ ପତ୍ର ରଖି ତାକୁ ଧିରେ ଧିରେ ଚାପ ଦେଇ ଗରମ ସ୍ଥାନରେ ରଖି ଶୁଖାଯାଏ । ଏହି ପ୍ରଣାଳୀରେ ଶୁଖାଇବା ବେଳେ ମଝିରେ ମଝିରେ ପତ୍ରଗୁଡ଼ିକୁ ଖରାରେ ଦେଖାଇଦେବା ଉଚିତ ।



# ପୁଷ୍ପ ପ୍ରଦର୍ଶନୀ

## (Flower Show)

ଅନ୍ୟାନ୍ୟ ପ୍ରଦର୍ଶନୀ ପରି ବିଭିନ୍ନ ପୁଷ୍ପ ଓ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦମାନଙ୍କର ପ୍ରଦର୍ଶନୀ ବହୁକାଳରୁ ପ୍ରଚଳିତ ହୋଇଆସୁଅଛି । ପ୍ରକୃତି କୋଳରେ ଫୁଟିଥିବା ପୁଷ୍ପ ଓ ବଢ଼ିଥିବା ବିଭିନ୍ନ ସୌନ୍ଦର୍ଯ୍ୟବର୍ଦ୍ଧକ ଉଦ୍ଭିଦଗୁଡ଼ିକର ପ୍ରଦର୍ଶନ ଏକ ସାମାଜିକ କର୍ତ୍ତବ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ପ୍ରକାର ପଦର୍ଶନୀଦ୍ୱାରା ଜନସାଧାରଣଙ୍କୁ ବିଭିନ୍ନ ପୁଷ୍ପ ସମ୍ବନ୍ଧରେ ଅବଗତ କରାଇବା ସଙ୍ଗେ ସଙ୍ଗେ ଏଗୁଡ଼ିକର ପ୍ରକୃତ ପରିଚର୍ଯ୍ୟା ପ୍ରଣାଳୀ ସମ୍ବନ୍ଧୀୟ ଜ୍ଞାନର ଆଦାନପ୍ରଦାନ ହୋଇଥାଏ । ସେହିପରି ଡେହେଲିଆ, ସେବତୀ, ଗୋଲାପ ପ୍ରଭୃତି କେତେକ ନିର୍ଦ୍ଦିଷ୍ଟ ଫୁଲକୁ ନେଇ ମଧ୍ୟ ପ୍ରଦର୍ଶନୀ କରାଯାଇ ପାରେ । ଆମଦେଶର ବଡ଼ ବଡ଼ ସହରରେ ଏହି ପ୍ରକାର ପ୍ରଦର୍ଶନୀମାନ ଅନୁଷ୍ଠିତ ହୋଇଥାଏ ।

ଜଳବାୟୁର ବିଭିନ୍ନତା ଅନୁସାରେ ବିଭିନ୍ନ ସ୍ଥାନରେ ଅଲଗା ଅଲଗା ସମୟରେ ପ୍ରଦର୍ଶନୀମାନ ଅନୁଷ୍ଠିତ ହୋଇଥାଏ । ଆମଦେଶର ଅଧିକାଂଶ ପ୍ରଦର୍ଶନୀ ଡିସେମ୍ବରଠାରୁ ଫେବ୍ରୁୟାରୀ ମାସ ମଧ୍ୟରେ ହୋଇଥାଏ । ଉପଯୁକ୍ତ ଅବସ୍ଥାରେ ଥିବା ଗଛ ଓ ଫୁଲଗୁଡ଼ିକ ଯେପରି ପ୍ରଦର୍ଶନରେ ସ୍ଥାନପାଏ, ତାର ଦାୟିତ୍ୱ ପ୍ରଦର୍ଶନୀ ଆୟୋଜନ କରୁଥିବା ସଂସ୍ଥା ତଥା ପ୍ରଦର୍ଶନୀରେ ଭାଗ ନେଉଥିବା ପ୍ରତ୍ୟେକ ବ୍ୟକ୍ତିର ଦାୟିତ୍ୱ । ପ୍ରତିଯୋଗିତାରେ ଭାଗ ନେଉଥିବା ଉଦ୍ଭିଦଗୁଡ଼ିକୁ ବହୁ ଆଗରୁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନେଇ ପ୍ରସ୍ତୁତ କରାଯାଇଥାଏ । ପ୍ରଦର୍ଶନୀଗୁଡ଼ିକୁ ଆଖିଆଗରେ ରଖି ବିଭିନ୍ନ ଅବସ୍ଥାରେ ଗଛ ଲଗାଇବା, ସାରଦେଇ ଗଛକୁ ଶୀଘ୍ର କିମ୍ବା ବିଭିନ୍ନ କୌଶଳରେ ଡେରିରେ ବଢ଼ାଇବା, ବେଶୀ କିମ୍ବା କମ୍ କଢ଼ ରଖିବା ବ୍ୟବସ୍ଥା ଗ୍ରହଣ କରାଯାଏ ।

ପ୍ରଦର୍ଶନୀରେ କେତେକ ନିର୍ଦ୍ଦିଷ୍ଟ ବିଭାଗ ରଖିବା ଉଚିତ । ନିର୍ଦ୍ଦିଷ୍ଟ ଫୁଲମାନଙ୍କ ପ୍ରଦର୍ଶନୀ ବ୍ୟତୀତ ସାଧାରଣ ପ୍ରଦର୍ଶନୀଗୁଡ଼ିକରେ ରହୁଥିବା ବିଭାଗ ମଧ୍ୟରେ କୁଣ୍ଡରେ ଫୁଟିଥିବା ଫୁଲ (Flowering pot plants), ପତ୍ରଜ ସୌନ୍ଦର୍ଯ୍ୟଯୁକ୍ତ କୁଣ୍ଡ (Foliage pot plants), କଟାଫୁଲ (Cut flowers), ପୁଷ୍ପସଜ୍ଜା (Flower arrangement), ଗୋଲାପ ସେବତୀ, ଡାଲିଆ ବିଭାଗ, ଶିଶୁମାନଙ୍କର ସଂଗୃହିତ ବସ୍ତୁ (Children's Collection), କାକ୍ଟସ୍, ଅର୍କିଡ଼ ଓ ଅନ୍ୟାନ୍ୟ କୌତୁହଳପ୍ରଦ ଉଦ୍ଭିଦ ବିଭାଗ, ମାଳ ଓ ଫୁଲତୋଡ଼ା ବିଭାଗ, ମହିଳା ବିଭାଗ (Ladys' Section), ଟେବୁଲସଜା ବିଭାଗ (Table decoration) ପ୍ରଭୃତି ରହିବା ଆବଶ୍ୟକ । ପ୍ରଦର୍ଶନୀ ଆୟୋଜନ କରୁଥିବା ଅନୁଷ୍ଠାନଗୁଡ଼ିକ ସ୍ଥାନ, କାଳ, ପାତ୍ର ଅନୁସାରେ ପ୍ରଦର୍ଶନୀରେ ବିଭିନ୍ନ ବିଭାଗମାନ ରଖିବା ଉଚିତ । ପ୍ରଦର୍ଶନୀରେ ଭାଗନେଉଥିବା ଗଛଗୁଡ଼ିକ ଯେଉଁ ବ୍ୟକ୍ତିଙ୍କ ଦ୍ୱାରା ପ୍ରଦତ୍ତ ହୋଇଥାଏ ତାହାଙ୍କ ଦ୍ୱାରା କେବଳ ଲଗାଯାଇଥିବା ଉଚିତ । ପ୍ରଦର୍ଶନୀ ପୂର୍ବରୁ ଏଗୁଡ଼ିକ ଫୁଲପଟାଳିରୁ ମାଟି ସହିତ ସଂଗୃହିତ ହେବା ଅନୁଚିତ । ପ୍ରତ୍ୟେକ ଗଛରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଫୁଲ ଓ କଟା ଫୁଲ ପାଇଁ ନିର୍ଦ୍ଦିଷ୍ଟ ସଂଖ୍ୟକ ଫୁଲ ରଖାଯିବା ଆବଶ୍ୟକ । ସର୍ବସାଧାରଣଙ୍କ ପାଇଁ ୨ଟି କରି କୁଣ୍ଡ ଓ ସରକାରୀ ସଂସ୍ଥା ପାଇଁ ୩ଟି କରି କୁଣ୍ଡ ପ୍ରଦର୍ଶନୀ କରାଯିବା ନିୟମ ରଖିବା ଉଚିତ । କିନ୍ତୁ କଟାଫୁଲ ପ୍ରଦର୍ଶନୀ ପାଇଁ ସରକାରୀ ଓ ଘରୋଇ ସଂସ୍ଥା ସମାନ ସଂଖ୍ୟକ ଫୁଲ ରଖିବା ଉଚିତ । ତିନୋଟିରୁ ପାଞ୍ଚଟି ପର୍ଯ୍ୟନ୍ତ କଟାଫୁଲ ପ୍ରତ୍ୟେକ ଫୁଲଦାନୀରେ ପ୍ରଦର୍ଶିତ ହେବା ଉଚିତ । କଟାଫୁଲ ପ୍ରଦର୍ଶନୀ ପାଇଁ ଆୟୋଜନ କରୁଥିବା ସଂସ୍ଥାଗୁଡ଼ିକ ସେମାନଙ୍କ ତରଫରୁ ଫୁଲଦାନୀ ଯୋଗାଇବା ଆବଶ୍ୟକ । ଅଧିକାଂଶ ପ୍ରଦର୍ଶନୀ ଗୋଟିଏ ଦିନପାଇଁ ହୁଏ । କଟାଫୁଲକୁ ଛାଡ଼ି ଅନ୍ୟାନ୍ୟ ଉଦ୍ଭିଦ ପାଇଁ ପ୍ରଦର୍ଶନୀ ଏକାଧିକ ଦିନପାଇଁ ହେବାରେ କିଛି ଅସୁବିଧା ନାହିଁ । ପ୍ରଦର୍ଶନୀ ଆରମ୍ଭ ହେବା ଦିନର ପ୍ରଭାତରେ କିମ୍ବା ତା ପୂର୍ବଦିନ ରାତିରୁ ଗଛଗୁଡ଼ିକୁ ପ୍ରଦର୍ଶନୀ ପାଇଁ ଗ୍ରହଣ କରାଯାଏ । ପ୍ରତ୍ୟେକ ଗଛ ଗ୍ରହଣ କଲାବେଳେ ଭାଗ ନେଉଥିବା ବ୍ୟକ୍ତି ଓ ଅନୁଷ୍ଠାନଗୁଡ଼ିକର ନାମ ଲେଖି ତାଙ୍କୁ

ଏକ କୋଡ଼ ନମ୍ବର ଦିଆଯାଏ । ଗଛଗୁଡ଼ିକ ନିର୍ଦ୍ଦିଷ୍ଟ ବିଭାଗରେ ରହିଲାବେଳେ ସେମାନଙ୍କର କୋଡ଼ ନମ୍ବର ଲଗାଇ ଦିଆଯାଏ । ପ୍ରଦର୍ଶନୀ ଆରମ୍ଭ ହେବା ପୂର୍ବରୁ ବିଚାରକମାନେ ପ୍ରଦର୍ଶିତ ବସ୍ତୁଗୁଡ଼ିକୁ ବିଚାର କରି ପ୍ରଥମ, ଦ୍ୱିତୀୟ ଓ ତୃତୀୟ ବିବେଚନା କରିଥାନ୍ତି । ବିଚାରକଙ୍କ ବିଚାର ପରେ ପୁରସ୍କାର ପାଇଥିବା ବସ୍ତୁଗୁଡ଼ିକରେ ପୁରସ୍କାରର ନାମ ଲେଖି ଝୁଲାଇଦେବା ଉଚିତ । ଏହା ପରେ ସର୍ବସାଧାରଣଙ୍କୁ ପ୍ରଦର୍ଶନୀକୁ ପ୍ରବେଶ କରିବାକୁ ଅନୁମତି ଦିଆଯାଏ । ପ୍ରଦର୍ଶନୀ ସମୟରେ ପ୍ରତ୍ୟେକ ପ୍ରଦର୍ଶିତ ବସ୍ତୁ ଯେପରି ଠିକ୍ ଅବସ୍ଥାରେ ରହେ ତାର ଦାୟିତ୍ୱ ଆୟୋଜନ କରୁଥିବା ସଂସ୍ଥା ବହନ କରିବା ଉଚିତ ।



## ॥ ତ୍ରୟୋବିଂଶ ପରିଚ୍ଛେଦ ॥

# ଫୁଲ ଚାଷ

## (Commercial Flower Cultivation)

ପ୍ରଥମ ପରିଚ୍ଛେଦରେ ପୁଷ୍ପଚାଷ ସମ୍ବନ୍ଧରେ ସାମାନ୍ୟ ଆଲୋକପାତ କରାଯାଇଅଛି । ଆଧୁନିକ ଯୁଗରେ ପୁଷ୍ପ ମନୁଷ୍ୟର ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ଫୁଲଚାଷ କରୁଥିବା ବ୍ୟକ୍ତିର ଅର୍ଥନୀତିକୁ ପ୍ରଭାବିତ କରିଥାଏ । ଅନ୍ୟାନ୍ୟ ଫସଲ ପରି ଫୁଲକୁ ଏକ ଲାଭଜନକ ଫସଲଭାବେ ଚାଷ କରାଯାଇପାରେ । ଆମଦେଶରେ ଲାଭଜନକ ଫୁଲଚାଷ ପାଇଁ ଗୋଲାପ, ମଲ୍ଲୀ, ରଜନୀଗନ୍ଧା, ସେବତୀ ପ୍ରଭୃତି ଫୁଲ ଚାଷ କରାଯାଇ ପାରେ । ଏହା ବ୍ୟତୀତ ଚମ୍ପା, କିଆ, କେତକୀ ପ୍ରଭୃତି କେତେକ ଫୁଲକୁ ସଂଗ୍ରହ କରି ଫୁଲ ବ୍ୟବସାୟ କରାଯାଇ ପାରେ ।

**ମଲ୍ଲୀ ଚାଷ** - ଆମ ଦେଶରେ ବିଭିନ୍ନ ପ୍ରକାର ମଲ୍ଲୀ ଜାତୀୟ ଉଦ୍ଭିଦ ଦେଖାଯାଏ । ସେଗୁଡ଼ିକ ମଧ୍ୟରେ ଯୁଇ, (Jasminum multiflorum), ଯାଇ (*J. grandiflorum*), ମଲ୍ଲୀ (*J. sambac*), ବଣମଲ୍ଲୀ (*J. flaxile*) ପ୍ରଭୃତି ପ୍ରଧାନ । ମଲ୍ଲୀ ଫୁଲ ମାଳପାଇଁ ଓ ଅତର ସଂଗ୍ରହ ପାଇଁ ବ୍ୟବହାର କରାଯାଇଥାଏ । ମଲ୍ଲୀ ଗଛଗୁଡ଼ିକ ୩୦୦୦ ମିଟର ଉଚ୍ଚ ସ୍ଥାନ ପର୍ଯ୍ୟନ୍ତ ଚାଷ କରାଯାଇପାରେ । ଗ୍ରୀଷ୍ମମଣ୍ଡଳୀୟ ଜଳବାୟୁରେ ଏହା ଭଲ ବଢ଼େ । ହାଲୁକା, ଉତ୍ତମଭାବେ ଜଳ ନିଷ୍କାସିତ ହୋଇ ପାରୁଥିବା ମାଟିରେ ଏହା ଚାଷ କରାଯାଇଥାଏ । ଗଛ ଲଗାଇବା ପୂର୍ବରୁ ଜମିକୁ ୩/୪ ଥର ଚାଷକରି ସମାନ କରିଦେବା ଉଚିତ । ଏହା ପରେ ଅଳ୍ପ ବଢୁଥିବା ମଲ୍ଲୀପାଇଁ ୧ ମି. ଦୂରତା ଓ ଚାରିଆଡ଼କୁ ମାଡୁଥିବା ମଲ୍ଲୀପାଇଁ ୩ ମିଟର ଦୂରତାରେ ୬୦ ସେ.ମି. ଓସାର ଓ ୪୦ ସେ.ମି. ଗଭୀରରେ ଗାତ ଖୋଳି ଚେର ଧରିଥିବା ମଲ୍ଲୀ ଡାଳମାନ ପୋତାଯାଏ । ଯାଇ ଓ ଯୁଇ ମଲ୍ଲୀଠାରୁ ବେଶୀ ଦୂରରେ ଲଗାଯିବା ଉଚିତ । ସବୁ ପ୍ରକାର ମଲ୍ଲୀକୁ ଡାଳକଲମି କରାଯାଇ ପାରିବ । ଯୁଇ, ଯାଇରେ ଗୁଟି

କରାଯାଇ ଗଛ କରାଯାଏ । ବର୍ଷା ଆରମ୍ଭରୁ ମଲ୍ଲୀଗୁଡ଼ିକର ପୁରୁଣା ଡାଳ କାଟି ପଟାଳି କରି ସେଥିରେ ପୋତିଦେଲେ ଦୁଇମାସ ମଧ୍ୟରେ ଚେର ଲାଗେ । ଜୁଲାଇ ମାସଠାରୁ ଡିସେମ୍ବର ମାସ ମଧ୍ୟରେ ଏହାକୁ ଲଗାଯିବା ଉଚିତ । ବେଶୀ ବର୍ଷା ହେଉଥିବା ଅଞ୍ଚଳରେ ଗଛମୂଳକୁ ମାଟି ବନ୍ଧାଇ ଦେବା ଆବଶ୍ୟକ । ଗୋଟିଏ ମଲ୍ଲୀଗଛ ପିଛା ୧୫ କେ.ଜି. ଗୋବରଖତ, ଯବକ୍ଷାରଜାନ ୭୫ ଗ୍ରାମ, ଫସଫୋରିକ୍ ଏସିଡ଼ ୧୨୫ ଗ୍ରାମ ଓ ୧୦୦ ଗ୍ରାମ ପଟାସ ଦିଆଯାଏ । ପ୍ରଥମ ବର୍ଷ ଗଛ ପିଛା ଏହାର ୪ ଭାଗରୁ ୧ ଭାଗ, ଦ୍ୱିତୀୟ ବର୍ଷ ଅଧଭାଗ, ପରବର୍ତ୍ତୀ ବର୍ଷଗୁଡ଼ିକରେ ପୂରାଭାଗ ଦିଆଯାଏ । ଜାନୁଆରୀ ଓ ଜୁଲାଇ ମାସରେ ମଲ୍ଲୀଗଛଗୁଡ଼ିକୁ ଦୁଇଥର କାଣ୍ଟଛାଣ୍ଟ କରାଯାଏ । ଜାନୁଆରୀ ମାସରେ କାଣ୍ଟଛାଣ୍ଟ କରି ସାରିଲା ପରେ ସପ୍ତାହକୁ ୨/୩ ଥର ପାଣିଦେବା ଉଚିତ । କିନ୍ତୁ ଫୁଲ ଶେଷ ହେବା ପରେ ଗଛରେ ବେଶିଥର ପାଣିଦେବା ଅନାବଶ୍ୟକ । ମଲ୍ଲୀଗଛରେ ନୂଆ ଡାଳରେ ଫୁଲ ଫୁଟିଥିବାରୁ ଏହାକୁ କାଣ୍ଟଛାଣ୍ଟ କରିବା ନିହାତି ଆବଶ୍ୟକ । ମଲ୍ଲୀ ଗଛଗୁଡ଼ିକର କଢ଼କଟା କୀଟ (bud worm), ମାଇଟ, ଜଉପୋକ, ଗଲମାଇଟ, ବ୍ଲିଷ୍ଟର ମାଇଟ, ରଷ୍ଟ ମାଇଟ ପ୍ରଧାନ ଶତ୍ରୁ । ୫୦ ଗ୍ୟାଲନ ପାଣିରେ ୧ ପାଉଣ୍ଡ ଗନ୍ଧକ ମିଶାଇ ଗଛରେ ସ୍ପ୍ରେ କରିବା ଉଚିତ । ମଲ୍ଲୀଗଛରେ ସାମୟିକ ପତ୍ରଦାଗ ରୋଗ ଦେଖାଯାଏ । ବୋର୍ଡୋକ୍ସ ମିକ୍ସଚର ସ୍ପ୍ରେ କଲେ ଏହି ରୋଗରୁ ରକ୍ଷା ମିଳିଥାଏ । ମଲ୍ଲୀ ଲଗାଇବାରା ପ୍ରଥମ ଦୁଇବର୍ଷ ପର୍ଯ୍ୟନ୍ତ ବିଶେଷ ଲଭ ହୁଏ ନାହିଁ । ଦୁଇବର୍ଷ ପରେ ହେକ୍ଟର ପିଛା ୫୦୦୦ ରୁ ୧୦୦୦୦ କି. ଗ୍ରା. ଯାଏ ଫୁଲ ଉତ୍ପାଦିତ ହୁଏ । ୧୦ ବର୍ଷ ଯାଏ ଭଲ ଫୁଲ ଅମଳ ହୋଇଥାଏ । ୧ କିଲୋଗ୍ରାମ ମଲ୍ଲୀ ଫୁଲରୁ ୧ ଗ୍ରାମ ଅତର ମିଳିଥାଏ ।

**ସେବତୀ ଚାଷ** ସେବତୀ ଫୁଲକୁ ବିକ୍ରି ପାଇଁ ଚାଷ କରାଯାଇପାରେ । ଧଳା, ହଳଦିଆ, ବାଇଗଣି ଜାତିର ଫୁଲ ଏହି ବ୍ୟବସାୟ ପାଇଁ ଚାଷ କରାଯାଏ । ପୁରୁଣା ଗଛରୁ ଜୁନମାସର ମଧ୍ୟଭାଗରେ ୧୫ ସେ.ମି. ଲମ୍ବାର ଡାଳ କାଟି ବାଲିମିଶା ପଟାଳିରେ ପୋତି ଦିଆଯାଏ । ଡାଳକଲମିଗୁଡ଼ିକ ୧ ମାସ ଭିତରେ ଲଗାଇବା ପାଇଁ ପ୍ରସ୍ତୁତ ହୋଇଯାଏ । ଉର୍ବର ଓ ଉତ୍ତମ ଭାବେ

ଜଳନିଷ୍କାସିତ ହେଉଥିବା ଜମିକୁ ମାର୍ଚ୍ଚ ଓ ଏପ୍ରିଲ ମାସରେ ୪ ଓଡ଼ ଚାଷ କରାଯାଏ । ପ୍ରତି ହେକ୍ଟର ପିଛା ୫୦ ଟନ ଭଲ ଗୋବରଖତ ଦେବା ଉଚିତ । ଜମିକୁ ଖତ ମିଶାଇ ସମାନ କରି ଗଛ ଲଗାଇବା ପୂର୍ବରୁ ପାଣି ମଡ଼ାଇବା ଆବଶ୍ୟକ । ଜୁଲାଇମାସର ଶେଷ ସପ୍ତାହରେ ଗଛ ଲଗାଯାଏ । ଡେରିରେ ଗଛ ଲଗାଇଲେ ଫୁଲ ଉତ୍ପାଦନ କମିଯାଏ । ୩୦ ସେ.ମି. ଦୂରତାରେ ଗଛ ଲଗାଇଲେ ହେକ୍ଟର ପିଛା ୧ ଲକ୍ଷ ୨୦ ହଜାର ପର୍ଯ୍ୟନ୍ତ ଡାଳକଲମି ଦରକାର ହୁଏ । ଗଛ ଲଗାଇବା ପୂର୍ବରୁ ହେକ୍ଟର କିଛା ୧ କ୍ୱିଣ୍ଟାଲ ଫସଫୋରିକ୍ ଏସିଡ୍, ୧ କ୍ୱିଣ୍ଟାଲ ପଟାସ, ୩୦ କେ.ଜି. ଜବକ୍ଷାରଜାନ ପ୍ରୟୋଗ କରିବା ଉଚିତ । ଚେର ଲାଗିଥିବା ଡାଳକଲମିଗୁଡ଼ିକ ଲଗାଇବା ପୂର୍ବରୁ ୦.୧% ସେରସାନ ମିଶ୍ରଣରେ ବୁଡ଼ାଇ ଲଗାଯାଏ । ଗଛ ଲଗାଇବାର ୧ ମାସ ପରେ ଆଉ ୪୦ କି.ଗ୍ରା. ଯବକ୍ଷାରଜାନ ପ୍ରୟୋଗ କରିବା ଉଚିତ । କେତେକ ସ୍ଥାନରେ ୩ ମିଟର ଓ ୧ $^{୧}/_{୨}$ ମିଟର ଆୟତନର ଛୋଟ ଛୋଟ ପଟାଳି କରି ଗଛ ଲଗାଯାଏ । ପ୍ରତ୍ୟେକ ପଟାଳିରେ ମଧ୍ୟବର୍ତ୍ତୀ ସ୍ଥାନଗୁଡ଼ିକରେ ପିଆଜ, ଲଙ୍କା ପ୍ରଭୃତି ପନିପରିବା ଲଗାଯାଇପାରେ । ପ୍ରତି ୨/୩ ସପ୍ତାହରେ ଥରେ ପ୍ରତ୍ୟେକ ଗଛର ମୂଳ କୋଡ଼ି ଘାସ ବାଛିଦେବା ଆବଶ୍ୟକ । ଜଉପୋକ, ଥ୍ରିପସ, ପତ୍ରକଟା ଓ ସଂବାଳୁଆ ପୋକ ଗଛରେ ଲାଗିଥାନ୍ତି । ପରାଥିଅନ୍, ଫଲଥିଅନ୍ ସହିତ ଗନ୍ଧକଯୁକ୍ତ ମିଶାଇ ପତ୍ର ୧୫ ଦିନରେ ଥରେ ସ୍ପ୍ରେ କଲେ ରୋଗ ହୁଏ ନାହିଁ । ଫୁଲ ଆସିବା ପରେ ଠିକ୍ କଢ଼ ତଳକୁ ବହୁତ ଜଉପୋକ ଲାଗିଥାନ୍ତି । ଝାଉଁଳା ରୋଗ ସେବତୀର ଏକ ପ୍ରଧାନ ରୋଗ । ତେଣୁ ୦.୧% ସେରସନ ଦ୍ରବଣ ଗଛ ମୂଳରେ ପ୍ରୟୋଗ କଲେ ଝାଉଁଳାରୋଗରୁ ରକ୍ଷା ମିଳେ । ଗଛଗୁଡ଼ିକ ଲାଗିବାର ୩ ମାସ ପରେ ଗଛରେ ଫୁଲ ଆସେ ଓ ଏହା ୩ ମାସ ପର୍ଯ୍ୟନ୍ତ ଫୁଟେ । ପ୍ରତି ୩ ଦିନରେ ଥରେ ଫୁଲ ତୋଳିବା ଆବଶ୍ୟକ । ଫୁଲ ପୁରାପୁରି ତୋଳିସାରିବା ପରେ ଫୁଲ ଫୁଟା ଗଛର କାଣ୍ଡକୁ ମାଟି ଉପରୁ ୩ ରୁ ୪ ସେ.ମି. ଉଚ୍ଚତାରେ କାଟିଦେଇ ପାଣି ମଡ଼ାଇଲେ ନୂଆ ପୁଆମାନ ବାହାରିଥାଏ । ସେହି ପୁଆକୁ ପରବର୍ତ୍ତୀ ବର୍ଷମାନଙ୍କରେ ଗଛରୂପେ ବ୍ୟବହାର କରାଯାଇଥାଏ । ହେକ୍ଟର ପିଛା ୩୫ ଲକ୍ଷରୁ ୪୦ ଲକ୍ଷ ଫୁଲ ଉତ୍ପାଦିତ ହୁଏ ।

**ଇଟିମଲ୍ଲୀ ଚାଷ** (*Crossandra infundibuliformis*) - ଫୁଲମାଳ ତିଆରି ପାଇଁ ଇଟିମଲା (ଇଟାଳ) ଏକ ପ୍ରଧାନ ପୁଷ୍ପ । ଦକ୍ଷିଣ ଓଡ଼ିଶା ଓ ଦକ୍ଷିଣ ଭାରତର ଅନେକ ଅଞ୍ଚଳରେ ଏହା ଚାଷ କରାଯାଏ । ସବୁ ସ୍ଥାନରେ ମାଳକରି ମୁଣ୍ଡରେ ଲଗାଇବା ପାଇଁ ସ୍ତ୍ରୀଲୋକମାନେ ଏହି ଫୁଲକୁ ବ୍ୟବହାର କରିଥାନ୍ତି । ଯେକୌଣସି ଶୁଭକାର୍ଯ୍ୟରେ ଏହାକୁ ଲଗାଯାଇପାରେ । ସୂତ୍ରଜୀବ ନ ଥିବା ନିଗଡ଼ା ଦୋରସା ମାଟିରେ ଇଟିମଲା ଚାଷ କରାଯିବା ଉଚିତ । ଜମିକୁ ୪/୫ ଓଡ଼ ଚାଷ କରାଯାଇ ହେକ୍ଟର ପିଛା ୫୦ ଟନ ଖତ ପ୍ରୟୋଗ କରିବା ଉଚିତ । ଲଙ୍ଗଳ ସିଆରରେ ୬୦ ସେ.ମି. ଦୂରତାରେ ହିଡ଼ମାନ କରି ତାହାରି ଉପରେ ୩୦ ସେ.ମି. ଦୂରତାରେ ଗଛ ଲଗାଯିବା ଉଚିତ । ଏକ ହେକ୍ଟର ପିଛା ୫ କି.ଗ୍ରା. ମଞ୍ଜି ପକାଇ ତଳି ଉତରାଯାଏ । ୬୦ ଦିନ ପରେ ତଳିଗୁଡ଼ିକ ଲଗାଯିବା ପାଇଁ ପ୍ରସ୍ତୁତ ହୁଏ । ଜୁଲାଇ ମାସଠାରୁ ସେପ୍‌ଟେମ୍ବର ମାସ ମଧ୍ୟରେ ତଳି ଲଗାଯିବା ଉଚିତ । ପ୍ରତି ଏକର ପିଛା ୫୦ କେ.ଜି. ଫସ୍‌ଫୋରିକ୍ ଏସିଡ୍ ଏକ କ୍ୱିଣ୍ଟାଲ ପଟାସ, ୩୦ କେ.ଜି. ଯବକ୍ଷାରଜାନ, ସାର ଲଗାଇବା ପୂର୍ବରୁ ଓ ୬ ମାସ ପରେ ଆଉ ୩୦ କେ.ଜି. ଯବକ୍ଷାରଜାନ ପ୍ରୟୋଗ କରାଯିବା ଉଚିତ । ଗଛମୂଳ ଖୁସାଇ ଘାସ ବାଛି ପ୍ରତି ସପ୍ତାହରେ ଥରେ ଲେଖାଁଏ ପାଣିଦେବା ଆବଶ୍ୟକ । ଏହି ଗଛରେ କାତିପୋକ, ଜଉପୋକ ଓ ସୂତ୍ରଜୀବୀ ଲାଗିଥାନ୍ତି । ସମୟେ ସମୟେ ଝାଉଁଳାରୋଗ ମଧ୍ୟ ଦେଖାଯାଏ । ସେବତୀ ଗଛପରି ଏହାର ପ୍ରତିଶୋଧକ ବ୍ୟବସ୍ଥା ଗ୍ରହଣ କରିବା ଉଚିତ । କମଳା ଓ ହଳଦିଆର ରଙ୍ଗର ଇଟିମଲା ଫୁଲଚାଷ କରାଯାଏ । ଗଛ ଲଗାଇବାର ୯୦ ଦିନ ପରେ ଫୁଲ ଫୁଟେ ଓ ପରବର୍ତ୍ତୀ ୧୫ ରୁ ୧୮ ମାସ ପର୍ଯ୍ୟନ୍ତ ଫୁଲ ଫୁଟିଥାଏ । ହେକ୍ଟର ପିଛା ୧୦ ଟନ ପର୍ଯ୍ୟନ୍ତ ଫୁଲ ଉତ୍ପାଦିତ ହୁଏ ।

**ଗୋଲାପ ଚାଷ** - ସବୁ ଜାତିର ଗୋଲାପ ବ୍ୟବସାୟ ପାଇଁ ଚାଷ କରାଯାଏ ନାହିଁ । କେବଳ ଚାଇନା, ଲାଲଗୋଲାପ ସୁପରଷ୍ଟାର ହାପିନେସ୍ ଏହି ଚାଷ ଲାଗି ଉପଯୁକ୍ତ । ମଲ୍ଲୀ ଚାଷ ଭଳି ଏହାର ଜମି ପ୍ରସ୍ତୁତ କରାଯିବା ଉଚିତ । ଜୁନ ଠାରୁ ସେପ୍‌ଟେମ୍ବର ମାସ ମଧ୍ୟରେ ଗଛ ଲଗାଯିବା ଆବଶ୍ୟକ ।

ଧାଡ଼ିକୁ ଧାଡ଼ି ଓ ଗଛକୁ ଗଛ ୧ ମିଟର ଦୂରତାରେ ଭଲଭାବରେ ଚେର ଲାଗିଥିବା ଡାଳକଲମି ଗୁଟିକଲମି କିମ୍ବା ଆଖିକଲମି ଗଛ ଲଗାଯିବା ଆବଶ୍ୟକ । ଗୋଲାପ ଗଛର ନୂଆଡାଳରେ ଫୁଲ ଆସେ । ତେଣୁ ପ୍ରତିବର୍ଷ ଅକ୍ଟୋବର ପ୍ରଥମ ସପ୍ତାହରେ ଗଛର ବୟସ ଅନୁପାତରେ ପୁରୁଣା ଡାଳ କାଟିଦେଲେ ନୂଆ ଡାଳ ବାହାରେ । ଡାଳର କଟାଅଂଶରେ ବୋର୍ଡ଼େକ୍ସ ପେଷ୍ଟ ବୋଳିଦେବା ଉଚିତ । ପ୍ରତି ଗଛ ପିଛା ୧୦ କି.ଗ୍ରା. ଖତ ଓ ୫-୮-୧୮ ଯବକ୍ଷାରଯାନ, ଫସଫରସ ଓ ପଟାସ ଥିବା ମିଶ୍ରିତ ସାରକୁ ପ୍ରତି ୨ ମାସରେ ଗଛ ପ୍ରତି ୫୦ ଗ୍ରାମ ଲେଖାଁଏ ଦେବା ଉଚିତ । ଗୋଲାପ ଚାଷରେ ଜଳସେଚନ ଓ ଅନ୍ତଃଚାଷ ମଲ୍ଲୀଚାଷ ପରି ଦରକାର ହୋଇଥାଏ । ଡାଇବେକ ରୋଗ (Dieback), ପାଉଁଶିଆ ରୋଗ, କଳାଦାଗ(Black spot) ପ୍ରଭୃତି ରୋଗ ଓ ଥ୍ରିପସ, ମାଇଟସ୍, ପ୍ରଭୃତି କୀଟପତଙ୍ଗ ଗୋଲାପ ଗଛକୁ ଆକ୍ରମଣ କରିଥାନ୍ତି । ବିଳମ୍ବ ନ କରି ରୋଗ ଓ ପୋକ ଲାଗିବାକ୍ଷଣି ଗଛରେ ଉପଯୁକ୍ତ ରାସାୟନିକ ପଦାର୍ଥ ସ୍ପ୍ରେ କରିବା ଉଚିତ । ଗଛଗୁଡ଼ିକୁ ୩ ବର୍ଷ ହେଲା ପରେ ସେଥିରୁ ଭଲ ଉତ୍ପାଦନ ହୋଇଥାଏ । ୩୦୦ ରୁ ୬୦୦ ପର୍ଯ୍ୟନ୍ତ ଫୁଲ ଗୋଟିଏ ଗଛରୁ ମିଳେ ।

**ରଜନୀଗନ୍ଧା** (Polyanthes tuberosa)- ବଡ଼ ବଡ଼ ସହରତଳି ଅଞ୍ଚଳରେ ଜଟାଫୁଲ ବିକ୍ରିପାଇଁ ଓ ଅନ୍ୟାନ୍ୟ ଯେକୌଣସି ସ୍ଥାନରେ ଅତର ସଂଗ୍ରହପାଇଁ ରଜନୀଗନ୍ଧା ଚାଷ କରାଯିବା ଆବଶ୍ୟକ । ମହାରାଷ୍ଟ୍ର, ପଶ୍ଚିମବଙ୍ଗ, ତାମିଲନାଡୁ ଓ କର୍ଣ୍ଣାଟକ ପ୍ରଭୃତି ରାଜ୍ୟରେ ଏହି ଚାଷ ବିଶେଷ ପରିମାଣରେ କରା ଯାଇଥାଏ । ଜଳଧାରଣ କ୍ଷମତା ଥିବା ଉର୍ବର ମାଟିରେ ରଜନୀ ଗନ୍ଧା ଭଲ ବଢ଼େ । ଗଛ ଲଗାଇବା ପୂର୍ବରୁ ଜମିକୁ ୨/୩ ଓଡ଼ ଚାଷ କରି ହେକ୍ଟର ପିଛା ୧୦୦ କ୍ୱିଣ୍ଟାଲ କରଞ୍ଜପିଡ଼ିଆ ପ୍ରୟୋଗ କଲେ ଅନ୍ୟ କୌଣସି ସାର ପ୍ରୟୋଗ କରିବାକୁ ପଡ଼େ ନାହିଁ । ଜମିକୁ ସମାନ କରି ଧାଡ଼ିକୁ ଧାଡ଼ି ୪୫ ସେ.ମି. ଦୂରତାରେ ଓ ପ୍ରତ୍ୟେକ ଧାଡ଼ିରେ ୩୦ ସେ.ମି. ଦୂରତାରେ ରଜନୀଗନ୍ଧାର ମୂଳ (Bulb)ଗୁଡ଼ିକୁ ଲଗାଯାଏ । ବଲ୍‌ବଗୁଡ଼ିକୁ ସଂଗ୍ରହ କରି ୨/୩ ମାସ ଘରଭିତରେ ରଖିଦେଲେ ଏହା ଭଲ ଗଜା ହୁଏ । ହେକ୍ଟରପିଛା ୫୦ କ୍ୱିଣ୍ଟାଲ

ପର୍ଯ୍ୟନ୍ତ ବଲ୍‌ବ ଲାଗେ । ପ୍ରତି ସପ୍ତାହରେ ଥରେ ଲେଖାଁଏ ପାଣି ମଡ଼ାଇବା ଉଚିତ । ବଲ୍‌ବ ଲଗାଇବାର ୩ ମାସ ପରେ ଫୁଲ ଫୁଟିବା ଆରମ୍ଭ ହୁଏ । ପ୍ରଥମ ତିନିମାସରେ ଯେତିକି ଫୁଲ ଫୁଟେ, ତା ପର ୩ ମାସରେ ତାହାର ୨ ଗୁଣ ଓ ସବୁଠାରୁ ବେଶୀ ଉତ୍ପାଦନ ୧୫ ରୁ ୧୭ ମାସ ମଧ୍ୟରେ ମିଳିଥାଏ । ବର୍ଷାଦିନେ ସବୁଠାରୁ ବେଶୀ ଫୁଲ ଫୁଟେ । ଫୁଲଗୁଡ଼ିକ ସକାଳ ୫ଟା ରୁ ୯ଟା ଭିତରେ ସଂଗ୍ରହ କରାଯିବା ଉଚିତ । ରଜନୀଗନ୍ଧାରେ ବେଶୀ ରୋଗ ପୋକ ଦେଖାଯାଏ ନାହିଁ । ବେଳେବେଳେ ପତ୍ରର ଅଗ କବକ ଜନିତ ଯୋଗ ଯୋଗୁଁ ନଷ୍ଟ ହୋଇଥାଏ । ଏଗୁଡ଼ିକର ପ୍ରତିଶୋଧକ ବ୍ୟବସ୍ଥା ଗ୍ରହଣ କରିବା ଆବଶ୍ୟକ ।

